# କବି ଦେବଦୁର୍ଲ୍ଲଭ ଦାସ

# ଓ

# ରହସ୍ୟ ମଞ୍ଜରୀ

ସଂପାଦନା

ପ୍ରାଧ୍ୟାପକ ଡକ୍ଟର ଦେବେନ୍ଦ୍ର ମହାନ୍ତି

କବି ଦେବଦୁର୍ଲ୍ଲଭ ଦାସ

ଓ

# ରହସ୍ୟ ମଞ୍ଜରୀ

ସମ୍ପାଦନା :

ପ୍ରାଧ୍ୟାପକ ଡକ୍ଟର ଦେବେନ୍ଦ୍ର ମହାନ୍ତି



**ରହସ୍ୟ ମଞ୍ଜରୀ** (ଦେବଦୁର୍ଲ୍ଲଭ ଦାସ), ସମ୍ପାଦନା ପ୍ରାଧ୍ୟାପକ ଡକ୍ଟର ଦେବେନ୍ଦ୍ର ମହାନ୍ତି, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ-୭୫୩୦୦୨, ଦ୍ୱିତୀୟ ସଂସ୍କରଣ : ୧୯୯୨, ମୁଦ୍ରଣ : ଜଗାବଳିଆ ପ୍ରିଣ୍ଟର୍ସ, ଜଗନ୍ନାଥ ବଲ୍ଲଭ, କଟକ-୧



RAHASYA MANJARI (Debadurlabha Das), Edited by : Dr. Devendra Mohanty, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa (India), 2nd Edition : 1992, Printer : Jagabalia Printers, Jagannath ballav, Cuttack-1,

Price : Rs. 35

Deluxe : Rs. 42

ଅଧ୍ୟାପକ ଡକ୍‌ଟର କୃଷ୍ଣଚରଣ ସାହୁଙ୍କ କରକମଳରେ
ସ୍ନେହୋପହାର ।

ଦେବେନ୍ଦ୍ର

# ସୂଚୀ

# ଭୂମିକା

ପ୍ରାଚୀନ ଓଡ଼ିଆ ଭାଷାସାହିତ୍ୟ ପାଠକଲେ ଜଣାଯାଏ ଯେ ମୁଖ୍ୟତଃ ଧର୍ମ ଭାବକୁ କେନ୍ଦ୍ର କରି ସାହିତ୍ୟର ଉଦ୍ଭବ ଓ ବିକାଶ ଘଟିଅଛି । ଦେଶ ମଧ୍ୟରେ ଯେତେବେଳେ ଯେଉଁ ଧର୍ମ ପ୍ରଧାନ ହୋଇଉଠିଛି, ସେତେବେଳେ ସେହି ଧର୍ମର ସାରତତ୍ତ୍ୱକୁ ଅବଲମ୍ବନ କରି ସେହି ଯୁଗର ସାହିତ୍ୟ ଗଢ଼ି ଉଠିଛି ।

ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ଅନେକ ପୂର୍ବରୁ ହୋଇଥିଲେ ହେଁ ପଞ୍ଚଦଶ ଶତାବ୍ଦୀ ଓଡ଼ିଶାର ସାମାଜିକ, ସାଂସ୍କୃତିକ, ଧାର୍ମିକ ତଥା ସାହିତ୍ୟିକ କ୍ଷେତ୍ର ପାଇଁ ଏକ ଶୁଭଙ୍କରୀ ସମୟ । କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ପୂର୍ବରୁ ଚତୁର୍ଦ୍ଦିଗରେ ବହିଃଶତ୍ରୁର ଆକ୍ରମଣ ଓ ନିରବଚ୍ଛିନ୍ନ ଯୁଦ୍ଧବିଗ୍ରହ ଓଡ଼ିଶା ଇତିହାସକୁ ସଂପୂର୍ଣ୍ଣ ଭିନ୍ନ ପଥରେ ଆଗେଇ ନେଉଥିଲା । ପ୍ରବଳ ପରାକ୍ରାନ୍ତ ସୂର୍ଯ୍ୟବଂଶର ପ୍ରତିଷ୍ଠାତା କପିଳେନ୍ଦ୍ରଦେବଙ୍କର ସୁଶାସନ ଫଳରେ ଓଡ଼ିଶାର ରାଜନୈତିକ ଅଶାନ୍ତ ଓ ଅସ୍ଥିର ପରିବେଶ ଭିତରେ ଶାନ୍ତି ଓ ମୈତ୍ରୀର ପତାକା ଉଡ଼ିଥିଲା । ସେହି ଚରମ ଅଶାନ୍ତି ଓ ଅସନ୍ତୋଷର ଅଗ୍ନି ମଧ୍ୟରେ ବଳିଷ୍ଠ ଜୀବନ ଚେତନା ଓ ନବ ପ୍ରାଣର ଆବେଦନ ନେଇ ଦେଖା ଦେଇଥିଲେ ସାରଳା ଦାସ—ଏ ଜାତିର ମହାଭାରତର ସ୍ରଷ୍ଟା । ସେ ପୁଣି ହେଲେ ଓଡ଼ିଆ ଭାଷା ସାହିତ୍ୟର ଜନକ । ସାରଳା ଦାସଙ୍କ ମହାଭାରତରେ ବର୍ଣ୍ଣିତ ପ୍ରତ୍ୟେକ ବିଷୟ ଏପରି ଅଭିଜ୍ଞ ଅନୁଭୂତି ସଂପନ୍ନ ଯେ ତାହା ଓଡ଼ିଶାର ସାଂସ୍କୃତିକ ଇତିହାସ ଭାବରେ ଗୃହୀତ ଓ ଗୌରବାନ୍ୱିତ । ସରଳ ଓ ଅନାଡ଼ମ୍ବର ଭାଷାରେ ଓଡ଼ିଆ ଜାତି ପାଇଁ ନିଜସ୍ୱ ସମ୍ପଦ ସୃଷ୍ଟି କରି ଓ ସର୍ବଧର୍ମର ସମନ୍ୱୟ ସାଧନରେ ଏ ଜାତିର ମହାକାବ୍ୟ ରଚନା କରି ସେ ହେଲେ ଜାତୀୟ ମହାକବି ।

କପିଳେନ୍ଦ୍ରଦେବଙ୍କ ପରେ ମୋଗଲ ଓ ପଡ଼ୋଶୀ ରାଜ୍ୟର ଆକ୍ରମଣ ଫଳରେ ଓଡ଼ିଶାର ରାଜନୈତିକ ପରିବେଶ ଅତ୍ୟନ୍ତ ଅଶାନ୍ତ ହୋଇଉଠିଲା । କପିଳେନ୍ଦ୍ରଦେବଙ୍କ ପୌତ୍ର ପ୍ରତାପରୁଦ୍ର ଥିଲେ ଅସୀମ ସାହସିକ ଯୋଦ୍ଧା— ତଥାପି ରାଜନୈତିକ ଅଶାନ୍ତିର ଶେଷ ନ ଥିଲା । ମାତ୍ର ଜଗନ୍ନାଥ, ବଳରାମ, ଅଚ୍ୟୁତ ପ୍ରମୁଖ ଭଗବତ ଭାବରେ ଉଦ୍‌ବୁଦ୍ଧ ଉଦାର ପ୍ରାଣ ବ୍ୟକ୍ତିଙ୍କ ଅବଦାନରେ ଓଡ଼ିଶାର ସାଂସ୍କୃତିକ ଭାବଧାରା ନିସ୍ତରଙ୍ଗ ହୋଇ ନ ଥିଲା ।

ମଣିକାଞ୍ଚନ ସଂଯୋଗ ତୁଲ୍ୟ ଷୋଡ଼ଶ ଶତାବ୍ଦୀର ଆଦ୍ୟଭାଗରେ ଗୌଡ଼ୀୟ ବୈଷ୍ଣବ ଶ୍ରୀଚୈତନ୍ୟଙ୍କ ଆଗମନ ଫଳରେ ଓଡ଼ିଶାର ଜନମାନସରେ ଯେଉଁ ଗମ୍ଭୀର

ଆଧ୍ୟାତ୍ମିକ ବିପ୍ଳବର ସୂତ୍ରପାତ ହେଲା ତାହା ଏକାନ୍ତ ଅପୂର୍ବ ଓ ଅନିର୍ବଚନୀୟ । ପଞ୍ଚସଖାଙ୍କର ପ୍ରାଚୀନ ସାହିତ୍ୟ ଅନୁଶୀଳନ ଫଳରେ ରାମାୟଣ, ଭାଗବତ ପ୍ରଭୃତି ରଚିତ ହେବା ସଙ୍ଗେ ସଙ୍ଗେ ବୈଷ୍ଣବତତ୍ତ୍ୱ ଓ ଧର୍ମତଥ୍ୟ ସମ୍ବଳିତ ସୃଷ୍ଟିଉଗନ୍ତ ଓ ଯୋଗସାଧନାର ସକଳ ପର୍ଯ୍ୟାୟକୁ ଉପହାସ କରି ନବ ନିର୍ମିତ ଧର୍ମପ୍ରବାହ ରଜା ତଥା ପ୍ରଜାଙ୍କ ଅନ୍ତରରେ ବୈରାଗ୍ୟର, ନିରାସକ୍ତିର ତଥା ଆଧ୍ୟାତ୍ମିକ ପ୍ରେମମୟୀ ତୃଷ୍ଣାର ଭାବ ସଞ୍ଚାର କଲା । ପରିଣାମ ସ୍ୱରୂପ ରାଜା ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ ଓ ବୈଷ୍ଣବଧର୍ମ ରାଜଧର୍ମ ରୂପେ ସ୍ୱୀକୃତି ଲାଭ କଲା ।

ପଞ୍ଚସଖା ଯୁଗର ସୃଷ୍ଟି ପର୍ଯ୍ୟାୟ ଗୋପୀକୃଷ୍ଣ ପ୍ରେମତତ୍ତ୍ୱ ସମ୍ବଳିତ ହେଲେହେଁ ଶୁଦ୍ଧାଭକ୍ତିର ପ୍ରତିଷ୍ଠା ଓ ପ୍ରସାର ପାଇଁ ତହିଁରେ ପ୍ରଶସ୍ତ ଅବକାଶ ନଥିଲା । ଶ୍ରୀଚୈତନ୍ୟଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମ ରାଜଧର୍ମ ଭାବରେ ଗୃହୀତ ହେବାରୁ ରାଧାକୃଷ୍ଣ ଗୋପୀକୃଷ୍ଣଙ୍କ ପ୍ରେମତତ୍ତ୍ୱ ସାହିତ୍ୟକୁ ସର୍ବାଂଶରେ ଗ୍ରାସ କଲା । ପଞ୍ଚସଖା ଯୁଗ ଓ ତତ୍ପରବର୍ତ୍ତୀ ଯୁଗରେ ବୈଷ୍ଣବ ଧର୍ମତତ୍ତ୍ୱ ଆଧାରିତ ବହୁଗ୍ରନ୍ଥ ରଚିତ ଓ ପ୍ରଚାରିତ ହେଲା । ଏହି ସମୟରେ କାଳ୍ପନିକ କାହାଣୀ ଧର୍ମତତ୍ତ୍ୱରେ ସଂଯୋଜିତ ହୋଇ ପାଠକ ପାଇଁ ସ୍ୱାଦ୍ୟ ସାହିତ୍ୟିକ ସମ୍ପଦ ସୃଷ୍ଟି ହେଲା । ମଧ୍ୟଯୁଗୀୟ ସାହିତ୍ୟର ସୃଷ୍ଟି ଧର୍ମ ଓ ସାହିତ୍ୟିକ ଉଦ୍ଦେଶ୍ୟ, ପୁଣି କାବ୍ୟ ଯୁଗର ରୀତି ଓ ଆଦର୍ଶର ଅନ୍ତର୍ବର୍ତ୍ତୀ କାଳରେ ଦେବଦୁର୍ଲଭ ରହସ୍ୟମଞ୍ଜରୀ ସୃଷ୍ଟି କରି ଦୁଇକାଳର ସଂଯୋଗ ସେତୁରୂପେ ପ୍ରତିଭାତ ।

**କବି ଦେବଦୁର୍ଲଭ :—**

ପ୍ରାଚୀନ ଭାରତୀୟ ଆଦର୍ଶ ନିରହଂକାର ଭାବ ଆଧାରିତ । ବେଦ ମନୁଷ୍ୟ ମୁଖ ନିଃସୃତ ଆଧ୍ୟାତ୍ମିକ ଉଚ୍ଚାଙ୍ଗ ଦର୍ଶନ ହେଲେହେଁ ତହିଁରେ ବ୍ୟକ୍ତିର ନାମ ଉଚ୍ଚାରିତ ହୋଇ ନାହିଁ, ତେଣୁ ତାହା ଅପୌରୁଷେୟ ରୂପେ ଖ୍ୟାତ । ରାମାୟଣ, ମହାଭାରତ ବହୁ ବାଲ୍ମୀକି ବେଦବ୍ୟାସଙ୍କର କୀର୍ତ୍ତି; କିନ୍ତୁ ସବୁ କବି ନିଜକୁ ବାଲ୍ମୀକି ବା ବେଦବ୍ୟାସଙ୍କ ମଧ୍ୟରେ ଲୁଚାଇ ଦେଇଛନ୍ତି । ସେମାନଙ୍କର ସ୍ୱତନ୍ତ୍ର ପରିଚୟ ନାହିଁ । ପରବର୍ତ୍ତୀ କାଳରେ କବି କାବ୍ୟର ଭଣିତାରେ ତାର ନାମ ଉଲ୍ଲେଖ କଲେହେଁ ତାର ସମୟ ଓ ବ୍ୟକ୍ତିଗତ କଥା କେଉଁଠାରେ ଉଚ୍ଚାରଣ କରିବାକୁ ଉଚିତ ମନେକରି ନାହିଁ । କାଳିଦାସ, ଜୟଦେବ ଏବେ ମଧ୍ୟ ବିବଦମାନ ସମସ୍ୟା ହୋଇ ରହିଛନ୍ତି । ସେମାନଙ୍କ ସମୟ ଓ ସ୍ଥାନ ଏବେ ମଧ୍ୟ ଅନିର୍ଣ୍ଣୀତ ।

ରହସ୍ୟମଞ୍ଜରୀର କବି ଦେବଦୁର୍ଲଭ ଏହିପରି ଜଣେ ନିରଭିମାନୀ ବ୍ୟକ୍ତି । ପ୍ରାଚୀନ ଭାରତୀୟ ଆଦର୍ଶ ଅନୁସରଣରେ ସେ ବ୍ୟକ୍ତି ସଚେତନ ନ ଥିଲେ । ତେଣୁ ତାଙ୍କର ଗ୍ରନ୍ଥ ମଧ୍ୟରେ କୌଣସି ସ୍ଥାନରେ ନିଜର ପରିଚୟ ପ୍ରକାଶ କରି ନାହାନ୍ତି ।

ଏହା ସନ୍ତ ବୈଷ୍ଣବର ଲକ୍ଷଣ ଭାବରେ ଗୃହୀତ । ନୈଷ୍କିଞ୍ଚନ୍ୟ ଦୀନତା ଓ ନିରହଂକାରତାର ବଶବର୍ତ୍ତୀ ହୋଇ ସେ ଗ୍ରନ୍ଥ ରଚନା କରିଛନ୍ତି । ସେ ସାଧୁସନ୍ଥଙ୍କ ସଙ୍ଗ ଲାଭ ପାଇଁ ବ୍ୟାକୁଳ ଥିଲେ । ସେ ଥିଲେ ଧର୍ମପ୍ରାଣ ଓ ସଦାତ୍ମା । କେବଳ ସେ ନିଜେ ନୁହନ୍ତି, ତାଙ୍କର ଚତୁଃପାର୍ଶ୍ୱର ପରିବେଶକୁ ସାଧୁ ଓ ନିର୍ମଳ କରିବା ପାଇଁ ତାଙ୍କର ଆକୁଳତା ପ୍ରକାଶିତ । ତାଙ୍କର ଆତ୍ମୀୟସ୍ୱଜନଙ୍କୁ ସମଧର୍ମୀ କରାଇବା ପାଇଁ ସେ ଥିଲେ ବ୍ୟଗ୍ର ।

କବିଙ୍କ ସମୟରେ ଉତ୍କଳ ଅନ୍ତର୍ବିବାଦ, ଯୁଦ୍ଧ ବିଗ୍ରହ, ଅଶାନ୍ତି ଓ ଅସନ୍ତୋଷର ବହ୍ନିରେ ଜଳୁଥିଲା । ଚତୁର୍ବିଂଶ ଛାନ୍ଦରେ କବି ତାଙ୍କର ଅନ୍ତରର ବ୍ୟଥା ବ୍ୟକ୍ତ କରି ଲେଖିଛନ୍ତି,

"ସବୁଙ୍କର ସନ୍ଥ ବୁଦ୍ଧି ଯେବେ ସେ ହୁଅନ୍ତା
ଖଡ଼ଗ କମାଣ ବାଣ କପାଁଇ ବହନ୍ତା
ଏକକୁ ଆରେକ ନ ଚହ୍ନନ୍ତ ମତ୍ତଭାବେଳେ
ତେଣୁ ମରାମରି ହୋଇ ମରନ୍ତି ସକଳେ" । (୩୬) ।

ବିବେକ ଜ୍ଞାନ ନ ହୁଗଇଲେ ମନୁଷ୍ୟ ପରସ୍ପରର ଶତ୍ରୁ ହୁଅନ୍ତା ନାହିଁ । କବି ତାଙ୍କର ମନୋଭାବର ସଙ୍କେତ କାବ୍ୟର କେତେକ ସ୍ଥଳରେ ପ୍ରକାଶ କରି ଯାଇଥିଲେ ମଧ୍ୟ ଆତ୍ମପରିଚୟର ଅନୁଲିପି କେଉଁଠାରେ ହେଲେ ଉଲ୍ଲେଖକରିନାହାନ୍ତି । ତାଙ୍କର ଜନ୍ମସ୍ଥାନ ଓ ସମୟ ଅଜ୍ଞାତ । ଉଜ୍ଜୟିନୀର ପ୍ରଶସ୍ତି ବର୍ଣ୍ଣନାରୁ କାଳିଦାସଙ୍କୁ ଯେପରି ଉଜ୍ଜୟିନୀର ଅଧିବାସୀ ବୋଲି ଗବେଷକମାନେ ମତପୋଷଣ କରନ୍ତି, ସେହିପରି ଶ୍ରୀକ୍ଷେତ୍ରର ପ୍ରାକ୍ଷଣାକ୍ଷଣ ବର୍ଣ୍ଣନା ଓ ମିଷ୍ଟାନ୍ନାଦିର ଉଲ୍ଲେଖରୁ ଦେବଦୁର୍ଲଭଙ୍କୁ ଶ୍ରୀକ୍ଷେତ୍ରବାସୀ କହିବା ଅସମୀଚୀନ ହେବ ନାହିଁ । ତାଙ୍କ କାବ୍ୟର କେତେକ ଛାନ୍ଦର ଶେଷରେ କବିଙ୍କର ନାମର ପୁର୍ଣ୍ଣ ଉଲ୍ଲେଖ ରହିଛି ।

"ଶରଣ ମାଗଇ ଦେବ ଦୁର୍ଲଭ ଯେ ଦାସ" (୯' ଶ ଛାନ୍ଦ) ।
"ନିତାନ୍ତରେ ଚନ୍ତେ ଦେବଦୁର୍ଲଭ ଦାସ" (୨୩ଶ ଛାନ୍ଦ) ।

କବିଙ୍କର ପରିଚୟ ନିମିତ୍ତ କେବଳ ଏତିକ ମାତ୍ର ସୂଚନା ତାଙ୍କ କାବ୍ୟରୁ ମିଳିଥାଏ । ଏହାଛଡ଼ା କବିଙ୍କର କାଳନିରୂପଣ ପାଇଁ ବିଭିନ୍ନ ସୂତ୍ରରୁ ସୂଚନା ଆହରଣ କରି ଓଡ଼ିଆ ସାହିତ୍ୟର ସମାଲୋଚକଗଣ ତାଙ୍କୁ ଷୋଡ଼ଶ ଶତାବ୍ଦୀର କବି ଭାବରେ ଗ୍ରହଣ କରୁଛନ୍ତି ।

**ଦେବଦୁର୍ଲଭଙ୍କ ସମୟ ସଙ୍କେତ :—**

ଭାରତୀୟ ପରମ୍ପରା ବ୍ୟକ୍ତିବିଶେଷ ନୁହେଁ; ଏହା ବ୍ୟକ୍ତି ଅପେକ୍ଷା ଗୋଷ୍ଠୀକୁ କାଳେ କାଳେ ସମ୍ମାନ ଦେଇଆସିଛି । ନିଜକୁ, ନିଜର ବ୍ୟକ୍ତିସତ୍ତାକୁ ଚିହ୍ନିତ କରିବା ପାଇଁ ଅତୀତରେ ଭାରତୀୟ କେବେହେଲେ ଆଗ୍ରହୀ ନ ଥିଲା । ଧର୍ମର ପ୍ରତିଷ୍ଠା ଓ ପ୍ରସାର ଥିଲା ଭାରତୀୟ ସୃଷ୍ଟି ଚେତନାର ପ୍ରତିପାଦ୍ୟ ବିଷୟ । ସେଥିପାଇଁ ବେଦ ଅପୌରୁଷେୟ ଅର୍ଥାତ୍ ନିରଭିମାନ ପୁରୁଷର ସୃଷ୍ଟି । ପୁଣି, ବ୍ୟକ୍ତିବିଶେଷର ସୃଷ୍ଟି ନୁହେଁ—ବହୁ ବ୍ୟକ୍ତିଙ୍କର ଚିନ୍ତା ଚେତନାର ସମନ୍ୱୟରେ ଏହା ସମୃଦ୍ଧ । ବ୍ୟକ୍ତି ପରିଚୟ ପ୍ରଦାନ ବା ସମୟର ସଙ୍କେତ ପ୍ରତି ଅତୀତରେ କୌଣସି ପ୍ରଚେଷ୍ଟା ଦେଖା ଦେଇ ନାହିଁ । ଏପରି ଅହଂକାର ଅଶୋଭନୀୟ ହୋଇପାରେ, ମାତ୍ର ଆଜିର ବିଶ୍ଳେଷଣ କ୍ଷେତ୍ରରେ ସମୟର ଭୂମିକା ଯେକୌଣସି କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ । କବିର ଓ କବି କୃତିର କାଳ ନିର୍ଣ୍ଣୟ ପାଇଁ ବହୁ ପ୍ରୟନ୍ତ ଆଜିର ସାହିତ୍ୟ ସମାଲୋଚନାର ଅପରିହାର୍ଯ୍ୟ ଅଙ୍ଗ । କବିତାର ସହଜ ଅବ-ବୋଧର ସମୟ ଓ ପରିପାର୍ଶ୍ୱର ଯଥାର୍ଥ ପରିଚୟ ଯଥେଷ୍ଟ ସାହାଯ୍ୟ କରେ ।

ସବୁ ପ୍ରାଚୀନ କବିଙ୍କ ପରି ଦେବଦୁର୍ଲଭ ମଧ୍ୟ ସମୟ ସଚେତନ ନ ଥିଲେ । ସେ ନିଜର କୌଣସି ପରିଚୟ ବା କାବ୍ୟ ସୃଷ୍ଟିର ସମୟ ପ୍ରଦାନ କରି ନାହାନ୍ତି । ତାଙ୍କର ସମୟ ନିରୂପଣ ପାଇଁ ଉପାଦାନର ଏକାନ୍ତ ଅଭାବ ହେତୁ ତାଙ୍କୁ ନିର୍ଦ୍ଦିଷ୍ଟ ଭାବରେ କେଉଁ ସମୟର କବିରୂପେ ନିରୂପଣ କରିବା ସମ୍ଭବ ହେଉ ନାହିଁ । ଏ ସମ୍ବନ୍ଧରେ ବିଭିନ୍ନ ସମାଲୋଚକଙ୍କ ଦ୍ୱାରା ଯେଉଁ ସିଦ୍ଧାନ୍ତ ଗ୍ରହଣ କରାଯାଇ ଅଛି ତାହା କେତେକ ଆଭ୍ୟନ୍ତରୀଣ ଉପାଦାନ ଉପରେ ନିର୍ଭର କରିଥିଲେ ହେଁ ମୁଖ୍ୟତଃ ଅନୁମାନପୁଷ୍ଟ । ପ୍ରାଚୀ ସମିତି ଆନୁକୂଲ୍ୟରେ ସଂପାଦିତ ରହସ୍ୟମଞ୍ଜରୀର ମୁଖ-ବନ୍ଧରେ ଉଲ୍ଲେଖିତ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ବିଚାର ହିଁ ଏକମାତ୍ର ଅବଲମ୍ବନ ।

ପ୍ରଥମତଃ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ପାଇଥିବା ପାଞ୍ଚଗୋଟି ତାଳପତ୍ର ପୋଥି ମଧ୍ୟରୁ (କ) ଓ (ଚ) ଚିହ୍ନିତ ପୋଥିରେ କେବଳ ଗ୍ରନ୍ଥ ଲେଖନ ସମାପ୍ତି ଦିବସର ଉଲ୍ଲେଖ ଥିଲା । (କ) ପୋଥିର "ଲେଖନକାରି ଦୈବଜ୍ଞ ଭଗବାନ ନାୟକ, ଲେମ୍ବାଇ ବିଶି ବଡ଼ପଦ ଗ୍ରାମରେ ରହଣି"—ପୋଥିର ଲେଖା ସମାପ୍ତି ଦିନ ବୀର କିଶୋର ଦେବ ମହାରାଜାଙ୍କ ବିଜେ ଶୁଭରାଜ୍ୟେ ସମସ୍ତ ୪୭ ଅଙ୍କ କୁମ୍ଭ ୨୨ ଦିନ ଅର୍ଥାତ୍ ୧୭୭୪ ଖ୍ରୀଷ୍ଟାବ୍ଦର କଥା । ତେଣୁ ଦେବଦୁର୍ଲଭଙ୍କ ସ୍ୱକୃତ ରହସ୍ୟମଞ୍ଜରୀ ଗ୍ରନ୍ଥ ନିଶ୍ଚୟ ତାହା ପୂର୍ବରୁ ରଚିତ । (ଚ) ଚିହ୍ନିତ ପୋଥିର ଲେଖନକାର କୃଷ୍ଣ କୁଣ୍ଡା ମୁକୁନ୍ଦଦେବଙ୍କ ୨ୟ ଅଙ୍କ ୧୨୦୭ ସାଲ ମକର ୧୨ ଦିନ

ପୋଥିଲେଖା ଶେଷ କରିଥିଲେ । ଅଭିମନ୍ୟୁ ତାଙ୍କର ରସବତୀ କାବ୍ୟ ବୀର କିଶୋର ଦେବଙ୍କ ୭୯ ଅଙ୍କରେ ସମାପ୍ତ କରିଥିଲେ । ଅର୍ଥାତ୍ ରହସ୍ୟ ମଞ୍ଜରୀର (କ) ପୋଥିର ଲେଖନକାଳ ରସବତୀର ୧୮ ବର୍ଷ ପୂର୍ବ ତାଙ୍କ ଲେଖା ସମାପ୍ତ କରିଥିଲେ । ଏଥିରୁ ନିଃସନ୍ଦେହରେ ଏତିକି ମାତ୍ର ସିଦ୍ଧାନ୍ତ ରୂପେ ଗୃହୀତ ହୋଇପାରେ ଯେ ରହସ୍ୟ ମଞ୍ଜରୀର ସ୍ରଷ୍ଟା ଦେବଦୁର୍ଲଭ ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ପୂର୍ବବର୍ତ୍ତୀ । ପୁଣି ଅନ୍ୟାନ୍ୟ ଦିଗରୁ ବିଚାର କଲେ ଏହି ସିଦ୍ଧାନ୍ତ ଅଭ୍ରାନ୍ତ ବୋଲି ମନେହୁଏ । ତଥାପି ତାଙ୍କର ଐତିହାସିକ କାଳ ନିର୍ଣ୍ଣିତ ରୂପେ ନିରୂପିତ ହେବା ଆଦୌ ସମ୍ଭବ ନୁହେଁ ।

ଦ୍ୱିତୀୟତଃ ରହସ୍ୟମଞ୍ଜରୀର ଭାଷା ଓ ପ୍ରାଚୀନ ଶବ୍ଦ ପ୍ରୟୋଗ ତଥା ଅପ୍ରାକୃତିକ ଶବ୍ଦାଳଙ୍କାର ଓ ପୌରାଣିକ ଅଳଙ୍କାର ଆଦି ପ୍ରଭୃତି ବିଚାର କଲେ ବୋଧହୁଏ, ଏହା ଏକ ପ୍ରାଚୀନ କାବ୍ୟ । ଏଥିରେ ବ୍ୟବହୃତ ଶ୍ରୋଣାହା, ବଙ୍କସିଂଲ, ମେହୁ, ସାରଷ, ପିରେଘ, କେହୁଣି ପ୍ରଭୃତି ଅଧୁନା ଅବ୍ୟବହୃତ ଓ ପ୍ରାଚୀନ କାଳରେ ବିଶେଷତଃ ସାରଳା ଦାସଙ୍କ ସାହିତ୍ୟରେ ବ୍ୟବହୃତ ଶବ୍ଦନିଚୟ ମଧ୍ୟ ଏହାର ପ୍ରାଚୀନତାର ସାକ୍ଷ୍ୟ ବହନ କରି ସମଗ୍ର କାବ୍ୟରେ ବିସ୍ତୃତ । ଆର୍ତ୍ତବଲ୍ଲଭଙ୍କ ମତରେ ଶ୍ରୋଣେହା ଶବ୍ଦ ସାରଳା ଦାସଙ୍କ ବ୍ୟତୀତ ଅନ୍ୟ କେହି ବ୍ୟବହାର କରିଥିବାର ଦେଖା ନାହିଁ ।

ତୃତୀୟତଃ ଗ୍ରନ୍ଥର ବିଭିନ୍ନ ଛାନ୍ଦର ରାଗନିର୍ଦ୍ଦେଶରେ କେତେକ ପ୍ରାଚୀନ ଗ୍ରନ୍ଥର 'ବାଣୀ'ର ଉଲ୍ଲେଖ ଥିବା ଦେଖାଯାଏ । ଦ୍ୱିତୀୟ ଓ ଚତୁର୍ବିଂଶ ଛାନ୍ଦ କଳସା ବାଣୀରେ; ଷଷ୍ଠ ଛାନ୍ଦ, ରାମବିଭା ପ୍ରଥମଛାନ୍ଦ ବାଣୀରେ; ସପ୍ତମ ଛାନ୍ଦ ସପନଚେଉଆ ବାଣୀରେ ଓ ଦଶମ ଛାନ୍ଦ ତୁଳାଭିଣା ବାଣୀରେ ଗାଇବାକୁ ନିର୍ଦ୍ଦେଶ ଦିଆଯାଇଅଛି । ଅବଶ୍ୟ ଏହି ବାଣୀ ନିର୍ଦ୍ଦେଶ ଲେଖନାକାର ନ ଦେଇ ଯଦି କବି ନିଜେ ଦେଇଥାଆନ୍ତି, ତେବେ କଳସା ଚଉତିଶାର କବି ବସ୍ତାଦାସ, ରାମବିଭାର କବି ଅର୍ଜୁନଦାସ ଓ ତୁଳାଭିଣାର ରଚୟିତା ଜଗନ୍ନାଥ ଦାସଙ୍କ ରଚନା ପରେ ରହସ୍ୟମଞ୍ଜରୀର ସୃଷ୍ଟି ପରିକଳ୍ପନାକୁ ଅନାୟାସରେ ସ୍ୱୀକାର କରାଯାଇପାରେ । ତେଣୁ ଦେବଦୁର୍ଲଭ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧର ପରବର୍ତ୍ତୀ, ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧ ବା ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗର କବିରୂପେ ଗୃହୀତ ହୋଇପାରନ୍ତି ।

ଚତୁର୍ଥତଃ, ରହସ୍ୟ ମଞ୍ଜରୀର ଶେଷଭାଗରେ କବି କହିଛନ୍ତି ଯେ କାବ୍ୟର କଥାବସ୍ତୁ ତାଙ୍କ ପୂର୍ବବର୍ତ୍ତୀ କୌଣସି କବିଙ୍କଦ୍ୱାରା ଗୃହୀତ ହୋଇ ନାହିଁ ।

ଆଲୋଚନାରୁ ଜଣାଯାଏ, ଅଚ୍ୟୁତାନନ୍ଦ ଦାସଙ୍କ ଶୂନ୍ୟ ସଂହିତାରେ ଏହି କଥାବସ୍ତୁ ସାମାନ୍ୟ ଭିନ୍ନ ରୂପରେ ବର୍ଣ୍ଣିତ ହୋଇଅଛି । ଦୀନକୃଷ୍ଣ ଦାସଙ୍କର ନାମରତ୍ନଗୀତା ଓ ବୃନ୍ଦାବନଙ୍କର ଗୋପୀ ଚନ୍ଦନ କାବ୍ୟରେ ମଧ୍ୟ ପୃଥକ୍ ଭଙ୍ଗୀରେ ଏହାର ସମାବେଶ ଘଟିଛି । ଶ୍ରୀକୃଷ୍ଣ ଅଷ୍ଟପାଟବଂଶୀଙ୍କ ନିକଟେ ରାସସ୍ଥଳୀରେ ରାସଲୀଳା ପ୍ରଦର୍ଶନ କରିବା କୌଣସି ପୁରାଣ ବା ପରଂପରାରୁ ଗୃହୀତ ହୋଇ ନାହିଁ । କେବଳ ଜ୍ଞାନମିଶ୍ରା ଭକ୍ତଠାରୁ ଗୋପୀଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ପାଇଁ ଏହି ବୃତ୍ତାନ୍ତର ଅବତାରଣା କରାଯାଇଅଛି ।

ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ମତକୁ ଅନୁସରଣ କରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ମତପ୍ରକାଶ କରିଛନ୍ତି, "ଗ୍ରନ୍ଥଟି ଖ୍ରୀ: ୧୭୭୪ ପୂର୍ବର ଲେଖା ବୋଲି ନିଶ୍ଚିତ ଭାବରେ ଜଣାଯାଉଛି । × × × × × କବି ଷୋଡ଼ଶ ଶତାବ୍ଦୀ ପରର କୌଣସି କୌଣସି ଗ୍ରନ୍ଥରୁ ରାଗ ଗ୍ରହଣ କରି ନ ଥିବାରୁ ସେ ଜଗନ୍ନାଥ ଦାସଙ୍କ ଅଳ୍ପ ସମୟ ପରେ କିମ୍ବା ତାଙ୍କ ସମୟରେ ଜୀବିତ ଥିବା ଅନୁମାନ କରାଯାଇପାରେ ।"

ଏହି ସମସ୍ତ ବିଷୟ ଅନୁଧ୍ୟାନ ଓ ଅନୁଶୀଳନରୁ ଏହି ସିଦ୍ଧାନ୍ତ ଗ୍ରହଣ କରାଯାଇପାରେ ଯେ, ଦେବଦୁର୍ଲ୍ଲଭ ଷୋଡ଼ଶ ଶତାବ୍ଦୀର କବି; ପ୍ରଥମାର୍ଦ୍ଧ, ପରବର୍ତ୍ତୀ, ଦ୍ୱିତୀୟାର୍ଦ୍ଧର ଶେଷ ପର୍ଯ୍ୟାୟର କବି ବୋଲି ସଠିକ ଭାବରେ କୁହାଯାଇ ନ ପାରେ । ତେଣୁ ସୁରେନ୍ଦ୍ର ମହାନ୍ତିଙ୍କ ଉଦାର ମତ ହିଁ ଗ୍ରହଣଯୋଗ୍ୟ ମନେହୁଏ । ତାଙ୍କ ମତରେ 'ଜ୍ଞାନମିଶ୍ରା ଭକ୍ତି ଓ ଶୁଦ୍ଧାଭକ୍ତି' ମଧ୍ୟରେ ଯେଉଁ କାଳରେ ସମନ୍ୱୟ ସାଧିତ ହୋଇଥିଲା, ଦେବଦୁର୍ଲଭ ସେହି ସନ୍ଧିକାଳର କବି । ସମୟ ଯେଉଁଠାରେ ଜ୍ଞାତବ୍ୟ ନୁହେଁ, ଏହିପରି ବିସ୍ତରଶୀଳ ଉଦାର ମତବାଦ ପୋଷଣ ଭ୍ରମପ୍ରମାଦ-ଶୂନ୍ୟ । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ଯେଉଁ ପୋଥି ଉପରେ ନିର୍ଭର କରି କବିଙ୍କର କାଳନିରୂପଣ କରିଛନ୍ତି ସେଗୁଡ଼ିକର ପ୍ରାମାଣ୍ୟ ସ୍ୱୀକୃତ ନୁହେଁ ।

ଏ ସମସ୍ତ ମତବାଦର ପ୍ରତିପାଦ୍ୟ ବିଷୟ ଦେବଦୁର୍ଲଭ ଦାସଙ୍କର ରହସ୍ୟ ମଞ୍ଜରୀ ପଞ୍ଚସଖାଙ୍କର ପରବର୍ତ୍ତୀ କାଳୀନ ଏକ ସ୍ମରଣୀୟ ସୃଷ୍ଟି ସମ୍ପଦ ।

## ବିଷୟବସ୍ତୁ ବିଚାର :—

ରହସ୍ୟ ମଞ୍ଜରୀର କଥାବସ୍ତୁ ବିନ୍ୟାସ ଅତ୍ୟନ୍ତ ଆକର୍ଷଣୀୟ । ଏହି କାବ୍ୟର ପ୍ରଧାନ ନାୟିକା ଶ୍ରୀକୃଷ୍ଣଙ୍କର ସ୍ୱକୀୟ ପତ୍ନୀ ରୁକ୍ମିଣୀ; କିନ୍ତୁ ରୁକ୍ମିଣୀଙ୍କର ତଥା ସ୍ୱକୀୟା ନାୟିକାର ନ୍ୟୂନତା ପ୍ରତିପାଦନ କରି ପରକୀୟା ନାୟିକା ଶ୍ରୀରାଧାଙ୍କର

ଶ୍ରେଷ୍ଠତ୍ୱ ପ୍ରତିପାଦନ ଏହି କାବ୍ୟର ପ୍ରଧାନ ଆଭିମୁଖ୍ୟ । ଦ୍ୱାରକାପୁରର ଐଶ୍ୱର୍ଯ୍ୟ ଲୀଳାଠାରୁ ବୃନ୍ଦାବନର ମାଧୁର୍ଯ୍ୟଲୀଳାର ଶ୍ରେଷ୍ଠତ୍ୱ ପ୍ରଦର୍ଶନ ମଧ୍ୟ ଏହାର ଅନ୍ୟତମ ଉଦ୍ଦେଶ୍ୟ । ଏଥିରେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ନିତ୍ୟଲୀଳା ବା ରାସର ବର୍ଣ୍ଣନା ଦ୍ୱାରା ପ୍ରେମ ନନ୍ଦଙ୍କର ଅବିଚ୍ଛେଦ୍ୟ ପ୍ରୀତିର ମହାନ ତତ୍ତ୍ୱ ପ୍ରକାଶିତ ।

**ପ୍ରଥମ ଛାନ୍ଦ :**—ପ୍ରଥମ ଛାନ୍ଦରେ ନନ୍ଦନନ୍ଦନ ମଧୁସୂଦନଙ୍କର ବୈଚିତ୍ର୍ୟମୟ ଜୀବନପ୍ରତି ଆକୃଷ୍ଟ ହୋଇ କବି ଆନନ୍ଦ ଗଦ୍ ଗଦ୍ ଚିତ୍ତରେ ତାଙ୍କର କାବ୍ୟ ରଚନା କରିଥିବାର ସ୍ୱୀକାର କରିଛନ୍ତି । ଜଗନ୍ନାଥଙ୍କ ବନ୍ଦନାରେ କାବ୍ୟର ଆରମ୍ଭ । କବି ନୀଳଗିରି କ୍ଷେତ୍ରର ମହତ୍ତ୍ୱକୁ ବିଶେଷିତ କରିଛନ୍ତି ବିରାଟ ପୃଥିବୀର ବିଶାଳ ପରିଧି ମଧ୍ୟରୁ । ସେଥିପାଇଁ ପ୍ରଥମେ ସପ୍ତସାଗର ବେଷ୍ଟିତ ପୁରାଣ ପ୍ରସିଦ୍ଧ ସପ୍ତଦ୍ୱୀପ ମଧ୍ୟରେ ଯମନିକ ତୀର୍ଥରେ ପ୍ରସିଦ୍ଧ ଦେବତା ଯମେଶ୍ୱରଙ୍କ ବିଷୟ କବି ଉଲ୍ଲେଖ କରିଛନ୍ତି । ଏହି ତୀର୍ଥର ଏପରି ମହିମା ଯେ ଯମ ନିଜର ପାପ ପ୍ରକ୍ଷାଳନ କରିବା ପାଇଁ ମକର ସଂକ୍ରାନ୍ତିର ପବିତ୍ର ଦିନରେ ଏହି ସ୍ଥାନକୁ ଆସନ୍ତି । ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ କଳ୍ପବଟ, ମୁକ୍ତିମଣ୍ଡପ, ସିଦ୍ଧଗଣପତି, ଭୁଷଣ୍ଡ କାକ, ରୋହିଣୀ କୁଣ୍ଡ ପ୍ରଭୃତି ବହୁ ପବିତ୍ର ଓ ପ୍ରସିଦ୍ଧ ସ୍ଥାନ ଅବସ୍ଥିତ । ଶ୍ରୀଜଗନ୍ନାଥଙ୍କୁ ଯୋଗୀଶ୍ରେଷ୍ଠ ରୂପେ କଳ୍ପନା କରି ସାରଦାତନ୍ତ୍ରର ଶ୍ରେଷ୍ଠ ପୀଠସ୍ଥଳୀ ରୂପେ ଶ୍ରୀକ୍ଷେତ୍ରକୁ କବି ସ୍ୱୀକୃତି ଦେଇଛନ୍ତି । ଅଷ୍ଟାଦଳ ପଦ୍ମକେଶର ମଧ୍ୟରେ ମହାଯୋଗପୀଠର ଦେବତା ଶ୍ରୀ ଜଗନ୍ନାଥ ତାଙ୍କ କ୍ଷୀଣକଟିରେ ନେତ କାଛେଣୀ ସିଦ୍ଧ ବିରାଜିତ, ତାଙ୍କର ବକ୍ଷରେ ଶ୍ରୀବତ୍ସଲାଞ୍ଛନ, ଅଗୁରୁ ଚନ୍ଦନରେ ସୁଠାମ କଳେବର ଚର୍ଚ୍ଚିତ, କଣ୍ଠରେ କୌସ୍ତୁଭ ମଣି, ଶଙ୍ଖଚକ୍ର ଗଦାପଦ୍ମରେ ଶୋଭିତ, ରକ୍ତିମ ଅଧର ଓ ଉଜ୍ଜ୍ୱଳ କୁଣ୍ଡଳରେ କର୍ଣ୍ଣ ସୁଶୋଭିତ, ପଦ୍ମ ପଲାଶ ଲୋଚନ, ପ୍ରଶସ୍ତ ଲଲାଟ, ମସ୍ତକରେ ମୁକୁଟ ଓ ଦମ୍ଭଣାର ମାଳଚୂଳ ଅତ୍ୟନ୍ତ ମନୋମୁଗ୍ଧକର । ସମ୍ମୁଖରେ କୃତାଞ୍ଜଳି ପୁଟରେ ଭକ୍ତଶ୍ରେଷ୍ଠ ବିନୀତ ଗରୁଡ଼ ଉଭା; ସିଦ୍ଧ, ରୁଦ୍ର, ବିଦ୍ୟାଧର ପ୍ରଭୃତି ଗୀତ ନୃତ୍ୟ ବାଦ୍ୟରେ ସେବା କରିବାରେ ତତ୍ପର; ଚାମର ବ୍ୟଜନ, ଶିଙ୍ଗା ଭେରୀ, କାହାଳୀ, ବୀଣା, ମୃଦଙ୍ଗ ପ୍ରଭୃତି ବାଦ୍ୟରେ ଚତୁର୍ଦ୍ଦିଗ ମୁଖରିତ; ଗନ୍ଧର୍ବଗଣ ଗାନରେ ଓ କିନ୍ନରୀମାନେ ନୃତ୍ୟରେ ତାଙ୍କର ସୁଖ ଉତ୍ପାଦନ କରୁଛନ୍ତି । ଏହିପରି ଏକ ଆନନ୍ଦମୟ ନୃତ୍ୟଗୀତ ବାଦ୍ୟ ଝଂକୃତ ପରିବେଶରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ—ଏହି ଚତୁର୍ଦ୍ଧା ମୂର୍ତ୍ତି ପତିତ ଉଦ୍ଧାର କରିବାର ବ୍ରତ ନେଇ ଉପବିଷ୍ଟ । ଏଠାରେ ସର୍ବ ବର୍ଣ୍ଣର ସାମ୍ୟ ଘଟିଛି; ଶ୍ୱେତ, ପୀତ, ନୀଳ ଓ ରକ୍ତବର୍ଣ୍ଣର ସମନ୍ୱୟରେ । ଏହି ଅନିର୍ବଚନୀୟ ରୂପର ଅନନ୍ତ ମହିମାକୁ ବ୍ରହ୍ମା ସହସ୍ର ମୁଖରେ କଳ୍ପ କଳ୍ପ ବର୍ଣ୍ଣନା କରି ମଧ୍ୟ ଶେଷ କରିପାରିବେ ନାହିଁ । କୋଟି ବ୍ରହ୍ମାଣ୍ଡରେ ଦୀନବନ୍ଧୁ ନାମରେ ଯାହାର ବିଜୟ ପତାକା ଉଡ଼ୁଛି ତାଙ୍କର କରୁଣା ଲଭିକରି

ନିଜ ମନର କଥାକୁ ପ୍ରକାଶ କରିବା ପାଇଁ କୃପା ଭିକ୍ଷା କରିଛନ୍ତି । ସେହି ସ୍ୱଦଗ୍ରାହ୍ମଙ୍କ ପାଦ-ପଦ୍ମରେ ଶରଣ ଗ୍ରହଣ କରି କବି ରହସ୍ୟମଣ୍ଡିତ ଗୀତ ରଚନା କରିବାରେ ଆଶାୟୀ ହୋଇଅଛନ୍ତି । ଜଗନ୍ନାଥଙ୍କ ବନ୍ଦନା ପରେ କାବ୍ୟର କଥାବସ୍ତୁ ଆରମ୍ଭ କରିଛନ୍ତି ।

ଦ୍ୱିତୀୟ ଛାନ୍ଦ :—ଦ୍ୱିତୀୟ ଛାନ୍ଦରେ କାବ୍ୟର ଆଖ୍ୟାୟିକା ବର୍ଣ୍ଣିତ ହୋଇଅଛି । ଜଗନ୍ନାଥ ଅର୍ଥାତ୍ ଶ୍ରୀକୃଷ୍ଣ ରାଜସିକ ବିଳାସ ବ୍ୟସନ ମଧ୍ୟରେ ଐଶ୍ୱର୍ଯ୍ୟ-ମୟୀ ପୁରୀ ଦ୍ୱାରକାରେ ଅବସ୍ଥାନ କରି ମଧ୍ୟ ଅତ୍ୟନ୍ତ ନିଃସଙ୍ଗ ଓ ଏକାନ୍ତ ବିରସ ଭାବ ପୋଷଣ କରିଛନ୍ତି । ପିତାମାତା, ଉଗ୍ରସେନ ଉଦ୍ଧବ ପ୍ରଭୃତି ଶ୍ରୀକୃଷ୍ଣଙ୍କର ଏହି ଦୀନଦଶା ଦେଖି ଚିନ୍ତିତ ଓ ବ୍ୟାକୁଳ ହେଲେ ମଧ୍ୟ ତାଙ୍କୁ ସେ ବିଷୟରେ ପଚାରିବାକୁ କୁଣ୍ଠିତ । କେବଳ ଶ୍ରୀକୃଷ୍ଣଙ୍କର ସ୍ୱକୀୟା ନାୟିକା ଅଷ୍ଟପାଟବଂଶୀଙ୍କ ମଧ୍ୟରୁ ପାଟମହିଷୀ ରୁକ୍ମିଣୀ ସାହସ ସଞ୍ଚୟ କରି ଶ୍ରୀକୃଷ୍ଣଙ୍କର ମନ ଦୁଃଖର କାରଣ ପଚାରିଛନ୍ତି । ଐଶ୍ୱର୍ଯ୍ୟମୟୀପୁରୀ ଦ୍ୱାରକାରେ ଶ୍ରୀକୃଷ୍ଣଙ୍କର ପାର୍ଥିବ ସୁଖ ସ୍ୱାଚ୍ଛନ୍ଦ୍ୟର ସକଳ କାରଣ ବିଦ୍ୟମାନ ଥିବା ସତ୍ତ୍ୱେ ସେ ସର୍ବସୁଖ ତ୍ୟାଗ କରି କୌଣସି ବିଷୟ ପ୍ରତି ଦୃଷ୍ଟିପାତ ନ କରି ଏପରି ବିଷଣ୍ଣ ମନରେ କାଳ କାଟିବାର କାରଣ କ'ଣ ! ଶ୍ରୀକୃଷ୍ଣ ଅର୍ପିତ ପ୍ରାଣା ରୁକ୍ମିଣୀ ପଚାରିଛନ୍ତି କେଉଁ ବିଷୟ ପ୍ରତି ସେ ଆସକ୍ତ । କେଉଁ ପଦାର୍ଥରେ ବା କେଉଁଠାକୁ ତାଙ୍କର ମନ ବଳୁଛି । ଷୋଳସହସ୍ର ଅଷ୍ଟନାୟିକା ସୁନ୍ଦରୀ ସ୍ତ୍ରୀ, ହାତୀ, ଘୋଡ଼ା, ରଥୀ, ପଦାତିକ, ଅପର୍ଯ୍ୟାପ୍ତ ଧନସମ୍ପତ୍ତି; ସବୁବେଳେ ଦାସୀ ପରିଜନ ଆଜ୍ଞାପାଳନ କରିବାକୁ ତତ୍ପର—କିନ୍ତୁ କାହାର କୌଣସି ସେବା ଗ୍ରହଣ କରିବାକୁ ସେ ପ୍ରସ୍ତୁତ ନୁହନ୍ତି । ସବୁବେଳେ ସେ ଚିନ୍ତିତ ଓ ବିଷୟରସ ପ୍ରତି ବୀତସ୍ପୃହ ଅକାରଣରେ ଶରୀର କ୍ଷୀଣ ନ କରି ରାଗଦ୍ୱେଷ ପରିହାର କରି ବରଂ ଦଣ୍ଡିତ କରନ୍ତୁ । ଯଦି ମନକ୍ଷୁଣ୍ଣର ପ୍ରକୃତ କାରଣ ନ କହନ୍ତି ତେବେ ନିଶ୍ଚିତ ଭାବରେ ସମସ୍ତେ ଦେହତ୍ୟାଗ କରିବେ । ରୁକ୍ମିଣୀଙ୍କର ଏହି ବିନୀତ ଅଧୀର କ୍ରୋଧଦୀପ୍ତ ବଚନରେ ଶ୍ରୀକୃଷ୍ଣ ତାଙ୍କୁ ଆଶ୍ୱାସନା ପ୍ରଦାନ କରିଛନ୍ତି ।

ତୃତୀୟ ଛାନ୍ଦ :—ତୃତୀୟ ଛାନ୍ଦରେ ପ୍ରଭୁ ଭଗବାନ ଶ୍ରୀକୃଷ୍ଣ ତାଙ୍କ ହୃଦୟର ବ୍ୟଥାର କଥା ବ୍ୟକ୍ତ କରିଛନ୍ତି, ଯାହା ଅତ୍ୟନ୍ତ ଗୋପନୀୟ । ତାଙ୍କ ମନର ବ୍ୟଥା କେବଳ ତାଙ୍କର ମନ ଭିତରେ ମରୁଛି । ଦ୍ୱାରକାରେ କେହି ତାଙ୍କର ପ୍ରାଣସଖୀ ନାହାନ୍ତି, ଯାହା ସମକ୍ଷରେ ସେ ନିଜକୁ ବ୍ୟକ୍ତ କରିପାରିବେ । ପ୍ରାଣଧର ସେହି କଥା କାହା ସମକ୍ଷରେ ପ୍ରକାଶ କରିବା ସମ୍ଭବ ନୁହେଁ । ତେଣୁ ସଙ୍ଗହୀନ ହୋଇ ସେ ତଳେ ତଳେ ମୃତ୍ୟୁବରଣ କରୁଛନ୍ତି । ଅତି

ଦୁଃଖରେ ସେ ଦ୍ୱାରକାରେ କାଳଯାପନ କରୁଛନ୍ତି । ବିଧାତା ତାଙ୍କ ଭାଗ୍ୟରେ ଦୁଃଖ ହିଁ ଲେଖିଛନ୍ତି । ତେଣୁ ସୁଖ ଖୋଜିଲେ ମଧ୍ୟ ମିଳିବ ନାହିଁ । ପୁଣି, ସେ ଯାହା କହିବେ ତାହାକୁ କେହି ସହଜରେ ମଧ୍ୟ ବିଶ୍ୱାସ କରିବେ ନାହିଁ । ଅନ୍ୟ ନାରୀ ପ୍ରତି ଶ୍ରୀକୃଷ୍ଣଙ୍କ ମନର ବ୍ୟାକୁଳତା ଶୁଣି ରୁକ୍ମିଣୀ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେ ପାଟରାଣୀ ହୋଇ ଶ୍ରୀକୃଷ୍ଣଙ୍କ ମନକୁ ଚହ୍ନିପାରି ନ ଥିବାରୁ ଦୁଃଖ କ୍ଷୋଭରେ କ୍ଲାନ୍ତ ହୋଇପଡ଼ିଛନ୍ତି । ବଳଦେବ, ଅକ୍ରୁର, ସାତ୍ୟକୀ ବିଶେଷଭାବରେ ଜ୍ଞାନୀ ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଜାଣିପାରିଲେ ନାହିଁ । ଶ୍ରୀକୃଷ୍ଣଙ୍କର ବିବାହିତା ପତ୍ନୀଗଣ ଦ୍ୱାରକାରେ ଅବସ୍ଥାନ କରୁଥିବା ସତ୍ତ୍ୱେ କାହାପାଇଁ ତାଙ୍କ ମନରେ ଏ ଗଭୀର ପ୍ରେମର ତରଙ୍ଗ? ସେଇ ନାରୀ ମଧ୍ୟ ଶ୍ରୀକୃଷ୍ଣଙ୍କୁ ତ୍ୟାଗ କରି କିପରି ଜୀବନ ଧାରଣ କରିଅଛି ! ବୁଦ୍ଧିମତୀ ରୁକ୍ମିଣୀ ଯୁକ୍ତି ଦ୍ୱାରା ଶ୍ରୀକୃଷ୍ଣଙ୍କ ମନସଙ୍ଗିନୀକୁ ଜାଣିବାକୁ ଚେଷ୍ଟା କରିଛନ୍ତି । ଯେତେବେଳେ ଶ୍ରୀକୃଷ୍ଣ ଗୋପପୁରରେ ଥିଲେ, ସେତେବେଳେ ତାଙ୍କର ସୁହାଗିନୀ ନାରୀ ନାୟିକା ଶ୍ରେଷ୍ଠା ରାଧା କେବଳ ହୋଇପାରନ୍ତି । ପୁଣି ମନରେ ପ୍ରଶ୍ନ ଜାଗିଲା— ବିବାହିତା ସ୍ତ୍ରୀ ଓ ସୁନ୍ଦରୀ ରାଜକୁମାରୀଙ୍କୁ ଛାଡ଼ି ପରସ୍ତ୍ରୀ ଓ ଗୋପାଙ୍ଗନାଠାରେ ମନବଳାଇବା ବିଶ୍ୱାସଯୋଗ୍ୟ ହେଉ ନାହିଁ ।

ଷୋଳସହସ୍ର ଏକଶହ ଦେବକନ୍ୟାଙ୍କୁ ରାବଣ ବଳାତ୍କାରରେ ହରଣ କରି ନେଇଥିଲା । ଯୁବତୀ ନାରୀ ବିଷ୍ଣୁଙ୍କୁ ମନେ ମନେ ପତିରୂପରେ ବରଣ କରିଥିବାରୁ ରାବଣକୁ ପ୍ରତ୍ୟାଖ୍ୟାନ କଲେ ଓ ରାବଣର ମୃତ୍ୟୁ ପରେ ସ୍ୱର୍ଗପୁରକୁ ଗଲେ । ପୁଣି କପଟୀ ରାକ୍ଷସ ନାରକାସୁର ତାଙ୍କୁ ଦ୍ୱାପର ଯୁଗରେ ହରଣ କରି ନେଲା । ନାରକାସୁରକୁ ନିଧନ କରି ଶ୍ରୀକୃଷ୍ଣ ତାଙ୍କୁ ବିବାହ କଲେ । ଏହି ସତୀ-ସାଧ୍ୱୀ ନାରୀ ଶ୍ରୀକୃଷ୍ଣଙ୍କ ମନକୁ ଛୁଇଁନି ନାହିଁ । ଅଥଚ ଅସତୀ ନାରୀ ପ୍ରତି ସେ ଆକୃଷ୍ଟ । ସେମାନେ ଅସତୀ ପୁଣି ବାଲ୍ୟକାଳର ସଙ୍ଗିନୀ । ତେଣୁ ସେମାନଙ୍କ ପ୍ରତି ସେ ଆକୃଷ୍ଟ ହୋଇଥିବେ । ଆଉ ଅନ୍ୟ କଥା ଚିନ୍ତାକୁ ସ୍ଥାନ କରୁନାହିଁ । କୌତୁହଳୀ ରୁକ୍ମିଣୀ ଏହିପରି ଅନେକ ପ୍ରକାରେ ଭାବି ଅଳିକୂଳ ନ ପାଇ ପ୍ରକୃତ କଥା ଜାଣିବା ପାଇଁ ଶ୍ରୀକୃଷ୍ଣଙ୍କଠାରେ ଶରଣ ପଶିଲେ । ବୁଦ୍ଧିମତୀ ରୁକ୍ମିଣୀ କହିଲେ, ଯେଉଁ-ମାନେ ଶ୍ରୀକୃଷ୍ଣଙ୍କ ମନକୁ ଜିଣି ପାରିଛନ୍ତି ସେମାନେ ତାଙ୍କର ନମସ୍ୟା । ତାଙ୍କଠାରୁ ପତିସେବାରେ ପ୍ରକୃତମର୍ମ ଉପଲବ୍ଧ କରି ସେ ଶ୍ରୀକୃଷ୍ଣଙ୍କ ସେବାରେ ବ୍ରତୀ ହେବେ । ଦୟାକରି ସେମାନଙ୍କ ପରିଚୟ ସୁବିସ୍ତୃତ ପ୍ରକାଶ କରି ମନର ସଂଶୟ ଦୂର କର । ମୁଁ ତୁମଠାରେ ନିଜକୁ ପୂର୍ଣ୍ଣତଃ ଅର୍ପଣ କରିଛି । ମୋଠାରେ କପଟତା ଅଶୋଭନୀୟ ।

ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ କଥା ଶୁଣି ଅତ୍ୟନ୍ତ ପ୍ରୀତ ହେଲେ । ସେମାନଙ୍କ ସମକ୍ଷରେ ସବୁକଥା ଖୋଲି କହିବାକୁ ପ୍ରତିଶ୍ରୁତି ଦେଲେ । ତାଙ୍କ କଥାର ପ୍ରକୃତ

ମର୍ମ ବୁଝିଲେ ସେମାନେ ଦୁଃଖ ପାଇବା ପରିବର୍ତ୍ତେ ସୁଖଲାଭ କରିବେ । ସେକଥା ଶୁଣିଲେ ସେମାନଙ୍କର ମୁକ୍ତିଲାଭ ହେବ ଓ ଶ୍ରୀକୃଷ୍ଣଙ୍କର ଦୁଃଖ ସନ୍ତାପ ଦୂର ହେବ ।

ଶ୍ରୀକୃଷ୍ଣଙ୍କଠାରୁ ଏହି ସମ୍ବାଦ ନେଇ ରୁକ୍ମିଣୀ ସତ୍ୟଭାମାଙ୍କ ମନ୍ଦିରକୁ ଯାଇ ସପତ୍ନୀମାନଙ୍କୁ ଏକତ୍ରିତ କରି ବୁଝାଇ କହିଲେ । ପରଦିନ ପ୍ରଭାତରେ ସମସ୍ତେ ଏକତ୍ରିତ ହୋଇ ଶ୍ରୀକୃଷ୍ଣଙ୍କ ସମକ୍ଷରେ ଠୁଳ ହେଲେ ଓ ଶ୍ରୀକୃଷ୍ଣଙ୍କ ମୁଖ ଦର୍ଶନରେ ପାପକ୍ଷୟ କଲେ ।

**ଚତୁର୍ଥ ଛାନ୍ଦ** :—ଚତୁର୍ଥ ଛାନ୍ଦରେ ଶ୍ରୀକୃଷ୍ଣଙ୍କର ପ୍ରିୟତମା ପତ୍ନୀଗଣ ଶ୍ରୀକୃଷ୍ଣଙ୍କର ଅଶେଷ ଗୁଣରାଶି ସ୍ମରଣ କରି ତାଙ୍କର ସ୍ତବଗାନ କଲେ । ଶ୍ରୀକୃଷ୍ଣ ପ୍ରସନ୍ନ ହେଲେ ସେମାନେ ଆନ୍ତରିକ ସୁଖଲାଭ କରିବେ । ଶ୍ରୀକୃଷ୍ଣଙ୍କ ଦୁଃଖରେ ସେମାନେ ଦୁଃଖୀ । ଏ କଥା ଶୁଣି ଶ୍ରୀକୃଷ୍ଣ ପରମ ସନ୍ତୋଷ ଲାଭକରି ସେମାନଙ୍କୁ ଆମନ୍ତ୍ରଣ ଜଣାଇଲେ । ଶ୍ରୀକୃଷ୍ଣଙ୍କ ସନ୍ତୋଷରେ ଅଷ୍ଟପାଟବଂଶୀ ତାଙ୍କ ଚତୁଃପାର୍ଶ୍ୱରେ ବେଢ଼ି ରହିଲେ । ଅନ୍ୟସମସ୍ତ ସେବାଦାସୀଙ୍କ ଗହଣରେ ଶ୍ରୀକୃଷ୍ଣ ରତ୍ନପଲଙ୍କ ଉପରେ ବିଜେ କଲେ ।

**ପଞ୍ଚମ ଛାନ୍ଦ** :—ପଞ୍ଚମ ଛାନ୍ଦରେ ଶ୍ରୀକୃଷ୍ଣ ଅଷ୍ଟପାଟବଂଶୀ ସହି ସକଳ ପ୍ରିୟତମାଙ୍କୁ ନିଜ ପାର୍ଶ୍ୱରେ ବସାଇ ସାତ୍ତ୍ୱିକ ଭାବାପନ୍ନ ବ୍ୟକ୍ତି ହିଁ ଏହା ଶୁଣିବାକୁ ଶ୍ରଦ୍ଧାନ୍ୱିତ ହେବେ ବୋଲି କହିଲେ । ଏହା ଗୂଢ଼ତତ୍ତ୍ୱ କଥା । ଶିବ ପାର୍ବତୀ ମଧ୍ୟ ଏହା ଶୁଣିବାକୁ ବ୍ୟାକୁଳ । ରାଧା ସାତ୍ତ୍ୱିକ ଭାବାପନ୍ନ ଓ ରାଜକନ୍ୟାମାନେ ରଜଗୁଣ-ସଂପନ୍ନା—ଏହା ବେଦରେ ବର୍ଣ୍ଣିତ । ଏହି କଥା ଶ୍ରବଣରେ ସିଂହ ଶୃଗାଳ ପରି ନ୍ୟୂନ ହୁଏ ଓ ଶୃଗାଳ ସିଂହପରି ପ୍ରବଳ ପରାକ୍ରମୀ ହୁଏ । ଅର୍ଥାତ୍ ରଜଗୁଣ ବିଶିଷ୍ଟ ବ୍ୟକ୍ତିମାନେ ଶୁଦ୍ଧ ସାତ୍ତ୍ୱିକଭାବ ଲାଭ କରନ୍ତି ଓ ଏହି ଅମୃତମୟ କଥାକୁ ଉପଭୋଗ କରନ୍ତି । ମାତ୍ର ଈର୍ଷାନ୍ୱିତ ହେଲେ ସର୍ବନାଶ ହେବ । ଗୋପୀପ୍ରେମର ମାହାତ୍ମ୍ୟ ପୁରାଣବର୍ଣ୍ଣିତ ସବୁକଥା ମଧ୍ୟରେ ଶ୍ରେଷ୍ଠ । ଗୋପୀମାନଙ୍କ ବିହାରସ୍ଥଳୀ ସହିତ ବୈକୁଣ୍ଠ ସମକକ୍ଷ ନୁହେଁ । ସେହି ସ୍ଥାନ ତ୍ୟାଗସୂତ ପ୍ରେମରେ ପୂର୍ଣ୍ଣ । ତେଣୁ ଗୋପୀଙ୍କ ବ୍ୟଞ୍ଜିତ ଜୀବନ ସଂକଟାପନ୍ନ । ଯୋଗୀମାନେ ନିଜର ଆତ୍ମାକୁ ଆନନ୍ଦ ଦେବା ପାଇଁ ଯୋଗସାଧନାରେ ତତ୍ପର ହୁଅନ୍ତି । ଗୋପୀମାନେ ଆତ୍ମସୁଖ ତତ୍ପର ନୁହନ୍ତି । ସେମାନେ କୃଷ୍ଣସୁଖ ପ୍ରତ୍ୟାଶିନୀ । ତେଣୁ ଗୋପୀଭାବ ସର୍ବଶ୍ରେଷ୍ଠ । ମନୁଷ୍ୟ ନିଜ ଦେହ ଓ ଆତ୍ମାକୁ କଷ୍ଟଦେଇ ଯେଉଁ ଆସୁରିକ ତପସ୍ୟା କରେ ତାହା ଗୋପୀ-ମାନଙ୍କ ସ୍ୱଭାବ ସହଜ ସାତ୍ତ୍ୱିକ ଭାବଠାରୁ ନିକୃଷ୍ଟ । ବେଦ ଶାସ୍ତ୍ର ଓ ପୁରାଣ ବର୍ଣ୍ଣିତ ଭଗବତ୍ ମହିମାର ପ୍ରଶସ୍ତି ତାଙ୍କୁ ରୁଚିକର ବୋଧ ନ ହୋଇ ଗୋପୀମାନଙ୍କର ପ୍ରେମବ୍ୟଞ୍ଜିତ ଭର୍ତ୍ସନା ମନକୁ ଆକୃଷ୍ଟ କରେ । ଭଗବାନଙ୍କ ମାୟାରେ ଜଗତ

ମୁଗ୍ଧ ଆଛନ୍ତି । ଗୋପୀଙ୍କ ମାୟାରେ ଭଗବାନ ସେହିପରି ମୁଗ୍ଧ ଅବସ୍ଥ । ଜଗତବାସୀ ଭଗବତ ଅନୁଗ୍ରହ କାମନା କଲାପରି ଭଗବାନ ଶ୍ରୀକୃଷ୍ଣ ଗୋପୀ-ମାନଙ୍କର ଅନୁଗ୍ରହ ଭିକ୍ଷୁ । ଶ୍ରୀକୃଷ୍ଣଙ୍କୁ ଆୟତ୍ତ କରିବାର କ୍ଷମତା କେବଳ ଜଣଙ୍କର —ଯେ ରୂପରେ ରମ୍ଭା, ଉର୍ବଶୀ ଓ ବୁଦ୍ଧିରେ ବ୍ରହ୍ମା ଏବଂ ଶକ୍ତିରେ ଦୁର୍ଗାଙ୍କ ଅପେକ୍ଷା ମହୀୟସୀ—ସେହି ରାଧା । ଶ୍ରୀକୃଷ୍ଣଙ୍କ ବ୍ୟତୀତ ତାଙ୍କର ପ୍ରାଣଧାରଣ ଅସମ୍ଭବ । ଶ୍ରୀକୃଷ୍ଣଙ୍କ ଅଦର୍ଶନରେ ସେ ବାଉଳି ପ୍ରାୟ ବନରେ ଘୂରି ବୁଲନ୍ତି । ଶ୍ରୀକୃଷ୍ଣ ରାଧାଙ୍କ ବ୍ୟତିରେକେ ଷୋଳସହସ୍ର ଗୋପାଙ୍ଗନାଙ୍କ ସହିତ ରାସକ୍ରୀଡ଼ାରେ ପ୍ରମତ୍ତ ହୁଅନ୍ତେ ରାଧା ଦୁଃଖ ଅଭିମାନରେ ମୂର୍ଚ୍ଛାହତା ହୋଇପଡ଼ିଥିଲେ । ବର୍ତ୍ତମାନ ଏହି ଦୀର୍ଘକାଳର ବିଚ୍ଛେଦରେ ରାଧା ନିଶ୍ଚୟ ଜୀବନ ତୁଚ୍ଛ କରିଥିବେ । ରାଧା ବିହୁନେ ତାଙ୍କୁ ଦ୍ୱାରକାର ସକଳ ସୁଖ-ସମ୍ଭୋଗ ବିଷତୁଲ୍ୟ ପ୍ରତୀତ ହେଉଅଛି । ସେ ବନ୍ଦୀପରି ସ୍ୱତନ୍ତ୍ରତାବିହୀନ ଦୁଃଖମୟ ଜୀବନ ଯାପନ କରୁଅଛନ୍ତି । ସେ ବୁଦ୍ଧିବୃତ୍ତି ହରାଇ ସ୍ୱକୃତ କର୍ମ ପାଇଁ ଭାଗ୍ୟକୁ ନିନ୍ଦା କରି ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଅଭିମାନରେ ସ୍ଫୁରିତ ଅଷ୍ଟପାଟବଂଶୀ ହରି ଭୁଲି ଶ୍ରୀକୃଷ୍ଣଙ୍କର ଚେତନା ଫେରାଇ ଆଣିବା ପାଇଁ ତତ୍ପର ହୋଇପଡ଼ିଲେ । ନାନାବିଧ ଉପଚାର ଫଳରେ ଶ୍ରୀକୃଷ୍ଣ ଚେତା ପାଇ ରାଧାଙ୍କ ନାମ ବ୍ୟାକୁଳଭାବରେ ଉଚ୍ଚାରଣ କଲେ । ମହାଲକ୍ଷ୍ମୀ ସ୍ୱରୂପିଣୀ ରୁକ୍ମଣୀଙ୍କୁ ଦେଖି ଶ୍ରୀକୃଷ୍ଣ ହର୍ଷାନ୍ୱିତ ହେଲେ ଓ ରୁକ୍ମଣୀ ତାଙ୍କୁ ତାମ୍ବୁଲ ଦେଇ ପଦସେବାରେ ନିରତ ହେଲେ ।

ଷଷ୍ଠ ଛାନ୍ଦ :—ଷଷ୍ଠ ଛନ୍ଦରେ ଶ୍ରୀକୃଷ୍ଣଙ୍କର ଅନ୍ତଃକରଣର ଭାବ ଜାଣି ସମସ୍ତେ ସ୍ତମ୍ଭିତ ହେଲେ । ଦୁଃଖ ସହି ନ ପାରି କେହି କେହି କାନ୍ଦି ଉଠିଲେ । ରୁକ୍ମଣୀ ସମସ୍ତଙ୍କୁ ଆଶ୍ୱାସନା ଦେଇ ଶ୍ରୀକୃଷ୍ଣଙ୍କୁ ତାଙ୍କ ମନର ସଂଶୟ ଫେଡ଼ିବାକୁ ଅନୁରୋଧ କଲେ । ଯେଉଁ ପ୍ରଭୁଙ୍କର ସ୍ୱରୂପ ବ୍ରହ୍ମା, ରୁଦ୍ର, ଇନ୍ଦ୍ର, ପ୍ରମୁଖ ସିଦ୍ଧ ଦେବତାମାନଙ୍କୁ ଅଗୋଚର; ଧାର୍ମିକ, ବିବେକୀ, ଯୋଗୀ, ଯତି, ଧ୍ୟାନୀ ବ୍ରତଗୃହୀ ବେଦାନ୍ତ ବିଶାରଦ, ମୁନି ଜ୍ଞାନୀ ପ୍ରଭୃତି ଅଶେଷ ସେବାଧର୍ମ ଆଚରଣ କରି ମଧ୍ୟ ଜାଣିପାରି ନାହାନ୍ତି; କେବଳ ଗୋପୀମାନେ କପରି ତାହା ଜାଣିପାରିଲେ ଓ ଗୋପୀମାନଙ୍କର ଭର୍ତ୍ସନାବାଣୀ ସେହି ପ୍ରଭୁଙ୍କର ଉପଭୋଗ୍ୟ ହୁଏ କପରି ?

ଶ୍ରୀକୃଷ୍ଣ ଉତ୍ତରରେ କହିଲେ, ଯେଉଁମାନେ ମୋତେ ଯେପରି ଭାବରେ ପୂଜା କରନ୍ତି ସେମାନେ ସେହିପରି ଭାବରେ ମୋତେ ପାଆନ୍ତି । ଏପରି ସେବାକୁ କୋଟିବାର ଦେବା ସହଜ, କିନ୍ତୁ ଗୋପୀଭାବ ଅର୍ଥାତ୍ ନିରଭିମାନ ଆତ୍ମସମର୍ପଣ ବ୍ୟତୀତ ଭକ୍ତିଲାଭ ସମ୍ଭବ ନୁହେଁ । ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ପ୍ରେମ—ଏହି ଚାରିଭକ୍ତି

ମଧ୍ୟରେ ପ୍ରେମଭକ୍ତ ଶ୍ରେଷ୍ଠ ଓ ତାହା ଗୋପୀମାନଙ୍କର ଏକନିଷ୍ଠିଆ, ଏକାନ୍ତ ନିଜସ୍ୱ ।

**ସପ୍ତମ ଛାନ୍ଦ :—** ସପ୍ତମ ଛାନ୍ଦରେ ଅଷ୍ଟପାଟବଂଶୀ ଗୋପୀମାନଙ୍କ ପ୍ରେମ ଲକ୍ଷଣ ଶ୍ରବଣରେ ଈର୍ଷାରେ ଜର୍ଜରିତ, ଅଭିମାନରେ ସ୍ଫୂରିତ ହୋଇ ପରସ୍ପର କଥାର ରହସ୍ୟ ବା ପ୍ରକୃତ ମର୍ମ ଜାଣିବା ପାଇଁ ଆଲୋଚନାରତ ହେଲେ । ଜାମ୍ବବତୀ ସତ୍ୟଭାମାଙ୍କୁ କହିଲେ, ରୁକ୍ମିଣୀଙ୍କୁ ଜଣାଇଦିଅ, ପ୍ରଭୁଙ୍କ ମତରେ ଗୋପାଙ୍ଗନା-ମାନଙ୍କଠାରୁ ରୂପଗୁଣରେ ଅଧିକ ହୋଇ ଏ ସୃଷ୍ଟିରେ ଆଉ କେହି ନାହିଁ । ସେମାନଙ୍କ ଦୀର୍ଘ କୃଷ୍ଣ କେଶରାଜି ଶ୍ରୀକୃଷ୍ଣଙ୍କ ମନକୁ ବନ୍ଦୀକରି ରଖିଛି । ତାଙ୍କୁ ଥରେ ପଚାର, ଯଦି ଗୋପୀମାନେ ତାଙ୍କର ସଦୃଶ ଅର୍ଥାତ୍ ଯୋଗ୍ୟା, ତାଙ୍କର ନିର୍ଦ୍ଦେଶରେ ନିତ୍ୟ ବିଳାସିନୀ ତେବେ ସାଧାରଣ ବ୍ରଜବାସୀଙ୍କ ସ୍ତ୍ରୀ ହୋଇ ନିଜର ଅପବିତ୍ର ଅଙ୍ଗ ପ୍ରଭୁଙ୍କୁ ଅର୍ପଣ କରିବାର ତାତ୍ପର୍ଯ୍ୟ କ'ଣ ? ସେ କହନ୍ତି, ରାଧା ତାଙ୍କର ଅର୍ଦ୍ଧାଙ୍ଗିନୀ-ରାଧା ହେଉଛନ୍ତି ଶ୍ରୀକୃଷ୍ଣଙ୍କ ମାଉଳ ଚନ୍ଦ୍ରସେନଙ୍କର ପତ୍ନୀ—ସଂପର୍କରେ ମାଇଁ । ମାଇଁ ସହିତ ଭଣଜାର ପ୍ରେମ ସମ୍ବନ୍ଧ କଥା କେଉଁଠାରେ ଦେଖିବା ତ ଦୂରର କଥା, ଶୁଣା ମଧ୍ୟ ଯାଏ ନାହିଁ । ତାଙ୍କର ଚୋରି ମୁହଁରେ ଶ୍ରୀକୃଷ୍ଣଙ୍କର ମୁହଁ ଚମତ୍କାର ପ୍ରତିଫଳିତ ହୁଏ । ଆମେସବୁ ମାଟିର ଦର୍ପଣ, ସେଥିରେ ମୁହଁ ଦେଖା-ଯିବ ନାହିଁ । ଆମକୁ ଦେଖିଲେ, ତାଙ୍କର ଚକ୍ଷୁ ଆହୁରି ତୀବ୍ର ହୋଇ ଉଠୁଛି, ଦୁଃଖ ବଢ଼ିଯାଉଅଛି । ଗୋପୀମାନେ ତାଙ୍କର ପଦ୍ମିନୀବନ, ଶ୍ରୀକୃଷ୍ଣ ସୂର୍ଯ୍ୟ ସଦୃଶ । ଭ୍ରମର ମଧୁପାନ କଲାପରି ସେ ଗୋପୀମାନଙ୍କ ମୁଖକମଳ ମଧୁପାନ କରନ୍ତି ।

ସଂସାରରେ ଏହା ଏକ ଅଶ୍ରୁତପୂର୍ବ କଥା ଯେ ଗୋଟିଏ ଗୋଟିଏ ନାରୀଙ୍କର ଦୁଇଟି ସ୍ୱାମୀ । ଯେ ଯାହା ପ୍ରତି ଆସକ୍ତ ତାକୁ ସ୍ୱର୍ଗ ସୁଖ ମଧ୍ୟ ଅକିଞ୍ଚିତ୍କର ବୋଧ ହୁଏ । ରୋଗକୁ ଜାଣି ଔଷଧ ପ୍ରୟୋଗ କରିବା ବିଧେୟ । ଅନ୍ୟଥା ରୋଗ ବୃଦ୍ଧି ଲାଭ କରେ । ଶ୍ରୀକୃଷ୍ଣଙ୍କର ବିରହଜ୍ୱରର ଏକମାତ୍ର ଔଷଧ ଗୋପାଙ୍ଗନା । ମଥୁରାକୁ ଆସିବାବେଳେ କଂସର ନିଧନ ସାଧନ କରି ପ୍ରତ୍ୟାବର୍ତ୍ତନ କରିବାର ମିଥ୍ୟା ପ୍ରତିଶ୍ରୁତି ସେ ଦେଇ ଆସିଥିଲେ । ଶ୍ରୀକୃଷ୍ଣ ଦ୍ୱାରକାପୁରକୁ ଆସି ଅଷ୍ଟପାଟବଂଶୀଙ୍କୁ ବିବାହ କରିବା ସମ୍ବାଦ ପାଇ ଗୋପୀମାନେ ଜଡ଼ିମନ୍ତ୍ର; କାଟ ପାଣି କରି ତାଙ୍କୁ ଉଚାଟ କରୁଛନ୍ତି । ତାହା ନ ହେଲେ ଶ୍ରୀକୃଷ୍ଣ ଏପରି ବ୍ୟସ୍ତ ,ବ୍ୟାକୁଳ ହେବାର କଥା ନୁହେଁ । ଜାମ୍ବବତୀଙ୍କର ଏହି ଈର୍ଷାପୂର୍ଣ୍ଣ ଭର୍ତ୍ସନା ଶୁଣି ରସରାଜ ଶ୍ରୀକୃଷ୍ଣ ଅତ୍ୟନ୍ତ ହର୍ଷାନ୍ୱିତ ହୋଇ ତାଙ୍କୁ ଆଲିଙ୍ଗନ କଲେ । ଶ୍ରୀକୃଷ୍ଣ ସବୁନାରୀଙ୍କୁ ଏହିପରି ଆନନ୍ଦ ଦାନ କଲେ । ଜାମ୍ବବତୀଙ୍କର ଏହି ଈର୍ଷାଭାବ ବାସ୍ତବ ଓ ସ୍ୱାଭାବିକ । ସ୍ୱାମୀ ପରନାରୀ ପ୍ରତି ଆକୃଷ୍ଟ ହେବ, ପୁଣି ସେହି ନାରୀର ପ୍ରଶଂସା ନିଜ ସ୍ତ୍ରୀ ଆଗରେ

ବର୍ଣ୍ଣନା କରି ବିଚିତ୍ର ରଧୂର୍ ହେବ—ଏହା ସହ୍ୟ କରିବା ସ୍ତ୍ରୀ ପକ୍ଷରେ ଅସମ୍ଭବ । ଶ୍ରୀକୃଷ୍ଣଙ୍କୁ ଭଗବାନ ବା ଲୀଳାମୟ ମୁକ୍ତିଦାତା ପୁରୁଷରୂପେ ବିଚାର ନ କରି ସେମାନେ ବାସ୍ତବ ଜଗତର ସ୍ୱାମୀ ସ୍ତ୍ରୀ ସଂପର୍କରେ ଦୃଷ୍ଟାନ୍ତ ଦେଖାଇଛନ୍ତି । ଏହି ଈର୍ଷାପୂର୍ଣ୍ଣ ଉକ୍ତି ହିଁ ଏହି ଗ୍ରନ୍ଥର ଗୌରବ ବୃଦ୍ଧି କରିଅଛି ।

ଅଷ୍ଟମଛାନ୍ଦ :—ଅଷ୍ଟମ ଗ୍ରନ୍ଥରେ ଶ୍ରୀକୃଷ୍ଣ ରୁକ୍ମିଣୀ ପ୍ରଭୃତି ଅଷ୍ଟପାଟବଂଶୀ ରାଜକୁମାରୀଙ୍କୁ କହିଲେ, ଜାମ୍ବବତୀଙ୍କ ପରି ଗାଳି ଯାହାଠାରେ ଶୁଣେ ମୁଁ ତାକୁ ଗୋପୀମାନଙ୍କ ଭଳି ମନେ କରି ଆଦରରେ ଆଲିଙ୍ଗନ କରେ । ଗୋପୀମାନେ ମଧ୍ୟ ତା' ପ୍ରତି ପ୍ରସନ୍ନ ହୋଇ ବରଦାନ କରନ୍ତି । ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶ୍ରୀରାଧାଙ୍କର ପ୍ରସାଦ ସେ ଲାଭ କରେ । ତାପରେ ସେ ମୋର ପ୍ରିୟପାତ୍ରୀ ହୁଏ । କାରଣ, କୃଷ୍ଣଭାବ ପ୍ରାପ୍ତି ପାଇଁ ଏହା ନିତାନ୍ତ ଆବଶ୍ୟକ । ଗୋପୀମାନଙ୍କ ରୂପ ଗୁଣ ସମ୍ବନ୍ଧରେ ଜାମ୍ବବତୀ ଯାହା ବର୍ଣ୍ଣନା କଲେ ତାହା ପ୍ରତ୍ୟକ୍ଷ ସତ୍ୟ । ଗୋପାଙ୍ଗନାମାନଙ୍କ ରୂପ ଯୌବନର ଅତି ବିସ୍ତାରିତ ବର୍ଣ୍ଣନା ଶୁଣି ଦ୍ୱାରକାର ତରୁଣୀଗଣ ହସି କହିଲେ, ଯାହାଙ୍କର ଗୌରବ ବେଦ ବର୍ଣ୍ଣନା କରିବା ପାଇଁ ସମର୍ଥ ହୋଇ ନାହିଁ ତାଙ୍କୁ କଥାରେ କିଏ ପରାଜିତ କରିବ ?

ପାଟ ମହିଷୀ ରୁକ୍ମିଣୀ ସବୁ ଶୁଣି ପ୍ରଶ୍ନ କଲେ, ରାଧା ଓ ଗୋପାଙ୍ଗନାମାନେ ଯଦି ତୁମ୍ଭର ସ୍ୱପତ୍ନୀ ତେବେ ଚନ୍ଦ୍ରସେଣା ଓ ଅନ୍ୟମାନେ ରାଧା ଓ ଗୋପୀମାନଙ୍କର ପତି ବୋଲାଉଛନ୍ତି କିପରି । ଏହି କଥାର ରହସ୍ୟ ମୋଚନ କରି ଆମର ହୃଦୟ ବ୍ୟଥା ହରଣ କରନ୍ତୁ । ରୁକ୍ମିଣୀଙ୍କ ମନର ସଂଶୟ ମୋଚନ ପାଇଁ ପ୍ରଭୁ ଅତ୍ୟନ୍ତ ଗୋପନୀୟ ବୃତ୍ତାନ୍ତ ବର୍ଣ୍ଣନା କଲେ । ନିତ୍ୟଧାମରେ ଭଗବାନ ଶ୍ରୀକୃଷ୍ଣ ଦଶଭୂଜରେ ପ୍ରକାଶିତ । ଶଙ୍ଖ, ଚକ୍ର, ଗଦା, ପଦ୍ମ, ଧନୁ, ଖଡ୍‌ଗ ଦୁଇ ହସ୍ତରେ ବଂଶୀ, ଏକ ହସ୍ତରେ ନିତ୍ୟ ରାଧାଙ୍କୁ ଆଲିଙ୍ଗନ ଓ ଅନ୍ୟହସ୍ତରେ ଚିବୁକ ସ୍ପର୍ଶକରି ଚୁମ୍ବନ କରୁଥିଲେ । ଏପରିକି ଏକ ରାସକ୍ରୀଡ଼ିତ ମୁହୂର୍ତ୍ତିରେ ମଳୟ ପବନ ଶଙ୍ଖ ଗର୍ଭରେ ପଶି ଏକ ଆଶ୍ଚର୍ଯ୍ୟ ସ୍ୱନ ସଞ୍ଚାର କଲା । ରାଧାକୃଷ୍ଣ ପରସ୍ପର ଭାବରେ ମଗ୍ନ ଥିବା ଅବକାଶରେ ଶଙ୍ଖଧ୍ୱନି ଶୁଣି ରାଧାଙ୍କର ଚିତ୍ତ ଚାଞ୍ଚଲ୍ୟ ଘଟିଲା । ରାଧାଙ୍କର ଚିତ୍ତ ବୈକଲ୍ୟ ଦେଖି ନିତ୍ୟକୃଷ୍ଣ ନିତ୍ୟରାଧାଙ୍କୁ ଅଭିଶାପ ଦେଲେ ଯେ ଯାହାପାଇଁ ତାଙ୍କର ଚିତ୍ତ ବିଭ୍ରମ ଘଟିଲା ମର୍ତ୍ତ୍ୟରେ ତାର ପତ୍ନୀ ହୋଇ ସେ ଜନ୍ମ ହେବେ । ଏହା ଶୁଣି ରାଧା ମୂର୍ଚ୍ଛିତା ହୋଇପଡ଼ିଲେ । ରାଧାକୃଷ୍ଣଙ୍କର ବିଚ୍ଛେଦ କିପରି ସମ୍ଭବ ? ରାଧାଙ୍କ ଭାଷାରେ,

"ତୁମ୍ଭଙ୍କୁ ତେଜି ଯିବି କେମନ୍ତେ
ତୁମ୍ଭେ ହେଁ କି ମୂର୍ଚ୍ଛି ପାରିବ ମୋତେ ।"

ଯେଉଁଠାରେ ରାଧାଙ୍କର ପ୍ରକାଶ, ସେଠାରେ ଶ୍ରୀକୃଷ୍ଣ ହିଁ ତାଙ୍କର ସ୍ୱାମୀ । ଶ୍ରୀକୃଷ୍ଣଙ୍କର ମଧ୍ୟ ରାଧାଙ୍କ ବ୍ୟତୀତ ସ୍ୱତନ୍ତ୍ର ସ୍ଥିତି ନାହିଁ । ପୁଣି ଶ୍ରୀକୃଷ୍ଣ ବ୍ରଜଗଲେ ନିତ୍ୟ ସ୍ଥଳର ମଧ୍ୟ ଅସ୍ତିତ୍ୱ ନାହିଁ । ପ୍ରଥମରେ ନିତ୍ୟସ୍ଥଳ ମର୍ତ୍ତ୍ୟକୁ ଗୋପ, ଯମୁନା ଓ କଦମ୍ବବନ ରୂପରେ ଆସିଲା । ଗୋପୀ ଓ ଗୋପାଳମାନେ ଆସି ଗୃହସଂସାର କଲେ । ଶଙ୍ଖ ଚନ୍ଦ୍ରସେଣା ନାମରେ ଜନ୍ମ ନେଲେ । ସେ କେବଳ ରାଧାଙ୍କ ସ୍ୱାମୀତ୍ୱ ଲାଭ କରିବେ—ଅଧିକାର ସାବ୍ୟସ୍ତ କରିବେ ନାହିଁ । ଗୋପାଙ୍ଗନାମାନଙ୍କ ସ୍ୱାମୀମାନେ ମଧ୍ୟ ଶ୍ରୀକୃଷ୍ଣଙ୍କର ଅଂଶ । ସେମାନେ ସମସ୍ତେ ମଧ୍ୟ ନଷ୍ଟ ପୁରୁଷ ଅର୍ଥାତ୍ କ୍ଳୀବ । ଏହାପରେ ଏକ ଉତ୍କୃଷ୍ଟ ବଚନିକା ଶ୍ରବଣରେ ରୁକ୍ମିଣୀ ପ୍ରମୁଖ ଅଷ୍ଟପାଟବଂଶୀ ରାଧା ଓ ଗୋପାଙ୍ଗନାଙ୍କ ଦର୍ଶନାଭିଳାଷୀ ହେଲେ । ପ୍ରାଣପ୍ରିୟା ମହିଷୀମାନଙ୍କର ଅନୁରୋଧ କ୍ରମେ ରାଧା ଓ ଗୋପାଙ୍ଗନାମାନଙ୍କୁ ଦେଖାଇବା ପାଇଁ ଶ୍ରୀକୃଷ୍ଣ ପ୍ରତିଶ୍ରୁତି ଦେଲେ ।

ଏହାପରେ କବିତ୍ୱ ସମ୍ବନ୍ଧରେ ଏବଂ ସାଧୁ ଓ ଖଳଙ୍କ ମନୋବୃତ୍ତି ସମ୍ବନ୍ଧରେ କବି ଏକ ଦୀର୍ଘ ବ୍ୟାଖ୍ୟା ପ୍ରଦାନ କରିଛନ୍ତି ।

**ନବମ ଛାନ୍ଦ** :—ନବମ ଛାନ୍ଦରେ ଶ୍ରୀକୃଷ୍ଣଙ୍କର ବିରହରେ ଗୋପପୁର ଶ୍ରୀହୀନ ହୋଇପଡ଼ିବାର ବର୍ଣ୍ଣନା ରହିଛି । ରାଧିକା ଓ ଦୂତିକା ଶ୍ରୀକୃଷ୍ଣଙ୍କୁ ଫେରାଇ ଆଣିବା ପାଇଁ ଉପାୟ ପାଞ୍ଚିଛନ୍ତି । ସ୍ୱ ଅଙ୍ଗରୁ ଗୋଟିଏ ଗୋଟିଏ କନ୍ୟା ଜାତକରି ସେହି ମାନସ କନ୍ୟାଙ୍କୁ ଦ୍ୱାରକା ପ୍ରେରଣ କରିବା ପାଇଁ ଓ ସେହିମାନେ ଉପାୟ କରି ଶ୍ରୀକୃଷ୍ଣଙ୍କୁ ଫେରାଇ ଆଣିବାର ପଥ ସ୍ଥିର କରାଗଲା । ନିଜ ଅଙ୍ଗରୁ କର୍ପୂରରଜ ନେଇ ପିତୁଳାଗଢ଼ି ଦଶଗୋଟି ମନ୍ତ୍ରକୁମାରୀ ସୃଷ୍ଟି କରାଗଲା । ସେହି ଦଶ ମାୟାକୁମାରୀ ଜୀବନ୍ୟାସ ପାଇ କେଉଁ କାର୍ଯ୍ୟ ନିମନ୍ତେ ରାଧାଠାକୁରାଣୀ ତାଙ୍କୁ ଲୋଡ଼ିଛନ୍ତି ବୋଲି ବିନୀତ ଭାବରେ ଜିଜ୍ଞାସା କଲେ । ଦ୍ୱାରକା ଯାଇ ଶ୍ରୀକୃଷ୍ଣଙ୍କୁ ରାଧା ପ୍ରଭୃତି ଗୋପାଙ୍ଗନାମାନଙ୍କ ମନର ଅବସ୍ଥା ଜଣାଇବାପାଇଁ ରାଧା କହିବାରୁ ତତ୍‌କ୍ଷଣାତ୍ ସେମାନେ ଅନ୍ତରୀକ୍ଷରେ ଯାତ୍ରା କରି ଦ୍ୱାରକାରେ ପହଞ୍ଚିଲେ । ଗୋପାଙ୍ଗନାଙ୍କ ସଦୃଶ ଗାରେଣୀମାନଙ୍କୁ ଦେଖି ଶ୍ରୀକୃଷ୍ଣ ଅତ୍ୟନ୍ତ ଆନନ୍ଦିତ ହେଲେ । ସେମାନଙ୍କ ପରିଚୟ ଜାଣିବାକୁ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ଇଙ୍ଗିତ ଦେଲେ । ରାଧାଙ୍କ ଅଙ୍ଗଜାତ କନ୍ୟା ଅର୍ଚ୍ଚନା ଅଳ୍ପ ହସି ଉତ୍ତର ଦେଲେ—ମୁଁ ରାଧାଗାରେଣୀଙ୍କ କନ୍ୟା, ଦୂତୀ ଗାରେଣୀର କନ୍ୟା ସହଚରୀ, ଚନ୍ଦ୍ରାବଳୀ କନ୍ୟା ଚନ୍ଦ୍ରମାଳା ଚମ୍ପରେ ଆନନ୍ଦିନୀ ଚନ୍ଦନଶାଳା, ଚନ୍ଦ୍ରାବତୀ କନ୍ୟା ଚନ୍ଦ ବିମ୍ବା, ମଦନସୁନ୍ଦରୀ ଦୁହିତା ମଦନା ଶ୍ରୀପ୍ରିୟାର ନନ୍ଦିନୀ ଶ୍ରୀମତୀ, ମଧୁମତୀର କନ୍ୟା ମେଧା ଶଶିରେଖା ଦୁହିତା ଶଶିପ୍ରଭା, ହରିପ୍ରିୟା

କନ୍ୟା ହରବ୍ରା—ଏମାନଙ୍କ ବ୍ୟତୀତ ମୋ ପିତାଙ୍କର ଆହୁରି ଅନେକ ସ୍ତ୍ରୀ ଅଛନ୍ତି । ତୁମେ ଯେପରି ସବୁ ସ୍ତ୍ରୀଙ୍କ ମଧ୍ୟରେ ଶ୍ରେଷ୍ଠ, ମୋ ମାତା ରାଧା ସେହିପରି ସବୁ ସପତ୍ନୀଙ୍କ ମଧ୍ୟରେ ମୁକୁଟମଣି । ଦୂତିକା ଗାୟେତ୍ରୀ ମୋ ମାତାଙ୍କର ସଖୀ । ଏହି ଅଷ୍ଟକୁମାରୀଙ୍କ ଉପରେ ଆଉ ଆଠଜଣ ଶ୍ରେଷ୍ଠ ଗାୟେତ୍ରୀ ଅଛନ୍ତି । ଷୋଳଜଣଙ୍କର ଷୋଳ ସହସ୍ର ଅନୁଗାୟେତ୍ରୀ ନୃତ୍ୟ ଓ ସଙ୍ଗୀତ କଳାରେ ଏପରି ପାରଦର୍ଶିନୀ ଯେ ସିଦ୍ଧ ସରସ୍ୱତୀ ବସ୍ତୁଙ୍କୁ ଏମାନଙ୍କ ସାହାଯ୍ୟରେ ମୁଗ୍ଧ କରିପାରିଥିଲେ ଏବଂ ସ୍ୱର୍ଗର ବିଦ୍ୟାଧରୀମାନେ ଏମାନଙ୍କଠାରୁ ଗାନ୍ଧାର ବିଦ୍ୟା ଶିକ୍ଷା କରିଥିଲେ । ଯମୁନା କୂଳରେ ବୃନ୍ଦାବନ ନିକଟରେ ଗୋପପୁରରେ ମୋ ମାତାମାନଙ୍କୁ ତ୍ୟାଗ କରି ନିଷ୍ଠୁର ପିତା ଚାଲିଗଲେ । ପିତାଙ୍କୁ ଝୁରି ଝୁରି ସେମାନେ ଏପରି କ୍ଷୀଣ ହୋଇଗଲେଣି ଯେ ଗୀତ ବାଦ୍ୟ ନୃତ୍ୟ କରିପାରୁ ନାହାନ୍ତି । ତୁମ୍ଭର ଦାନୀପଣର ଖ୍ୟାତି ଶୁଣି ତୁମ୍ଭ ନିକଟକୁ ସେମାନେ ଆମକୁ ପଠାଇଦେଲେ । ଆମ ନୃତ୍ୟଗୀତ ଦେଖି ଦାନ ଦେବ । ରାଧାକୃଷ୍ଣଙ୍କ ନୃତ୍ୟଗୀତକୁ ଶ୍ରେଷ୍ଠ ମଣୁଥିବା ଗାୟେତ୍ରୀଗଣ ଅର୍ଦ୍ଧନୀକୁ ରାଧା ବେଶରେ ସଜ୍ଜିତ କରି ନୃତ୍ୟ ଆରମ୍ଭ କଲେ । ଶ୍ରୀକୃଷ୍ଣଙ୍କ ବିରହରେ ଗୋପପୁରର ଶୋଚନୀୟ ପରିସ୍ଥିତି, ଗୋପୀମାନଙ୍କର ଦୟନୀୟସ୍ୱରୂପ, ଗୋପବାସୀଙ୍କର ଶୋକବିହ୍ୱଳ ଅବସ୍ଥା ଅତି ନିପୁଣ ଭାବରେ ସେମାନେ ନୃତ୍ୟ ଗୀତରେ ପ୍ରକାଶ କଲେ ।

ଦଶମ ଛାନ୍ଦ :—ଦଶମ ଛାନ୍ଦରେ ପ୍ରେମବାତୁଳିନୀ ରାଧାଙ୍କର ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାର ବ୍ୟାକୁଳ ବାସନା ପ୍ରକାଶ ପାଇଅଛି । ଶ୍ରୀକୃଷ୍ଣଙ୍କର ରୂପଗୁଣ ସ୍ମରଣ କରି ବ୍ୟାକୁଳ ହୃଦୟରେ ରାଧା ଦୂତୀକୁ ଶ୍ରୀକୃଷ୍ଣଙ୍କ ନିକଟକୁ ପ୍ରେରଣ କରିଛନ୍ତି । ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ଯିବା ପାଇଁ ସେ ନିଜେ ବିଭିନ୍ନ ସାଜସଜ୍ଜାରେ ମଣ୍ଡିତ ହେବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ମିଳନର ହୃଦୟ ଉତ୍କଣ୍ଠାରେ ଶେଷରେ ମୂର୍ଚ୍ଛିତ ହୋଇ ସେ ଢଳି ପଡ଼ିଛନ୍ତି ।

ଏକାଦଶ ଛାନ୍ଦ :—ଗାୟେତ୍ରୀମାନଙ୍କ ନୃତ୍ୟ, ଗୀତ ଓ ବାଦ୍ୟରେ ଦ୍ୱାରବତୀପୁରର ନାରୀମାନେ ମୁଗ୍ଧଚିତ୍ତ ଓ ଅପଲକ ନେତ୍ରରେ ରସାସ୍ୱାଦନ କରିଛନ୍ତି । ଶ୍ରୀକୃଷ୍ଣ ଓ ରାଧାଙ୍କର ବିରହ ବ୍ୟଥା ଦେଖି ସେମାନେ ଅତ୍ୟନ୍ତ କାତର ହୋଇପଡ଼ିଛନ୍ତି । ପ୍ରସଙ୍ଗ କ୍ରମେ ମନ୍ତ୍ରୀକୁମାରୀମାନେ ମହାଶମ୍ଭୁ ମହାଦେବ ଓ ହରପ୍ରିୟା ପାର୍ବତୀଙ୍କ କଥା ଉପସ୍ଥାପନ କରିଛନ୍ତି । ସଂଯୋଗ ବଶତଃ ଗୋପେଶ୍ୱର ମହାଦେବ ପାର୍ବତୀଙ୍କ ସହ ବନ ମଧ୍ୟରେ କ୍ରୀଡ଼ା କରୁଥିଲେ । ଶ୍ରୀରାଧା ଓ ଗୋପାଙ୍ଗନାଙ୍କ କରୁଣ ବିଳାପଧ୍ୱନି ଶୁଣି ପାର୍ବତୀ ସେମାନଙ୍କୁ ଶ୍ରୀକୃଷ୍ଣ ନିକଟରେ

ଫେରଆସିବା କଥା କହି ସାନ୍ତ୍ୱନା ଦେଲେ । ଶ୍ରୀକୃଷ୍ଣଙ୍କ ଅଭାବରେ ରାଧିକା ତଥା ଗୋପାଙ୍ଗନାଙ୍କ ଜୀବନ ଅର୍ଥହୀନ ।

"କୃଷ୍ଣ ଦେହ ଇଚ୍ଛି, କୃଷ୍ଣ ସୁଖ ଲାଭ ଅର୍ଥେ
କୃଷ୍ଣବିନୁ ଜୀବ ଥିବ କାହାର ନିମନ୍ତେ ।"

ଶ୍ରୀକୃଷ୍ଣଙ୍କର ସୁଖ ସମ୍ପାଦନ ଅଭିପ୍ରାୟରେ ସେମାନେ ଦେହ ଧାରଣ କରିଅଛନ୍ତି । ତାଙ୍କ ବ୍ୟତୀତ ସଂସାରର ସକଳ ସାରବସ୍ତୁ ଅସାର ପ୍ରତୀତ ହେଉଅଛି । ଏହିପରି ଗୋପାଙ୍ଗନାଙ୍କ ଦୁଃଖ ଦେଖି ଦୁଃଖନାଶିନୀ ଉମା ପ୍ରସନ୍ନ ହୋଇ ପ୍ରବୋଧନା ବାଣୀ ଶୁଣାଇବାରୁ ଶ୍ରୀରାଧା ଗୋପୀଙ୍କ ସହ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରି ଶ୍ରୀକୃଷ୍ଣଙ୍କ ପ୍ରତୀକ୍ଷାରେ ରହିଲେ ।

ଦ୍ୱାଦଶ ଛାନ୍ଦ :—ଏହି ଛାନ୍ଦରେ ଶ୍ରୀକୃଷ୍ଣ ବିଚ୍ଛେଦ-ବିଧୁରା ରାଧାଙ୍କର ବିରହ ଅବସ୍ଥା ବର୍ଣ୍ଣନା କରାଯାଇଅଛି । ବିଭିନ୍ନ ଋତୁ ଶ୍ରୀରାଧାଙ୍କର ଶରୀର ଓ ମନ ଉପରେ କି କି ପ୍ରତିକ୍ରିୟା ସୃଷ୍ଟି କରିଛନ୍ତି, ତାହାର ଏକ ନିଖୁଣ ବାସ୍ତବ ବର୍ଣ୍ଣନା ଏହି ଛାନ୍ଦର ବୈଶିଷ୍ଟ୍ୟ । ବାର ମାସ, ଛଅ ଋତୁରେ ପ୍ରକୃତିର ରୂପବର୍ଣ୍ଣନା କବିଙ୍କର ଅନ୍ୟତମ ଅଭିଳାଷ ।

ତ୍ରୟୋଦଶ ଛାନ୍ଦ :—ଏହି ଛାନ୍ଦରେ ବିରହିଣୀ ରାଧିକା କୃଷ୍ଣ ପ୍ରାପ୍ତି ଅଭିପ୍ରାୟରେ ବୃନ୍ଦା ସହ ବନ ବିହାର କରିବା ବର୍ଣ୍ଣିତ । ସଖୀମାନେ ରାଧାଙ୍କୁ ସ୍ୱସଦନରେ ନ ଦେଖି ନିକୁଞ୍ଜବନକୁ ଅନ୍ୱେଷଣ କରିବାକୁ ଆସି ତାଙ୍କୁ ଭେଟିଲେ । ଶ୍ରୀରାଧା ଅଶୋକ ବୃକ୍ଷ ମୂଳରେ ସିଂହାସନ ସ୍ଥାପନ କରି କାମନା ପୂରଣାର୍ଥେ କାମଦେବାଙ୍କର ପୂଜା କରିଛନ୍ତି । ତାପରେ ଅଶୋକ ବୃକ୍ଷ, କୋକିଳ, ଭ୍ରମର, ଗନ୍ଧ ପୁଷ୍କରିଣୀ ପ୍ରଭୃତିଙ୍କୁ ନିଜ ନିଜ ଶକ୍ତି ପ୍ରୟୋଗ କରି ଶ୍ରୀକୃଷ୍ଣଙ୍କୁ ବାହୁଡ଼ାଇ ଆଣିବା ପାଇଁ ଅତି ବିକଳରେ ଅନୁରୋଧ କରିଛନ୍ତି । କ୍ଷୁବ୍‌ଧ ଚିତ୍ତରେ ଗୃହକୁ ପ୍ରତ୍ୟାବର୍ତ୍ତନ କରି ଗମ୍ଭିରୀ ଘରେ ମୁହଁ ମାଡ଼ି ଶ୍ରୀରାଧା ଶୋଇଲେ । ସଖୀମାନେ ତାଙ୍କୁ ଏକାନ୍ତରେ ଛାଡ଼ି ଚାଲିଗଲେ । ମାୟା କୁମାରୀମାନେ ଏହି ପ୍ରସଙ୍ଗ ନୃତ୍ୟ, ଗୀତ, ବାଦ୍ୟ ସହକାରେ ଅଭିନୟ କରୁଥିବା ସମୟରେ ଦ୍ୱାରକାରେ ସମସ୍ତେ ଆଶ୍ଚର୍ଯ୍ୟ ଦୃଷ୍ଟିରେ ଦେଖୁଥିଲେ । ସେମାନଙ୍କର ମନ ନାନା ପ୍ରଶ୍ନ ଓ ସନ୍ଦେହରେ ଜଡ଼ିତ ହେଲା । ଶ୍ରୀକୃଷ୍ଣ ଓ ଗୋପାଙ୍ଗନାଙ୍କ ସମ୍ବାଦ ଏମାନେ କିପରି ଜାଣିଲେ ? ଏମାନେ କଣ ମାୟାରୂପିଣୀ ଗୋପାଙ୍ଗନା ? ଶ୍ରୀକୃଷ୍ଣ କଣ କପଟରେ ଏମାନଙ୍କୁ ଏଠାକୁ ଆଣିଛନ୍ତି ? ଏମାନଙ୍କ ତେଜ, ବୁଦ୍ଧି

ଓ ଶତ୍ରୁ ନିକଟରେ ଦ୍ୱାରକାପୁରର ନାରୀମାନେ ବନ୍ଦୀ ହୋଇ ମଧ୍ୟ ପରାଜିତା । ଗୋପାଙ୍ଗନାଙ୍କୁ ଗଉଡ଼ୁଣୀ ଓ ପ୍ରଜା ବୋଲି ଭାବୁଥିବା ଦ୍ୱାରକାର ରାଣୀମାନେ ସେମାନଙ୍କ ଦାସୀ ହେବାକୁ ମଧ୍ୟ ଯୋଗ୍ୟ ନୁହନ୍ତି ବୋଲି ମନେକଲେ । ସେମାନଙ୍କର ଦର୍ପ ଚୂର୍ଣ୍ଣ ହେଲା ଓ ଶ୍ରୀକୃଷ୍ଣଙ୍କ ନିକଟରେ ସେମାନେ ଶରଣ ଭିକ୍ଷା କରି ଗୋପାଙ୍ଗନାଙ୍କ ଦର୍ଶନ ଲାଭ ପାଇଁ ପ୍ରାର୍ଥନା କଲେ ।

ଭାବଗ୍ରାହୀ ହରି ସେମାନଙ୍କର ମନର ଭାବ ଜାଣି ସନ୍ତୋଷ ଲାଭ କଲେ । ଗାୟେତ୍ରୀମାନଙ୍କୁ ଡାକି କି ଧନରେ ସେମାନଙ୍କର ପ୍ରୟୋଜନ ବୋଲି ପଚାରିଲେ । ସେମାନେ କହିଲେ—ଆମର ଅନ୍ୟ ଧନରେ ପ୍ରୟୋଜନ ନାହିଁ । ଆମର ପିତାରେ ପ୍ରୟୋଜନ । ସେ ତୁମର ମିତ୍ର, ତାଙ୍କ ନାମ ଭାବଗ୍ରାହୀ—ତୁମେ ଯଦି ସେହି ବ୍ୟକ୍ତି ହୋଇଥାଅ ତେବେ ଗୋପପୁରକୁ ଯାଅ । ଏକଥା କହିବାମାତ୍ରେ ସେମାନେ ଶୂନ୍ୟରେ ଅଦୃଶ୍ୟ ହୋଇ ଯେ ଯାହାର ଅଙ୍ଗରେ ପ୍ରବେଶ କଲେ । ଏକଥା ଶୁଣି ଶ୍ରୀକୃଷ୍ଣଙ୍କର ଚିତ୍ତ ଉଚାଟ ହେଲା । ଶ୍ରୀକୃଷ୍ଣ ଲୋତକପୂର୍ଣ୍ଣ ନୟନରେ, ଅସ୍ଥିର ମନ ଓ ଭାବବିହ୍ୱଳ ଚିତ୍ତରେ ରୁକ୍ମିଣୀଙ୍କୁ କହିଲେ,—ରାଧାଠାକୁରାଣୀ ଦୟା କରି ତୁମ୍ଭ ଆମ୍ଭ ମନ ଜାଣି ଗାୟେତ୍ରୀମାନଙ୍କୁ ପଠାଇଥିଲେ—ତୁମେମାନେ ନିଜ ନିଜ ମନ୍ଦିରକୁ ଫେରିଯାଅ, ଯଥା ସମୟରେ ମୁଁ ଆହ୍ୱାନ କରିବି ।

ଶ୍ରୀକୃଷ୍ଣଙ୍କ କଥା ଶୁଣି ରାଣୀମାନେ ଶୋକ-ଜର୍ଜରିତ ମନକୁ ଆୟତ୍ତ କରି, ଲଜ୍ଜା ଚିନ୍ତାରେ କ୍ଷୀଣ ହୋଇ, ଭୋଜନ ଶୟନ ବର୍ଜନ କରି କାଳ ଯାପନ କଲେ । ଶ୍ରୀକୃଷ୍ଣ ରାଧାଙ୍କ ଚିନ୍ତାରେ ସମସ୍ତ ଅତିବାହିତ କଲେ ।

**ଚତୁର୍ଦ୍ଦଶ ଛାନ୍ଦ**—ଚୈତ୍ର ପୂର୍ଣ୍ଣିମୀ ରାତିରେ ଶ୍ରୀକୃଷ୍ଣ ନିଜ ବାହନ ଗରୁଡ଼ଙ୍କୁ ସ୍ମରଣ କଲେ । ଗରୁଡ଼ ଧ୍ୟାନରେ ଥିଲେ । ପ୍ରଭୁ ସ୍ମରଣ କରିବାରୁ ତତ୍‌କ୍ଷଣାତ୍ କ୍ଷିପ୍ର ଗତିରେ ଆସି ଶ୍ରୀକୃଷ୍ଣଙ୍କ ସନ୍ନିଧାନରେ ଦୀନ ଭାବରେ ଉପନୀତ ହେଲେ । ଦିବ୍ୟ ବେଶ ଧାରଣ କରି ରୁକ୍ମିଣୀଙ୍କ ସହ ଶ୍ରୀକୃଷ୍ଣଙ୍କର ବିବାହିତା ନାରୀମାନେ ଗରୁଡ଼ ପୃଷ୍ଠରେ ବସି ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ବୃନ୍ଦାବନ ଅଭିମୁଖେ ଯାତ୍ରା କଲେ । ଶ୍ରୀକୃଷ୍ଣଙ୍କ ଆଦେଶାନୁଯାୟୀ ଗରୁଡ଼ କଦମ୍ବ ବୃକ୍ଷରେ ଚଢ଼ି ପକ୍ଷ ବିସ୍ତାର କରି ମଥୁରା ଗୋପ ସହିତେ ବନ ଉପବନ ସବୁକୁ ଢାଙ୍କିଦେଲେ । ପିଠି ଉପରେ ନାରୀମାନେ ଅଦୃଶ୍ୟରେ ରହି ଡେଣାର ସ୍ଥାନେ ସ୍ଥାନେ ଥିବା ଫାଙ୍କ ବାଟେ ତଳେ ଘଟୁଥିବା ସକଳ ବିଷୟ ଅନାୟାସରେ ଦେଖିପାରିଲେ । ଶ୍ରୀକୃଷ୍ଣ କଳ୍ପତରୁ ମୂଳକୁ ଆସି ନିଶ୍ଚଳରେ ଯୋଗକୃଷ୍ଣଙ୍କୁ ସ୍ମରଣ କଲେ, ଯାହାଙ୍କ ଦାୟିତ୍ୱରେ ବିଶ୍ୱାସରେ ସେ ତାଙ୍କର ମୋହନ ବଂଶୀ ଦେଇଯାଇଥିଲେ । କଂସ ପ୍ରମୁଖ ଦୈତ୍ୟଙ୍କ ବିନାଶ ସାଧନରେ ପୃଥିବୀକୁ ଭାରମୁକ୍ତ କରି ସେ ଯୋଗକୃଷ୍ଣଙ୍କ

ସହ ନିତ୍ୟପୁରୀକୁ ପ୍ରତ୍ୟାବର୍ତ୍ତନ କରିବେ ବୋଲି ଆଶ୍ୱାସନା ଦେଇଥିଲେ । ସିଦ୍ଧିଙ୍କୁ ଚିର ସହସ୍ର ଯୁଗ ପାଇଁ ଅବସ୍ଥାନ କରିବାକୁ ଶ୍ରୀକୃଷ୍ଣ ନିର୍ଦ୍ଦେଶ ଦେଲେ । ନିଦ୍ରା-ବତୀଙ୍କୁ ଡାକି ଗରୁଡ଼ ପୃଷ୍ଠରେ ଥିବା ନାରୀମାନଙ୍କୁ ଓ ଶ୍ରୀକୃଷ୍ଣଙ୍କ ସହ ବ୍ରଜବଧୂଙ୍କୁ ଛାଡ଼ି ଅନ୍ୟମାନଙ୍କୁ ନିଦ୍ରାରେ ମୋହିବା ପାଇଁ ଆଦେଶ ଦେଲେ । ସପନାବତୀଙ୍କୁ ଡାକି ସ୍ୱପ୍ନରେ ଲୋକମାନଙ୍କ ଗୃହ ଅଙ୍ଗଣରେ ଅଧିବାହିତ କରିବାକୁ କହିଲେ । ଚନ୍ଦ୍ରକୁ ତାର ଶୀତଳ କିରଣରାଜିରେ ତାରକା ମଣ୍ଡଳୀରେ ଶୋଭିତ ହୋଇ ବିରାଜମାନ କରିବାକୁ କହିଲେ । କାଳିନ୍ଦୀ ଓ କଦମ୍ବକୁ ସେମାନଙ୍କ କାର୍ଯ୍ୟ କରିବାକୁ ଆଦେଶ ଦେଇ, ନାନା ବେଶଭୂଷାରେ ମଣ୍ଡିତ ହୋଇ କଦମ୍ବ ମୂଳରେ ତ୍ରିଭଙ୍ଗ ଛନ୍ଦରେ ଶ୍ରୀକୃଷ୍ଣ ଠିଆହେଲେ ।

**ପଞ୍ଚଦଶ ଛାନ୍ଦ** – ମୋହନ ମୁରଲୀର ମଧୁର ନିସ୍ୱନରେ ତ୍ରିଭୁବନ ଥରି ଉଠିଲା । ଶିବଙ୍କର ଧ୍ୟାନ ଭଗ୍ନ ହେଲା । ସପ୍ତସାଗରରେ ତରଙ୍ଗ ସ୍ଥିର ହେଲା । ଯମୁନା ବିପରୀତ ଦିଗରେ ପ୍ରବାହିତ ହେଲା । ଶୁଖିଲା ଗଛରେ ପତ୍ର କଅଁଳିଲା, ପାଷାଣ ଦ୍ରବୀଭୂତ ହେଲା । ଆକାଶରେ ଉଡ଼ନ୍ତା ପକ୍ଷୀ ସ୍ଥିର ହୋଇଗଲେ, ମାଛ-ମାନେ ଗଭୀର ଜଳରୁ ଉନ୍ମତ୍ତ ଭାବରେ ଲମ୍ଫ ଦେଇ କୂଳରେ ପଡ଼ିଲେ । ପଶୁମାନେ ମୁଖରେ ଆହାର ଧରି ଊର୍ଦ୍ଧ୍ୱ ମୁଖରେ ରହିଲେ । ବ୍ରହ୍ମା ବେଦ ଅଧ୍ୟୟନ କରିବାକୁ ଭୁଲିଗଲେ । ନବ କିଶୋରୀ ରାଧାଙ୍କର ଚନ୍ତାର ମେଘ ଅପସରି ଗଲା । ତାଙ୍କର ବିରହ ଦୁଃଖ ଦୂର ହେଲା । ସେ କାଚପୁରରେ ରତ୍ନପଲଙ୍କରେ ତନ୍ଦ୍ରାଭିଭୂତ ହୋଇ-ପଡ଼ିଥିଲେ । ବଂଶୀର ମଧୁର ଆଳାପ ଧ୍ୱନି ଶୁଣି ରାଧା ସ୍ୱପ୍ନରୁ ଚମକିଲା ପରି ଉଠି ପଡ଼ିଲେ । ଶ୍ରୀକୃଷ୍ଣ ଯିବା ଦିନରୁ ଏପରି ବଂଶୀ ଧ୍ୱନି ଶୁଣା ନ ଥିଲା । କୌଣସି ବ୍ରଜ କୁମାର ପକ୍ଷରେ ଏହାର କୋଟି ଭାଗରୁ ଭାଗେ ମଧ୍ୟ ବଜାଇବା ସମ୍ଭବ ନୁହେଁ । ତାହାଛଡ଼ା, ଏହି ମଧୁର ଚନ୍ଦ୍ରକିତ ରଜନୀରେ ଯମୁନା ତଟରେ କାହା ଲାଗି କିଏ କାହିଁକି ବଂଶୀ ବଜାଇବ । ବୋଧହୁଏ ପାର୍ବତୀଙ୍କର ଆଶ୍ୱାସନା ବାଣୀ ସତ୍ୟରେ ପରିଣତ ହେଲା । ଏକଥା ଭାବୁ ଭାବୁ ବଂଶୀ "ରାଧା, ରାଧା" ବୋଲି ଡାକ ଦେଲା । ଶ୍ରୀରାଧା ଅସମ୍ଭାଳ କେଶବାସରେ କଦମ୍ବ ମୂଳକୁ ଧାଇଁଲେ । ଦିବ୍ୟ ମୂର୍ତ୍ତି, ଗୋପୀ-ନାଥଙ୍କୁ ଦେଖି ଶ୍ରୀରାଧା ଲଜ୍ଜାରେ ମଥା ପୋତିଲେ । ଶ୍ରୀକୃଷ୍ଣ ବଂଶୀକୁ ଫିଙ୍ଗିଦେଇ ଶ୍ରୀରାଧାଙ୍କୁ ନିବିଡ଼ ଭାବରେ ଆଲିଙ୍ଗନ କଲେ । ମାନିନୀ ରାଧା ଶ୍ରୀକୃଷ୍ଣଙ୍କୁ ସକଳ ସର୍ବନାଶର କାରଣ ରୂପେ ଦାୟୀକରି ଅଭିମାନରେ କାତରପ୍ରାଣରେ କାନ୍ଦି ଉଠିଲେ । ମୁରାରି ପରମ ସମାଦରରେ ଶ୍ରୀରାଧାଙ୍କର ଲୋତକ ପୋଛିଦେଇ ତାଙ୍କୁ ସନ୍ତୁଷ୍ଟ କରି ନିଜର ଦୟନୀୟ ଅବସ୍ଥା ବର୍ଣ୍ଣନା କଲେ । ଚତୁରୀ ରାଧିକା କହିଲେ, ଯେଉଁ ବ୍ୟକ୍ତି ମାମୁଙ୍କୁ ମାରି ମାଇଁଙ୍କୁ ଧରି କାନ୍ଦି ନିଜର ସକଳ ଅପରାଧ କ୍ଷାଳନ

କରିପାରେ ସେ କପଟୀ ପୁରୁଷ । ଯାହାକୁ କୋଟି କୋଟି ରାଜକେମା ସେବା କରୁଛନ୍ତି ସେ ପୁଣି ନରମାଣୀ ରାଧାକୁ ଝୁରି ହୁଏ ! ଶଚୀଇନ୍ଦ୍ର ପରି ରାଧା କୃଷ୍ଣଙ୍କ ସମ୍ବନ୍ଧ କାଳ କାଳକୁ ସତ୍ୟ ବୋଲି ଶ୍ରୀକୃଷ୍ଣ ଉତ୍ତର ଦେଲେ । ଏହି ମିଳନ କ୍ଷଣିକ ମନେକରି ରାଧା ଉଦ୍‌ବିଗ୍ନ ହୋଇଛନ୍ତି । ଶ୍ରୀକୃଷ୍ଣ ଏହି ରାଜନୀତିକୁ କପଟର ଫାନ୍ଦ କରିଛନ୍ତି ସେ କଥା କହିବାରୁ ରାଧା ଆନନ୍ଦରେ ଉନ୍ମତ୍ତ ହୋଇ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କଲେ । ରାଧାକୃଷ୍ଣ ମିଳନର ମହା ଉଲ୍ଲାସରେ ପରମନ୍ଥତା ଲାଭ କଲେ ।

**ଷୋଡ଼ଶ ଛାନ୍ଦ** :—ଏହି ଛାନ୍ଦରେ ଶ୍ରୀରାଧା ଓ ଗୋପାଙ୍ଗନାଙ୍କ ସହିତ ଶ୍ରୀକୃଷ୍ଣଙ୍କର ମହାରାସ କ୍ରୀଡ଼ା ବର୍ଣ୍ଣିତ । ଦିବ୍ୟ ଅଷ୍ଟ ସହସ୍ର ଅଷ୍ଟଶତ ଯୁବତୀ, ଏକ ସହସ୍ର ଶ୍ରୁତିସ୍ୱରୂପୀ ଗୁଣିଶ ସହସ୍ର ଗୋପାଙ୍ଗନା ବତିଶ ସହସ୍ର ଲକ୍ଷ ସାଧବୀ ବାଳୀଶ, ଛତିଶ ସହସ୍ର ପ୍ରସନ୍ନା ନାରୀ, ଅଠାଶି ସହସ୍ର ନବାନୁରାଗା ସିଙ୍ଗାରୀ—ପ୍ରତ୍ୟେକେ ରାସକ୍ରୀଡ଼ା ପାଇଁ ନିଜନିଜ ବାଦ୍ୟଯନ୍ତ୍ରରେ ପରିଶୋଭିତା ହୋଇ ଆସିଲେ । ବଂଶୀସ୍ୱନ ଶୁଣି ସମସ୍ତେ ଉନ୍ମତ୍ତ ହେଲେ । ଶ୍ରୀକୃଷ୍ଣଙ୍କର ଗୋଟିଏ ମୁଖ ସବୁ ଗୋପୀଙ୍କର ସୁଖର ନିଦାନ ସ୍ୱରୂପ । ସେହି ମୁଖ ବହୁକାଳର ବିରହ ଦୁଃଖ ହରଣ କଲା । ସଖୀମାନେ ନିଜ ନିଜ ମଣ୍ଡଳରେ ବେଶଭୂଷା ହୋଇ ରହିଲେ । କଦମ୍ବମୂଳରେ କନକର କଳରେ ଶ୍ରୀକୃଷ୍ଣ କୋଟି ସୂର୍ଯ୍ୟର ଜ୍ୟୋତି ବିକାଶି କରି ପଦ୍‌କେଶର ପଲଙ୍କରେ ବିରାଜମାନ କଲେ । ଶ୍ରୀରାଧାଙ୍କ ସହିତ ଦୂତିକା ଅତ୍ୟନ୍ତ ଆନନ୍ଦରେ କର୍ପୂର ଚନ୍ଦନ ଓ ବିଭିନ୍ନ ବେଶଭୂଷାରେ ସଜ୍ଜିତ କଲେ ।

**ସପ୍ତଦଶ ଛାନ୍ଦ** :—ଶ୍ରୀରାଧାଙ୍କର ଉଜ୍ଜ୍ୱଳ ଜ୍ୟୋତିର୍ମୟୀ ମୂର୍ତ୍ତି ଦେଖି ଅଷ୍ଟପାଟବଂଶୀ ମୂର୍ଚ୍ଛିତା ହୋଇପଡ଼ିଲେ । ମୋହ ଭଙ୍ଗ ହେବାରୁ ସେମାନେ ଧୈର୍ଯ୍ୟଧରି ଦିବ୍ୟ ଚେତନା ଲାଭ କରିବା ପାଇଁ ଶ୍ରୀକୃଷ୍ଣଙ୍କଠାରେ ପ୍ରାର୍ଥନା କଲେ । ମନ ଦୃଢ଼ ହେଲେ ସ୍ଥିରଦୃଷ୍ଟିରେ ସର୍ବଶ୍ରୀବଲ୍ଲଭା ଦର୍ଶନ ସହଜ ହେବ । ଶ୍ରୀରାଧାଙ୍କର ଦିବ୍ୟକାନ୍ତିକୁ ଧ୍ୟାନ କଲେ ମନ ମୋହମୁକ୍ତ ହେବ । ରୁକ୍ମିଣୀ ପ୍ରମୁଖ ଅଷ୍ଟପାଟବଂଶୀ ଗରୁଡ଼ପୃଷ୍ଠରୁ ବୃଷଭାନୁ ଜେମା ଶ୍ରୀରାଧାଙ୍କର ଅଲୌକିକ ଅନବଦ୍ୟ ସୌନ୍ଦର୍ଯ୍ୟ ଦର୍ଶନ କରି ନିଜ ନିଜ ଜୀବନକୁ ଧନ୍ୟ ମନେକଲେ । ଗରୁଡ଼ଙ୍କର ଛତ୍ରକୁ ସହ୍ୟ କରିଥିବା କଦମ୍ବବୃକ୍ଷ ମଧ୍ୟ ଧନ୍ୟ, କାମନା ପୂରଣକାରୀ କାଳିନ୍ଦୀ ନଦୀ ମଧ୍ୟ ଧନ୍ୟ, ବୃନ୍ଦାବନର ଫୁଲ, ଫଳ, ଶୀତଳ ସୁଗନ୍ଧ ଜଳ, ମନ୍ଦ ମଳୟ, ପର୍ବତ କାନ୍ତାର ପ୍ରତ୍ୟେକେ ଧନ୍ୟ । ଶ୍ରୀରାଧାଙ୍କ ପରିଜନଗଣଭକ୍ତ ହୋଇ ରହିବା ଶ୍ରେୟସ୍କର । ଦ୍ୱାରକାପୁର ପ୍ରତ୍ୟାବର୍ତ୍ତନରେ ଆଗ୍ରହର ଅଭାବ । ଶ୍ରୀରାଧାଙ୍କ ସନ୍ନିଧାନରେ ଶ୍ରୀକୃଷ୍ଣଙ୍କର ରୂପକାନ୍ତି ଝଟକି ଉଠିଛି । ତେବେ କବିଙ୍କ ଦୃଷ୍ଟିରେ ଶ୍ରୀରାଧା ଓ ରୁକ୍ମିଣୀ ଏକ, ଅଭିନ୍ନ, ସମଭାବାପନ୍ନ ।

ଅଷ୍ଟାଦଶ ଛାନ୍ଦ :—ଗୋପୀମାନଙ୍କର ପୁଷ୍ପବନରୁ ବିବିଧ ବର୍ଣ୍ଣର ପୁଷ୍ପଚୟନର ବିଭିନ୍ନ ଭଙ୍ଗୀ କଳାପ ଓ ସାଜସଜ୍ଜାର ଭଙ୍ଗୀ, ଠାଣି ଦେଖି ଦ୍ୱାରକାଯୁବତୀଙ୍କ ଚର୍ମଚକ୍ଷୁ ସାର୍ଥକ ହୋଇଛି । ପୁଷ୍ପସଜ୍ଜାରେ ସୁଶୋଭିତ ହୋଇ ଗୋପାଙ୍ଗନାମାନେ ନିଜ ନିଜ ନାୟକଙ୍କୁ ପୁଷ୍ପମଣ୍ଡିତ କଲେ । ପୁଷ୍ପ ଆଭରଣରେ ଅଙ୍ଗମଣ୍ଡନ କରି ଶ୍ରୀକୃଷ୍ଣଙ୍କୁ ସେମାନେ ପୁଷ୍ପମାଳାରେ ଭୂଷିତ କଲେ । ଏହିପରି ବିବିଧ ହାସ ପରିହାସରେ ମହାଆନନ୍ଦ ଲଭ କଲେ ।

ଊନବିଂଶ ଛାନ୍ଦ :—ଏହି ଛାନ୍ଦରେ କେଳି କଦମ୍ବ ମୂଳରେ ନୃତ୍ୟ, ଗୀତ, ବାଦ୍ୟ ସହକାରେ ମହାରାସକ୍ରୀଡ଼ା ବର୍ଣ୍ଣିତ । ମୋହନ ବଂଶୀଧାରୀ ନଟବର ନାଗର ଶ୍ରୀକୃଷ୍ଣ ମଧ୍ୟରେ ବିରାଜିତ । ନୃତ୍ୟ, ଗୀତ, ବାଦ୍ୟ ନାଦରେ ତ୍ରିଭୁବନ ପ୍ରକମ୍ପିତ । ବୃନ୍ଦାବନର ବୃକ୍ଷଲତା, ଆକାଶ ବତାସ ନିନାଦିତ । ଯେତେଜଣ ଗୋପୀ ସେତେଜଣ ଶ୍ରୀକୃଷ୍ଣ—ଏକରୁ ଅନେକ ମୂର୍ତ୍ତିରେ କୃଷ୍ଣଲୀଳା ବ୍ୟାପ୍ତ; ପୁଣି ପ୍ରତ୍ୟେକଙ୍କୁ ପରିତୃପ୍ତ କରି ଅନେକ ଏକ ମୂର୍ତ୍ତିରେ ପର୍ଯ୍ୟବସିତ । କୁଞ୍ଜକୁଟୀରର ଅଗ୍ନିକୋଣରେ ବିହାର କରୁଥିବା ରାଧାକୃଷ୍ଣଙ୍କର ରାସକ୍ରୀଡ଼ାକୁ ଦ୍ୱାରକା ନାରୀଙ୍କ ଦୃଷ୍ଟି ଅନ୍ତରାଳବର୍ତ୍ତୀ କରିବା ଅଭିପ୍ରାୟରେ ଗରୁଡ଼ ଫାଙ୍କକୁ ରୋଧି ଦେଲା । ଶ୍ରୀକୃଷ୍ଣଙ୍କର ବିବିଧ ବିନୋଦନର ବିଳାସ କାନ୍ତି ଏହିପରି ବର୍ଣ୍ଣିତ ।

ବିଂଶ ଛାନ୍ଦ :—ଶ୍ରୀରାଧା ଓ ଗୋପାଙ୍ଗନାଙ୍କ ସହିତ ରାସକ୍ରୀଡ଼ା ଶେଷରେ ନାନାବିଧ ପରିଚର୍ଯ୍ୟା ଗ୍ରହଣ କରି ଶ୍ରୀକୃଷ୍ଣ ଦ୍ୱାରକା ପ୍ରତ୍ୟାବର୍ତ୍ତନର ଅଭିଳାଷ ଜଣାଇଛନ୍ତି । ଅସୁର ନିଧନ ପରେ ଅବନୀର ବ୍ୟଥା ଦୂରକରି ସେ ସ୍ୱପୁରକୁ ବାହୁଡ଼ିବେ । ତାଙ୍କର ଅତିପ୍ରିୟ ମୋହନବଂଶୀ, ଯାହା ଚୌର୍ଯ୍ୟକାର୍ଯ୍ୟ ନିର୍ବାହରେ ଏକାନ୍ତ ଧୂରନ୍ଧର, ତାହାକୁ ଶ୍ରୀରାଧାଙ୍କୁ ଅର୍ପଣ କରି ଦ୍ୱାରକାଯାତ୍ରା କରିବାକୁ ଶ୍ରୀକୃଷ୍ଣ ମନବଳାଇଲେ । ସେ ଦ୍ୱାରକାରେ କିପରି ଶ୍ରୀରାଧା ଓ ଗୋପାଙ୍ଗନାଙ୍କ କଥା ଭାବି ଭାବି କ୍ଷୀଣତନୁ ହେଲେ ଓ ଶେଷରେ ରୁକ୍ମିଣୀ ପ୍ରଭୃତି କିପରି ରାଧା-ଦର୍ଶନ ଉଦ୍ଦେଶ୍ୟରେ ବୃନ୍ଦାବନକୁ ଆସିଲେ ସେ ବିଷୟ ବର୍ଣ୍ଣନା କଲେ । ଶ୍ରୀରାଧା ସେମାନଙ୍କୁ ଦେଖିବାକୁ ଇଚ୍ଛା ପ୍ରକାଶ କରନ୍ତେ ଗରୁଡ଼ ଚାଲକୁ ଆସି ଶ୍ରୀରାଧାଙ୍କୁ ପ୍ରଣାମ କଲେ । ଦ୍ୱାରକାନାରୀମାନେ ଦୂରରୁ ପ୍ରଣତି ଜଣାଇଲେ । ଶ୍ରୀରାଧା ସେମାନଙ୍କୁ ଅତି ଆଦରରେ ଗ୍ରହଣ କରି ଶ୍ରୀକୃଷ୍ଣଙ୍କ ମନରେ ସାମାନ୍ୟତମ କଷ୍ଟ ନଦେବା ପାଇଁ ମିନତି କଲେ । ରୁକ୍ମିଣୀ ଶ୍ରୀରାଧାଙ୍କର ଶ୍ରେଷ୍ଠତ୍ୱ ସ୍ୱୀକାର କରି ନିଜକୁ ତାଙ୍କର ସେବାଦାସୀ ବୋଲି ଜ୍ଞାନ କଲେ । କବିଙ୍କ ଭାଷାରେ—

"ତୁମ୍ଭେ ଠାକୁରାଣୀ ମଣେ ବଡ଼
ଆମ୍ଭେମାନେ ଭବବୁଙ୍କି ଜଡ଼

ତୁମ୍ଭ ପ୍ରଭୁଭାବ ଆମ୍ଭେ କି ଜାଣିମୁ
ଆମ୍ଭ ହୃଦୟ ନୋହଇ ଦଢ଼, ଗୋ ଈଶ୍ୱର ।"

ଅନ୍ତରରେ ବେଦନା ବାହ୍ୟତଃ ଆନନ୍ଦମନା ହୋଇ ଶ୍ରୀରାଧା ବ୍ରଜନାରୀଙ୍କ ସହିତ ରୁକ୍ମିଣୀ ପ୍ରଭୃତିଙ୍କୁ ବଳାଇଦେବାକୁ ଆସିଲେ । ଗରୁଡ଼ଙ୍କର ତପସ୍ୟାର ଫଳ ସ୍ୱରୂପ ସେ ଶ୍ରୀକୃଷ୍ଣଙ୍କର ପରମ ବିଶ୍ୱାସୀ ବାହନ ହୋଇପାରିଛନ୍ତି, ଯେପରି ହନୁମାନ ହୋଇଥିଲେ ଶ୍ରୀରାମଚନ୍ଦ୍ରଙ୍କର ଭକ୍ତ । ଗରୁଡ଼ଙ୍କର ରୂପଗୁଣ ବଖାଣି ଶ୍ରଦ୍ଧାରେ ତାଙ୍କୁ ପୁଷ୍ପମାଳାରେ ଗୋପୀମାନେ ଭୂଷିତ କଲେ । ଗରୁଡ଼ ମଧ୍ୟ ବୁଝି-ପାରିଲେ ଯେ ଗୋପୀଙ୍କୁ ତ୍ୟାଗ କରି ଯିବା ଶ୍ରୀକୃଷ୍ଣଙ୍କ ପକ୍ଷରେ ଦୁଃସହ ଯନ୍ତ୍ରଣା । ଶ୍ରୀରାଧାଙ୍କଠାରୁ ବିଦାୟ ନେଇ ଶ୍ରୀକୃଷ୍ଣ ମୁହୂର୍ତ୍ତିକରେ ରୁକ୍ମିଣୀ ପ୍ରଭୃତି ଅଷ୍ଟପାଟ-ରାଣୀଙ୍କ ସହ ରଥ ନ ପାହୁଣୁ ଦ୍ୱାରକାରେ ପହୁଞ୍ଚିଲେ ।

ଏକବିଂଶ ଛାନ୍ଦ :—ଏହି ଛାନ୍ଦରେ ରୁକ୍ମିଣୀଙ୍କର ଅଭିମାନର କଥା କୁହାଯାଇଅଛି । କେତେ ଦିନ ପରେ ରାତିରେ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ ମନ୍ଦିରରେ ପ୍ରବେଶ କରି ଦେଖିଛନ୍ତି ଯେ ସୁବର୍ଣ୍ଣ ପଲଙ୍କରେ ବିରସ ବଦନରେ ରୁକ୍ମିଣୀ ଶାୟିତା । ଶ୍ରୀକୃଷ୍ଣ ତାଙ୍କ ଗାତ୍ର ସ୍ପର୍ଶ କରିବାରୁ ଅଭିମାନରେ ସ୍ଫୁରିତା ରୁକ୍ମିଣୀ କହିଲେ—ଆମେ ତମର ଅଯୋଗ୍ୟ, ଆମେ ମହାପାପୀ । ଆମର ଅଙ୍ଗ ସ୍ପର୍ଶ-କରିବା ତୁମ ପକ୍ଷରେ ଉଚିତ ନୁହେଁ । ଆମର ପୂର୍ବ ଜନ୍ମର ତପଫଳ ନାହିଁ, ଆମେ ନୀଚ, ହୀନ—ଯୋଗ୍ୟକୁ ତ୍ୟାଗ କରି ଅଯୋଗ୍ୟରେ ଅଭିଳାଷ ଉଚିତ ବ୍ୟବହାର ନୁହେଁ । ପୁଣ୍ୟବାନ ସହିତ ପୁଣ୍ୟବାନର ମିଳନ ହୁଏ । ପାପ ସହିତ ପୁଣ୍ୟ ମିଶେ ନାହିଁ । ଉପରନ୍ତୁ ପାପର ସଂସ୍ପର୍ଶରେ ଆସିଲେ ପୁଣ୍ୟ କ୍ଷୟ ହୁଏ, କୀର୍ତ୍ତି ନଷ୍ଟ ହୁଏ । ଆମେ ନ ଜାଣି ତୁମକୁ ଆପଣାର ବୋଲି ଭାବିଥିଲୁ । ତୁମେ ଉପରୋଧରେ ଆମକୁ ଗ୍ରହଣ କରିଥିଲ । ଆମେ ଆମର ସୀମାରକ୍ଷା ନ କରିବାରୁ ସାନ ହୋଇ ବଡ଼ ହେବାକୁ ଆକାଙ୍କ୍ଷା ପୋଷଣ କରିବାରୁ ତୁମେ ଆମର ଅପରାଧ ଦେଖି ଉଚିତ ଶାସ୍ତି ଦେଲ । ଏକଥା କହିବା ପରେ ଶୋକାଧିକ୍ୟରୁ ଆଉ ତାଙ୍କର ବଚନ ସ୍ଫୁରିଲା ନାହିଁ । ଶ୍ରୀକୃଷ୍ଣ ଶୋକଜର୍ଜରିତ ଅଶ୍ରୁଆପ୍ଳୁତା ରୁକ୍ମିଣୀଙ୍କୁ ପ୍ରବୋଧନା ଦେଲେ,

"ତୁମ୍ଭେ ସର୍ବ ବ୍ରହ୍ମାଣ୍ଡ ମଣ୍ଡନା
ତ୍ରିଭୁବନ ଜନମନ ଆନନ୍ଦଦାୟିନୀ ଗୋ
ସର୍ବଦୁଃଖ ଦାରିଦ୍ର୍ୟଖଣ୍ଡନା ।"

ରୁକ୍ମିଣୀଙ୍କୁ ନାରାୟଣୀ, ବ୍ରହ୍ମାଣୀ ଓ ରୁଦ୍ରାଣୀ ରୂପେ ବର୍ଣ୍ଣନା କରି ଶ୍ରୀକୃଷ୍ଣ ତାଙ୍କୁ ତ୍ରିପୁରେଶ୍ୱରୀଙ୍କର ଗୌରବ ଦାନ କରିଛନ୍ତି । ରାଧା, କୃଷ୍ଣ ଓ ରୁକ୍ମିଣୀଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ରୁକ୍ମିଣୀ, ରତି, ରାଧା ପ୍ରୀତି ଓ ଶ୍ରୀକୃଷ୍ଣ ନିଜକୁ ଶ୍ରୁତିରୂପେ ବ୍ୟାଖ୍ୟା କରିଛନ୍ତି । ଶ୍ରୁତିରୁ ପ୍ରୀତିର ଜନ୍ମ, ପ୍ରୀତିରୁ ରତି ଜାତ ଓ ରତି ସର୍ବ ଆନନ୍ଦର ମୂଳ ବସ୍ତୁ । ଜୀବ, ପରମ, ପ୍ରକୃତି ଏକ ଦେହରେ ଅବସ୍ଥାନ କରେ । କେବଳ ଲୀଳା ପାଇଁ ଭିନ୍ନ ଭିନ୍ନ ରୂପ ଜନ୍ମ ନିଏ । ରୁକ୍ମିଣୀ ମୋହ ଅନ୍ଧକାରଗ୍ରସ୍ତ ହେବାରୁ ନିଜର ସ୍ୱରୂପ ଜାଣିପାରି ନାହାନ୍ତି । ରୁକ୍ମିଣୀ ବିନୀତ ଭାବରେ କହିଲେ,—ତୁମେ ଅଜ୍ଞାନର ଜ୍ଞାନ, ଅଚେତନର ଚେତନମୟ ପୁରୁଷ । ତୁମେ ମୋତେ ଯେପରି ଭାବରେ ବର୍ଣ୍ଣନା କରୁଅଛ, ମୁଁ ଆଦୌ ସେପରି ନୁହେଁ । ତେବେ ଆମର ଅଭିନ୍ନତାର ପ୍ରମାଣ ସ୍ୱରୂପ ମୂଳସ୍ଥାନକୁ ଦେଖାଇ ଦିଅ । ଶ୍ରୀକୃଷ୍ଣ କହିଲେ ଯେ ସେ ପଥ ପରମ ପ୍ରେମଧାମ; କିନ୍ତୁ ଦୁର୍ଗମ । ବିନା ସିଦ୍ଧିରେ ଓ ତ୍ରିପୁରସୁନ୍ଦରୀଙ୍କ ସହାୟତା ବ୍ୟତୀତ ସେ ସ୍ଥାନରେ ପ୍ରବେଶ କରିବା ସମ୍ଭବ ନୁହେଁ । ତଥାପି ତୁମେ ଯଦି ମନକୁ ଦୃଢ଼ କରିଥାଅ ତେବେ ନିଶ୍ଚୟ ସେ ସ୍ଥାନକୁ ଯିବା— ପହଞ୍ଚିବା ସମ୍ଭବ ହୋଇପାରେ ନ ହୋଇ ବି ପାରେ । ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ମନର କ୍ଷୋଭ ପରିହାର କରି ଆନନ୍ଦରେ ପ୍ରମତ୍ତ ହେବାକୁ ଉତ୍ସାହ ଦେଲେ ।

ଦ୍ୱାବିଂଶ ଛାନ୍ଦ :—ଏହି ଛାନ୍ଦରେ ଜଗନ୍ମାତା ରୁକ୍ମିଣୀଙ୍କ ସହିତ ଜଗତ ପତି ଶ୍ରୀକୃଷ୍ଣଙ୍କ ଗରୁଡ଼ ପୃଷ୍ଠରେ ପରମଧାମ ଉଦ୍ଦେଶ୍ୟରେ ଯାତ୍ରା କରିବା ପ୍ରସଙ୍ଗ ବର୍ଣ୍ଣିତ । ସେମାନେ ଗୋଟିଏ ଗୋଟିଏ ପୁର ଅତିକ୍ରମ କରିଗଲେ । ପ୍ରଥମେ ବ୍ରହ୍ମାଣ୍ଡର ଅଣ୍ଡକଟାହ, ଜଳମୟପୁର, ଅନଳମୟପୁର ଆଦି ବର୍ଣ୍ଣିତ । ଅନଳମୟ ଭୁବନରେ ଜଳନ୍ତା ଅଗ୍ନିରେ ପଶି ଗରୁଡ଼ ଅଗ୍ରସର ହେଲେ । ତତ୍ପରେ ଶୂନ୍ୟ ଅନ୍ଧକାର ଭୁବନ ଅଭିମୁଖେ ଗଲେ । ଶ୍ରୀକୃଷ୍ଣ କୋଟି ସୂର୍ଯ୍ୟ ତେଜପ୍ରଭ ସୁଦର୍ଶନଙ୍କୁ ନିକ୍ଷେପ କଲେ । ଚକ୍ରର ତେଜ ଲକ୍ଷ୍ୟ କରି ଗରୁଡ଼ ଅନ୍ଧକାର ଶୂନ୍ୟମଣ୍ଡଳ ଅତିକ୍ରମ କଲେ । ମନ୍ମୟପୁରରେ ପ୍ରବେଶ କରି ବୁଦ୍ଧିକୁ ଲଙ୍ଘନ କରି ଅହଙ୍କାରମୟ ପୁର ଅତିକ୍ରମ କରି ପ୍ରକୃତିମଣ୍ଡଳରେ ପହଞ୍ଚିଲେ । ସେଠାରେ ଅର୍ଦ୍ଧମାତ୍ରାଙ୍କ ସହ ସାକ୍ଷାତ ହେଲା । ଶଙ୍ଖ, ଚକ୍ର, ଗଦା, ପଦ୍ମ ଶୋଭିନୀ ଆଦିମାତା ଦୁର୍ଗାଙ୍କୁ ଦେଖାଇ ଶ୍ରୀକୃଷ୍ଣ କହିଲେ ଯେ ତାଙ୍କର କଳାରେ ବିଷ୍ଣୁପ୍ରିୟା ରୁକ୍ମିଣୀଙ୍କର ଜନ୍ମ । ତତ୍ପରେ ସେମାନେ ବେଦମାତାଙ୍କ ଭୁବନ ଉଦ୍ଦେଶ୍ୟରେ ଗଲେ । ସେଠାରୁ ଶିବ ମନ୍ଦିର ଦେଇ ବିଭୂତି ମଣ୍ଡଳ, ବଶିକେଶନ ଭୁବନ, ଅନନ୍ତ ଭୁବନ, ଗରୁଡ଼ ଭୁବନ ଲଙ୍ଘନ କରି ବୈକୁଣ୍ଠ ପୁରରେ ଉପନୀତ ହେଲେ । ଚଣ୍ଡ ପ୍ରଚଣ୍ଡ ପ୍ରଭୁଙ୍କୁ ଦେଖି ବାଟ ଛାଡ଼ିଦେଲେ । ଶଙ୍ଖ, ଚକ୍ର, ଗଦା, ପଦ୍ମ ଶୋଭିତ ବିଷ୍ଣୁଙ୍କୁ ଦର୍ଶନ କଲେ ।

ବତିଶ ଦଳରେ ବତିଶ ଅବତାର । ଜାହାର ମହିମା ଜାହାଠାରୁ କମ୍ ନୁହେଁ । ଦଶ ପଥରେ ପ୍ରବେଶ ହୋଇ ଦେଖିଲେ ଯେ ସେଠାରେ ପାର୍ଶ୍ଵ ଦେବତାଗଣ ବିରାଜିତ । ଉଦ୍ଧବ ଅକ୍ରୂରଙ୍କର ତାହା ମୂଳସ୍ଥାନ । ତାପରେ ଦ୍ୱାରକାକୁ ଦେଖାଇ ଶ୍ରୀକୃଷ୍ଣ କହିଲେ,—ଏହିସ୍ଥାନ ତୁମର ଆଉ ମୋର ଆଦି ନିବାସସ୍ଥଳୀ । ଅଷ୍ଟପାଟ-ରାଣୀ ପ୍ରଭୃତି ସମସ୍ତ ନାରୀ ଯେ ଯାହା ସ୍ଥାନରେ ରହିଛନ୍ତି । ପୂର୍ବରେ ଶ୍ରୀକୃଷ୍ଣଙ୍କ ପୁର, ଦକ୍ଷିଣରେ ବଳରାମଙ୍କର ପୁର, ପଶ୍ଚିମରେ ପ୍ରଦ୍ୟୁମ୍ନ, ଉତ୍ତରରେ ଉଷା ଅନିରୁଦ୍ଧଙ୍କ ପୁର । ତାପରେ ଗୋପନଗର, ନନ୍ଦପୁର, ବୃଷଭାନୁ ମନ୍ଦିର, ଯମୁନା ତୀର, କାଳିନ୍ଦୀ ହ୍ରଦ, ଅଷ୍ଟଦଳ ମଧ୍ୟରେ କଦମ୍ବ ବୃକ୍ଷ, ଅଷ୍ଟବିଧ ନାୟିକା ରୂପ ରାଧାକୃଷ୍ଣଙ୍କର କେଳି କ୍ରୀଡ଼ା ସଦନ, ଅଷ୍ଟଦଳ ରାସର ଦ୍ୱାରଦେଶରେ ଗୋପେଶ୍ୱର ମହାଦେବ ଦ୍ୱାରପାଳ ରୂପେ ବିରାଜିତ । ରୁକ୍ମଣୀ ଏହି ଅନନ୍ତ ମାୟାର ଅନ୍ତ ନ ପାଇ ନିତ୍ୟସ୍ଥଳ, ନିତ୍ୟରାଧା, ନିତ୍ୟକୃଷ୍ଣ, ଆଦିରୁକ୍ମଣୀ ଓ ଆଦି-ବାସୁଦେବଙ୍କ ସମ୍ବନ୍ଧରେ ଜାଣିବାକୁ ଇଚ୍ଛା କଲେ । ଶ୍ରୀକୃଷ୍ଣ ରୁକ୍ମଣୀଙ୍କୁ ସାଧୁବାଦ ଦେଇ ଯମୁନା ତୀରରେ ପ୍ରବେଶ ହେଲେ । ସେଠାରେ ମହାଭୟଙ୍କର ବିକଟ ଦର୍ଶନ କାଳମାୟାଙ୍କୁ ଦେଖି ରୁକ୍ମଣୀ ଭୟଭୀତ ହେଲେ । ଶ୍ରୀକୃଷ୍ଣଙ୍କୁ ଦେଖି ବୈଷ୍ଣବମୂର୍ତ୍ତି ଧାରଣ କରି କାଳମାୟା ପଥ ଛାଡ଼ିଦେଲେ । ଗରୁଡ଼ ଅକ୍ଷୟବଟ ନିକଟରେ ପହଞ୍ଚିଲେ । ପଶ୍ଚିମ ଦ୍ୱାରରେ ପାରିଜାତ ମୂଳରେ ଆଦିଦ୍ୱାରକା ଅବସ୍ଥିତ । ଆଦିବାସୁଦେବଙ୍କର ତାହା ମୂଳ ପୀଠ; ରାଧା, ଗୋପୀ ଓ କିଶୋର ଚନ୍ଦ୍ରଙ୍କ ନିତ୍ୟ ବିହାର ସ୍ଥଳ ।

ତ୍ରୟୋବିଂଶ ଛାନ୍ଦ :—ରୁକ୍ମଣୀ ଶ୍ରୀକୃଷ୍ଣଙ୍କ ଶେଷ କଥାରେ ଅତ୍ୟନ୍ତ ଅଭିମାନୀ ହୋଇପଡ଼ିଲେ । ଶ୍ରୀକୃଷ୍ଣ ଅନିତ୍ୟ ମର୍ତ୍ତ୍ୟର ଲୀଳା ଶେଷରେ ଏହି ନିତ୍ୟ ବିହାର ସ୍ଥଳୀକୁ ଫେରି ଆସିବେ । ନିତ୍ୟ ସ୍ଥଳରେ କେବଳ ଗୋପୀ, କୃଷ୍ଣ, ରାଧା— ସେଠାରେ ବାସୁଦେବଙ୍କ ମୂର୍ତ୍ତି ନାହିଁ । ତେଣୁ ସେଠାରେ ରୁକ୍ମଣୀଙ୍କର ମଧ୍ଯ ପ୍ରବେଶ ନାହିଁ । ରୁକ୍ମଣୀ କେବଳ କ୍ଷଣିକ ସଙ୍ଗିନୀ—ନିତ୍ୟ ସଙ୍ଗିନୀ ନୁହନ୍ତି; କିନ୍ତୁ ଶ୍ରୀକୃଷ୍ଣ ମର୍ତ୍ତ୍ୟ ବିଳାସିନୀ ରୁକ୍ମଣୀଙ୍କୁ କାହା ହାତରେ ସମର୍ପଣ କରିବେ । ଶ୍ରୀକୃଷ୍ଣ ସମସ୍ତଙ୍କର ସଖା, ମାତ୍ର ଲୀଳା ଶେଷରେ ସମସ୍ତଙ୍କୁ ସେ ତ୍ୟାଗ କରନ୍ତି ।

ଶ୍ରୀକୃଷ୍ଣ ରୁକ୍ମଣୀଙ୍କର ସକଳ ଅଭିଯୋଗ ଅସ୍ୱୀକାର କରି ସେ ହିଁ ତାଙ୍କର ଚିରକାଳର ପ୍ରାଣପତି ବୋଲି କହୁ କହୁ ଗୋଲକ ମଣ୍ଡଳରେ ତ୍ରିପୁରେଶ୍ୱରୀଙ୍କ ନିକଟରେ ପହଞ୍ଚିଲେ । ଦୂରରୁ ଗରୁଡ଼ ପୃଷ୍ଠରୁ ଅବତରଣ କରି ରୁକ୍ମଣୀଙ୍କ ସହ ଶ୍ରୀକୃଷ୍ଣ ନିତ୍ୟତତ୍ତ୍ୱକାରିଣୀଙ୍କୁ ଭକ୍ତି ନିବେଦନ କଲେ ଓ ରାଧା ଦର୍ଶନ ଅଭିଳାଷରେ

ତାଙ୍କର ପ୍ରାଣପ୍ରିୟା ପତ୍ନୀ ମତ ବଳାଇଛନ୍ତି ବୋଲି ଜଣାଇଲେ । ତ୍ରିପୁରା କହିଲେ— କୋଟି ବୈକୁଣ୍ଠରେ କୋଟିଏ ଲକ୍ଷ୍ମୀ, କୋଟି ବ୍ରହ୍ମାଣ୍ଡରେ କୋଟିଏ ରୁକ୍ମିଣୀ— ମାତ୍ର ନିତ୍ୟରାଧା ଏକ । ତାଙ୍କ ଦର୍ଶନ କରିବାକୁ ହେଲେ ଗୁରୁ ସେବା କରି କୃପା ଲାଭ କରିବାକୁ ପଡ଼ିବ । ତା ନ ହେଲେ ରାଧାଦର୍ଶନ ଅସମ୍ଭବ । ଥରେ ଗୋଟିଏ ବ୍ରହ୍ମାଣ୍ଡର ବଳଭଦ୍ର ଅନେକ ମିନତି କରିବାରୁ ମୁଁ ତାଙ୍କୁ ନାରୀ ଅଙ୍ଗରେ ନେଇ ଯାଇଥିଲି । ପ୍ରିୟମ୍ବଦା ସଖୀ ତାଙ୍କୁ ଚହ୍ନିଦେଲେ । କୋଟି ବାସୁଦେବ ଶିବ ସ୍ୱୟମ୍ଭୂ ମଧ୍ୟ ଏ ଦ୍ୱାରକାକୁ ଯୋଗ୍ୟ ନୁହନ୍ତି । ଯେଉଁମାନେ ଏଠାରେ ଅଛନ୍ତି, ସେମାନେ ନିଜ ନିଜ କର୍ମରେ ବନ୍ଧା—ଏଠାରୁ ବାହୁଡ଼ିବା ସମ୍ଭବ ନୁହେଁ । ଶ୍ରୀକୃଷ୍ଣ ରାଧା, ଗୋପପୁର, ବ୍ରଜବାସୀ, ବ୍ରଜବଧୂ ପ୍ରଭୃତି ନିତ୍ୟ ଲୀଳାର ଅଂଶ ବିଶେଷ । ଶ୍ରୀକୃଷ୍ଣ ମହାନିତ୍ୟକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଯେଉଁ ଯେଉଁ ଅଂଶ ମର୍ତ୍ତ୍ୟ-ପୁରକୁ ନେଇଥିଲେ ସେସବୁ ସଙ୍ଗରେ ଆଣି ନିତ୍ୟ ଅଂଶରେ ମିଳିତ କରାଇବେ: କିନ୍ତୁ ଅଧିକା ଲୋକ ଆଣିଲେ ତାଙ୍କୁ କ'ଣ କରିବେ ? ପ୍ରଭୁ ଜଗନ୍ନାଥ ତ୍ରିପୁରାଙ୍କୁ ରୁକ୍ମିଣୀଙ୍କ ଗୁରୁ ସେବା ନିମନ୍ତେ ଅନୁରୋଧ କଲେ । ତ୍ରିପୁରା ସନ୍ତୁଷ୍ଟ ହୋଇ ରୁକ୍ମିଣୀଙ୍କୁ ମନ୍ତ୍ର, ଯନ୍ତ୍ର, ତନ୍ତ୍ରର ତତ୍ତ୍ୱ ଶିକ୍ଷା ଦେଲେ । ମର୍ତ୍ତ୍ୟରାଧାଙ୍କୁ ଧ୍ୟାନ କରି ସେ ମନ୍ତ୍ରସିଦ୍ଧି କଲେ । ରୁକ୍ମିଣୀଙ୍କ ମନର ଅନ୍ଧକାର ଅପସାରିତ ହେଲା । ସେ ଦିବ୍ୟ-ଜ୍ଞାନ ଲାଭ କଲେ—ତାଙ୍କର ହୃଦୟ ଅମୃତ ରସରେ ଆପ୍ଳୁତ ହେଲା । ଦୁହେଁ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କଲେ ।

**ଚତୁର୍ବିଂଶ ଛାନ୍ଦ :** —ରୁକ୍ମିଣୀ ଓ ଶ୍ରୀକୃଷ୍ଣଙ୍କର ନୀରବ ପ୍ରସ୍ଥାନରେ ଦ୍ୱାରକାପୁରରେ ହଲେଣି ପଡ଼ିଛି । ସମସ୍ତଙ୍କୁ ତ୍ୟାଗ କରି ଏକାକୀ ରୁକ୍ମିଣୀଙ୍କୁ ସଙ୍ଗରେ ନେବାରୁ ଅନ୍ୟମାନେ ଦୁଶ୍ଚିନ୍ତାରେ ପଡ଼ିଛନ୍ତି ଓ ଈର୍ଷାନ୍ୱିତା ହୋଇଛନ୍ତି । ଶ୍ରୀକୃଷ୍ଣଙ୍କ ବିଚ୍ଛେଦ ବ୍ୟଥାରେ ସମସ୍ତେ କାତର ହୋଇପଡ଼ିଛନ୍ତି । ବିଶେଷରେ ଶ୍ରୀକୃଷ୍ଣଙ୍କର ପ୍ରିୟତମା ମହିଷୀ ସତ୍ୟଭାମା ମୂର୍ଚ୍ଛିତା ହୋଇପଡ଼ିଲେ । ଶ୍ରୀକୃଷ୍ଣ ସମସ୍ତ ସମ୍ବାଦ ଶୁଣି ନାରୀରୂପରେ ସତ୍ୟଭାମାଙ୍କ ମନ୍ଦିରରେ ପ୍ରବେଶ କରି ଚାମର ବ୍ୟଜନ କଲେ । ଶ୍ରୀକୃଷ୍ଣଙ୍କ ଅଙ୍ଗ ସୌରଭରେ ସତ୍ୟଭାମାଙ୍କର ମୂର୍ଚ୍ଛା ଦୂର ହେଲା । ଶ୍ରୀକୃଷ୍ଣଙ୍କୁ ଦେଖି ସତ୍ୟଭାମା ଆଖିବୁଜି ଶୋକରେ ଅଧୀରା ହେଲେ । ଶ୍ରୀକୃଷ୍ଣ ସତ୍ୟଭାମାଙ୍କର ଅଭିମାନ ବୁଝିପାରି ତାଙ୍କୁ ନିବିଡ଼ ଆଶ୍ଲେଷରେ ଆବଦ୍ଧ କଲେ ଓ ତାଙ୍କୁ ସବୁକଥା ବୁଝାଇ କହିଲେ । ସତ୍ୟଭାମା ଓ ରୁକ୍ମିଣୀଙ୍କୁ ସେ ସମାନ ସମ୍ମାନ ଦେଲେ । ରୁକ୍ମିଣୀ ଦ୍ୱାରକାନାଥଙ୍କୁ ମନ୍ତ୍ରଦାନ କରି ଗୁରୁ, ବୈଷ୍ଣବ ଓ ରାଧାକୃଷ୍ଣ ସେବାବିଧି ଜାଣିବା ଫଳରେ ସର୍ବଧର୍ମରେ ସିଦ୍ଧିଲାଭ କଲେ ।

ଏହି ଗ୍ରନ୍ଥରେ କବି କବିତ୍ୱର ବିଗ୍ଭର କରିଛନ୍ତି । ସାଧୁ ଓ ଖଳ ମଧ୍ୟରେ ପାର୍ଥକ୍ୟ ପ୍ରଦାନ କରି କବି କହିଛନ୍ତି,—ସାଧୁର ମନ ଉଦାର, ଠିକ୍ କୁଲାପରି । କୁଲାରେ ପାଛୁଡ଼ିଲେ ସାରବସ୍ତୁ ରହି ଅସାରବସ୍ତୁ ତ୍ୟକ୍ତ ହୁଏ । ଖଳର ହୃଦୟ ଗ୍ଭଲୁଣି ପରି । ସେ ଭଲ ଦ୍ରବ୍ୟକୁ ତଳକୁ ପକାଇ ଅସାରକୁ ନିଜ ଦେହରେ ରଖେ । ମନୁଷ୍ୟର ଉତ୍ତରଣର ଗୋଟିଏ ଗୋଟିଏ ପକ୍ଷ ମଧ୍ୟ କବି ନିଜସ୍ୱ ଢଙ୍ଗରେ ଦର୍ଶାଇ ଦେଇଛନ୍ତି । ସଂସାର ଗତି ପ୍ରତି ବୀତଶ୍ରଦ୍ଧ ଓ ଆତଙ୍କିତ ହୋଇ କରୁଣାବାରିଧିଙ୍କ-ଠାରେ କବି ଶରଣ ଭିକ୍ଷା କରିଛନ୍ତି । ଶ୍ରୀଜଗନ୍ନାଥ ହିଁ ତାଙ୍କର ଏକମାତ୍ର ତ୍ରାଣକର୍ତ୍ତା । ଏହି ଦୃଷ୍ଟିରୁ ଜଗନ୍ନାଥ ମହିମା କୀର୍ତ୍ତିତ ହୋଇଥିବା ରହସ୍ୟମଞ୍ଜରୀ ଭକ୍ତମାନଙ୍କର ଏକମାତ୍ର ସାନ୍ତ୍ୱନା ।

## କବି ଓ କବିତ୍ୱ

କବିତା କାଳେ କାଳେ ହୃଦୟାନୁଭୂତି ପ୍ରକାଶର ପ୍ରକୃଷ୍ଟ ମାଧ୍ୟମ ଭାବରେ ଗୃହୀତ । କବିର କଳ୍ପନାବିଳାସ ରସଗ୍ଭତୁର୍ଯ୍ୟ ମଣ୍ଡିତ ହେଲେ କବିତ୍ୱର ସ୍ଫୁରଣ ସମ୍ଭବ । ସାଧାରଣ ମନୁଷ୍ୟ ସ୍ଥୂଳ ଦୃଷ୍ଟିରେ ବସ୍ତୁ ବିଗ୍ଭର କରେ, କବିର ସୂକ୍ଷ୍ମ ଦର୍ଶନରେ ତାହା ଭିନ୍ନ ରୂପରେ ଧରାଦିଏ । ଅନ୍ତରର ନିବିଡ଼ତମ ସତ୍ୟାନୁଭୂତି, ମନର ବିଚିତ୍ର ଆନନ୍ଦ ବେଦନା ଫୁଟି ଉଠେ କବିର କଥାରେ । କବି ମଣିଷମନର ମର୍ମକଥାର ମୂର୍ତ୍ତି ପ୍ରତୀକ । ସେହି ମର୍ମକଥାର ବର୍ତ୍ତିଳ ପ୍ରକାଶ କବିତ୍ୱ । କ୍ଷୁଦ୍ର ମଧ୍ୟରେ ବୃହତ୍ତ୍ୱ ଦର୍ଶନର ପ୍ରୟାସ, ମାନସିକ ଚକ୍ରବାଳରେ ସାମାନ୍ୟକୁ ଅସାମାନ୍ୟ ଭାବରେ ବିସ୍ତୃତ କରିବାର ପ୍ରକାଶ ଗ୍ଭତୁରୀ ହିଁ କବିତ୍ୱ । ଘାସଫୁଲର ଶିଶିରବିନ୍ଦୁ ସୂର୍ଯ୍ୟର ପ୍ରଖରତାପରେ ବାଷ୍ପାୟିତ ହୋଇ ଉଭେଇଯାଏ; କିନ୍ତୁ କ୍ଷଣିକ ପାଇଁ ସୌନ୍ଦର୍ଯ୍ୟର କୋମଳ ସ୍ନିଗ୍ଧ ଅନୁଭୂତିର ସ୍ପର୍ଶରେ କବିପ୍ରାଣକୁ ତାହା ଉଚ୍ଛଳ କରେ, କଳ୍ପନାର ବର୍ଣ୍ଣସଂପାତରେ ଭାବବିହ୍ୱଳ କରେ । ଏହା ହେଉଛି କବିର କବିତ୍ୱର କଥା, ମାତ୍ର ବୈଷ୍ଣବ କବିର ଦୃଷ୍ଟି ସ୍ୱତନ୍ତ୍ର ।

ରହସ୍ୟମଞ୍ଜରୀର କବି ଦେବଦୁର୍ଲ୍ଲଭ କବିତ୍ୱ ସମ୍ବନ୍ଧରେ ତାଙ୍କର ନିଜସ୍ୱ ଅଭିମତ ପ୍ରକାଶ କରିଛନ୍ତି । କବି କବିତ୍ୱ ବିଳାସ ଓ ଗ୍ଭତୁର୍ଯ୍ୟ ଅପେକ୍ଷା ବିଷୟବସ୍ତୁର ଅପୂର୍ବ ମାଧୁରୀ ପ୍ରକାଶ କରିବା ପାଇଁ ବିଶେଷ ଆଗ୍ରହୀ । ତାଙ୍କ ବିଗ୍ଭରରେ ଏପରି ଅନିର୍ବଚନୀୟ ଭାବକମ୍ପିତ ବିଷୟ ବର୍ଣ୍ଣନାରେ କବିତ୍ୱ ପ୍ରତି ସଚେତନ ଓ ସଜାଗ ରହିବା ଆଦୌ ବାଞ୍ଛନୀୟ ନୁହେଁ । ଯେତେବେଳେ ବିଷୟ ରସରେ ବା କଥା-ରସରେ ଦେହ, ମନ, ବୁଦ୍ଧି ଆକଣ୍ଠ ନିମଜ୍ଜମାନ, ସେତେବେଳେ କବିତ୍ୱ ପ୍ରତି ସତର୍କତା ରକ୍ଷା କରାଯାଇ ପାରିବ ନାହିଁ—ତାହା ଆସ୍ତ୍ୱଭର ଅତୀତ । ଈଶ୍ୱରଙ୍କ

ଅସୀମ କରୁଣାରୁ କବିତ୍ୱର ଛୁର୍ତ୍ତି ସମ୍ଭବ ହୋଇଥାଏ । ଏହା ଈଶ୍ୱରଙ୍କର ବରଦାନ ।

କବିତ୍ୱ ହେଉଛି ସରସ୍ୱତୀଙ୍କର ବୀଣା ତୁଲ୍ୟ । କବିର ମନ ହେଉଛି ବୀଣାର ତାର ସଦୃଶ ଅମୃତ ଧ୍ୱନିରେ ପୂର୍ଣ୍ଣ । ହସ୍ତଚାଳନା କଲେ ବୀଣାର ତାରରେ ସ୍ୱର ଝଙ୍କୃତ ହୁଏ । ସେହିପରି କବିମନର ଭାବପ୍ରକାଶ ପାଇଁ ଲେଖନୀ ଚାଳନା କଲେ କବି ମନର ତାରରେ ଯେଉଁ ଶବ୍ଦ ଝଙ୍କୃତ ହୁଏ, ତାହାକୁ ହିଁ ସେ ପ୍ରକାଶ କଲେ । ସେଠାରେ ସତର୍କତା ଅବଲମ୍ବନର ଅବକାଶ ନାହିଁ ।

କବି ସରସ୍ୱତୀଙ୍କର ବରପୁତ୍ର । ସେ ଯାହାକୁ ଯେତିକି କୃପାସିକ୍ତ କରିଛନ୍ତି ସେ ସେହି ଅନୁସାରେ ରଚନା କରନ୍ତି । ମାନବର ଚେଷ୍ଟା, ମାନବର ଶକ୍ତି ସେଠାରେ ପରାହତ । ବିଷ୍ଣୁତନ୍ତ୍ର ଶାସ୍ତ୍ରରେ ବ୍ରହ୍ମା ନାରଦଙ୍କୁ କବିତ୍ୱର ମର୍ମକଥା କହିଛନ୍ତି । କବିର ହୃଦୟରେ ବିଷ୍ଣୁ ଓ ସରସ୍ୱତୀଙ୍କର ଯୁଗ୍ମ ଅବସ୍ଥାନ । କବି ତାର ଜ୍ଞାନ, ବୁଦ୍ଧି ଓ ଚାତୁର୍ଯ୍ୟ ବଳରେ ଅପୂର୍ବ କଥା ସଙ୍ଗୀତ ସୃଷ୍ଟି ଓ ସମସ୍ତଙ୍କର ହୃଦୟ ହରଣ କରେ ।

କବି ଜୀବନର ଯେଉଁ ଗୂଢ଼ତତ୍ତ୍ୱକୁ ପ୍ରକାଶ କରେ ତାହା ସର୍ବକାଳର ସର୍ବଜନ ପାଇଁ ଉଦ୍ଦିଷ୍ଟ । କବିତା ଶ୍ରବଣରେ ହୃଦୟ ଅପୂର୍ବ ଆହ୍ଲାଦରସରେ ପୂର୍ଣ୍ଣ ହୁଏ; କିନ୍ତୁ କବିତ୍ୱ ଚାତୁରୀରେ କବି ଯେଉଁ ବିଷୟ ପ୍ରକାଶ କରେ ତାର ଉପଲବ୍‌ଧି କେବଳ ସହୃଦୟ ବିଦଗ୍‌ଧ ରସିକ ପକ୍ଷରେ ସମ୍ଭବ । ଯେଉଁମାନେ ମୂର୍ଖ ଅଥଚ ପଣ୍ଡିତ ବୋଲାନ୍ତି ସେମାନେ ତାର ମର୍ମାର୍ଥ ଉପଲବ୍‌ଧି କରି ନ ପାରି ନିନ୍ଦାଗାନ କରନ୍ତି । କବିଙ୍କ ଭାଷାରେ,—

"କବିତ୍ୱ ଗଣ୍ଠି ବାନ୍ଧିଥାଇ ଯାହା
ମୂର୍ଖ ପଣ୍ଡିତ ହେଁ ନବୁଝି ନିନ୍ଦନ୍ତି ତାହା ସ୍ୱେ ।"

(୮।୪୦) ।

"ପଣ୍ଡିତ ହୋଇ ମୂର୍ଖ ବୁଦ୍ଧି ଯାର
ବସ୍ତୁର ନାହିଁ ହାନିବୃଦ୍ଧି ତାର ।
ଗୁଣ ପକାଇ ଧରିପାରେ ଦୋଷ
ରସ ଅମୃତ ହେ ତେଜିଣ ଭକ୍ଷଇ ବିଷ ସ୍ୱେ ।

(୮।୪୧) ।

ପଣ୍ଡିତ ହୋଇ ମଧ୍ୟ ମୂର୍ଖବୁଦ୍ଧି ସଂପନ୍ନ ବ୍ୟକ୍ତିମାନେ ବୁଦ୍ଧିଭ୍ରଂଶ ଓ ବିଚାରଶୂନ୍ୟ ହେବାରୁ ଗୁଣକୁ ବର୍ଜନ କରି ଦୋଷ ସର୍ବସ୍ୱ ହୋଇପଡ଼ନ୍ତି । କାବ୍ୟରେ ଥିବା ହୃଦୟ ଉଲ୍ଲାସକାରୀ ଅମୃତରସ ପାନ ନ କରି ଫଳବୁଦ୍ଧି ହେତୁ ଦୋଷ ନିର୍ଦ୍ଦେଶ କରି ବିଷପାନ ପ୍ରାପ୍ତ ଦୁଃଖ ଭୋଗ କରନ୍ତି । ଯଥାର୍ଥରେ ଯେଉଁମାନେ ଉଦାର, ସହୃଦୟ ସନ୍ଥ ବା ସାଧୁ ପ୍ରକୃତି ବିଶିଷ୍ଟ ସେମାନେ ବୁଝିପାରନ୍ତି ଯେ ଶ୍ରୀକୃଷ୍ଣଙ୍କୁ ଉପଜୀବ୍ୟ କରି ପଦେ କଥାରେ ଯେବେ ଶ୍ଳୋକଟିଏ ରଚିତ ହୋଇଥାଏ, ସେ କବିତା ଶ୍ରେଷ୍ଠ କବିତା । ସେହି କବିତାର କବି ସିଦ୍ଧକବି । ସେ କବି ସିଦ୍ଧି ଲାଭ କରି ସମସ୍ତଙ୍କ ଶ୍ରୀକୃଷ୍ଣଙ୍କ ଅଙ୍ଗରେ ମିଳିତ ହୋଇ ମୁକ୍ତି ଲାଭ କରେ । ଧର୍ମ, ଅର୍ଥ, କାମ, ମୋକ୍ଷ—ଏହି ଚତୁର୍ବର୍ଗ ଫଳପ୍ରାପ୍ତିର ଅନ୍ତିମ ଫଳପ୍ରାପ୍ତି ଶ୍ରୀକୃଷ୍ଣ ଚରିତ ବର୍ଣ୍ଣନାରେ ମିଳିଥାଏ । ଯେଉଁମାନେ ପ୍ରକୃତରେ ସାଧୁ ସେମାନେ କବିତ୍ୱ ଅପେକ୍ଷା ବିଷୟରସରେ ମଜ୍ଜି ଥାଆନ୍ତି । ସେମାନଙ୍କ ବ୍ୟତୀତ ଅନ୍ୟମାନେ ହୀନବୁଦ୍ଧି ଯୁକ୍ତ । ରାଧା କୃଷ୍ଣଙ୍କର ପରମ ଗୂଢ଼ତତ୍ତ୍ୱକୁ ଉପଲବ୍ଧି କରୁଥିବା ସାଧୁମାନେ କବିଙ୍କର ଚରନମସ୍ୟ । କାରଣ ସେମାନେ ପ୍ରକୃତ ଗୁଣଗ୍ରାହୀ । କବି ଦୀନକୃଷ୍ଣ ଦାସଙ୍କର ରସକଲ୍ଲୋଳ କାବ୍ୟର ଚତୁସ୍ତିଂଶ ଛାନ୍ଦରେ କବିତ୍ୱକୁ ମଳୟ ପବନ ସହିତ ତୁଳନା କରାଯାଇ ଅଛି । ମଳୟ ପବନ ସ୍ପର୍ଶରେ ଶୁଷ୍କତରୁ ଯେପରି ପଲ୍ଲବିତ ହୁଏ, ସେହିପରି କବିତ୍ୱ ଚାତୁରୀରେ ଅରସିକର ହୃଦୟରେ ରସ ସଞ୍ଚାରିତ ହୁଏ । ଭକ୍ତକବି ଅଭିମନ୍ୟୁ ସାମନ୍ତ ସିଂହାର ବିଦଗ୍ଧ ଚିନ୍ତାମଣି କାବ୍ୟର ପ୍ରଥମ ଛାନ୍ଦରେ ସହୃଦୟ ବିଚାରଶୀଳ ଗ୍ରାହକ ଥିଲେ କବି ଓ କବିତ୍ୱ କେବେହେଲେ ମ୍ଳାନ ହେବ ନାହିଁ ବୋଲି ମତବ୍ୟକ୍ତ କରିଛନ୍ତି । କବିତ୍ୱ ଚାତୁରୀରେ କବିତ୍ୱର ଅନାବିଳ ସ୍ୱଚ୍ଛଳ ସ୍ଫୁରଣରେ କବିର କବିତା ହୁଏ କାଳଜୟୀ ।

ରହସ୍ୟ ମଞ୍ଜରୀରେ ଦେବଦୁର୍ଲଭ କବିତ୍ୱ ବିଳାସ ଅପେକ୍ଷା ବିଷୟରସ ପ୍ରତି ଅଧିକ ଧ୍ୟାନଶୀଳ ବୋଲି ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି । ରୀତି ଯୁଗର କବିଙ୍କ ପରି ଅଳଙ୍କାର ମଣ୍ଡିତ କରି ଏକାଧିକ ଅର୍ଥ ପ୍ରକାଶକ ଶବ୍ଦ ବା ବାକ୍ୟ ସଂଯୋଜନାରେ ମନ ନ ବଳାଇ ସେ ସହଜ, ସରଳ ଓ ସ୍ୱଚ୍ଛନ୍ଦ ଭାବରେ ବିଷୟ ପ୍ରକାଶ କରିଛନ୍ତି । ତେଣୁ ତାଙ୍କ କାବ୍ୟ ଅଯଥା ଆଲଙ୍କାରିକ ଅହଙ୍କାର ସ୍ପର୍ଦ୍ଧିତ ନୁହେଁ, ଭାଷା ସାରଲ୍ୟ ଶୋଭିତ ।

ସ୍ଥୂଳତଃ ରହସ୍ୟମଞ୍ଜରୀର ନିରଳଙ୍କାର ପୌରାଣିକ ଶୈଳୀରେ ସ୍ଥାନେ ସ୍ଥାନେ, ଯେଉଁଠାରେ କବିତ୍ୱର ଐନ୍ଦ୍ରଜାଲିକ ସ୍ପର୍ଶ ଲାଗିଅଛି, ସେଠାରେ ତାହା ଏହାକୁ ଗୀତିମୟ କରିବା ସଙ୍ଗେ ସଙ୍ଗେ ଅନାସ୍ୱାଦିତ କବିତ୍ୱରେ ମଣ୍ଡିତ କରିଅଛି" । (ଓଡ଼ିଆ ସାହିତ୍ୟର ମଧ୍ୟପର୍ବ—ସୁରେନ୍ଦ୍ର ମହାନ୍ତି—ପୃ ୨୨୩) ।

ଈଶ୍ୱର ପ୍ରେମାନୁଭୂତରେ ଉଚ୍ଛ୍ୱସିତ ଜୀବପ୍ରାଣ ଜୀବଦ୍ଧର ବିଳାସ ଅପେକ୍ଷା ବିଭୂ-ବିଭୂତି ପ୍ରତି ଅଧିକ ଯତ୍ନଶୀଳ ।

**ଷୋଡ଼ଶ ଶତାବ୍ଦୀର ଉତ୍କଳ : ଧାର୍ମିକ ପରିବେଶ :**

ଷୋଡ଼ଶ ଶତାବ୍ଦୀରେ ଉତ୍କଳରେ ଶ୍ରୀଚୈତନ୍ୟଙ୍କ ଆଗମନ ଫଳରେ ବୈଷ୍ଣବ ଧର୍ମର ପ୍ରଚାର ସମ୍ଭବ ହୋଇଥିଲା ଏବଂ ତାହା ପୂର୍ବରୁ ଉତ୍କଳରେ ବୈଷ୍ଣବ ଧର୍ମର ପ୍ରସାର ହୋଇ ନଥିଲା ବୋଲି ଯେଉଁ କେତେକ ଅଣଓଡ଼ିଆ ସମାଲୋଚକ ଅଜ୍ଞାତରେ ମତ ପ୍ରଦାନ କରିଛନ୍ତି ସେମାନେ ଜାଣ୍ଟିତ ଭାବରେ ସତ୍ୟକୁ ଅସ୍ୱୀକାର କରିଛନ୍ତି ବୋଲି କୁହାଯାଇପାରେ । ପୁଣି ଜଣେ ଅଣଓଡ଼ିଆ ସମାଲୋଚକ ମଧ୍ୟ ମତ ପ୍ରଦାନ କରିଛନ୍ତି ଯେ ଚୈତନ୍ୟଙ୍କ ଆଗମନର ବହୁପୂର୍ବରୁ ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରଚଳିତ ହୋଇସାରିଥିଲା । ଶ୍ରୀଚୈତନ୍ୟ ଚରିତରେ ଉପାଦାନ ନାମକ ଏକ ଗ୍ରନ୍ଥରେ ବିମାନ ବିହାରୀ ମଜୁମଦାର ମହାଶୟ ମତପ୍ରଦାନ କରି ଅଛନ୍ତି ଯେ, ଶ୍ରୀଚୈତନ୍ୟଙ୍କର ଉତ୍କଳ ଆଗମନ ପୂର୍ବରୁ ଉତ୍କଳରେ ବୈଷ୍ଣବ ଧର୍ମର ଦୁଇଗୋଟି ଧାରା ପ୍ରଚଳିତ ଥିଲା । ଗୋଟିଏ ବିଶୁଦ୍ଧ ଭକ୍ତିଧର୍ମ ଓ ଅପରଟି ଜ୍ଞାନମିଶ୍ରା ଭକ୍ତି । ଶ୍ରୀରାଧାଙ୍କୁ କେନ୍ଦ୍ର କରି ବିଶୁଦ୍ଧ ଭକ୍ତିଧର୍ମ ଗଠିତ । ବୃକ୍ଷରୂପୀ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଜ୍ଞାନମିଶ୍ରା ଭକ୍ତିର ପ୍ରଚଳନ । ତେଣୁ ଶ୍ରୀଚୈତନ୍ୟ ଉତ୍କଳକୁ ଆଗମନ କରିବାର ବହୁପୂର୍ବରୁ ଉତ୍କଳୀୟମାନେ ବୈଷ୍ଣବଧର୍ମର ଧାରାରେ ଅନୁପ୍ରାଣିତ ହୋଇସାରିଥିଲେ । ଶ୍ରୀଚୈତନ୍ୟ ଉତ୍କଳକୁ ଆଗମନ କରି ଜଗନ୍ନାଥ ଦାସଙ୍କର ଭାଗବତ ଅନୁବାଦରେ ପ୍ରୀତହୋଇ ତାଙ୍କୁ ଅତିବଡ଼ ଉପାଧିରେ ଭୂଷିତ କରିଥିଲେ । ଶ୍ରୀଚେତନ୍ୟ ଜଗନ୍ନାଥ ଦାସଙ୍କର ଧର୍ମଜ୍ଞାନ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇଥିଲେ ।

ଶ୍ରୀଚୈତନ୍ୟଙ୍କର ଉତ୍କଳ ଆଗମନର ବହୁପୂର୍ବରୁ ଉତ୍କଳରେ ବୈଷ୍ଣବ ଧର୍ମର ପ୍ରସାର ବିଶେଷ ଭାବରେ ହୋଇଥିବାର ବହୁ ଐତିହାସିକ ପ୍ରମାଣ ମଧ୍ୟ ରହିଛି । ସେଥିମଧ୍ୟରୁ ଗୋଟିଏ କଥା ଏଠାରେ ଉଲ୍ଲେଖ କରାଯାଇପାରେ । ୧୦୭୮ ସାଲରେ ଚୋଡ଼ଗଙ୍ଗ ଦାକ୍ଷିଣାତ୍ୟରୁ ଆସି ଉତ୍କଳର ଶେଷ କେଶରୀ ରାଜାଙ୍କୁ ପରାଜିତ କରି ଗଙ୍ଗବଂଶ ସ୍ଥାପନ କରିଥିଲେ । ସେହି ଏକାଦଶ ଶତାବ୍ଦୀରୁ ଉତ୍କଳ ଓ ଦାକ୍ଷିଣାତ୍ୟ ମଧ୍ୟରେ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ପରିସରରେ ଉଭୟେ ପ୍ରଭାବିତ ହୋଇଥିବା ଅତ୍ୟନ୍ତ ସ୍ୱାଭାବିକ । ଏହି ସମୟରେ ଦକ୍ଷିଣ ଭାରତର ଧର୍ମର ଧାରା ସହିତ ଉତ୍କଳ ବିଶେଷ ଭାବରେ ପରିଚିତ ହୋଇଥିଲା । ବିଶିଷ୍ଟାଦ୍ୱୈତବାଦର ପ୍ରଚାରକ ରାମାନୁଜ ଶ୍ରୀକ୍ଷେତ୍ରକୁ ଆସିଥିଲେ । ସେ ପୁରୀରେ ଦୁଇଗୋଟି ମଠ ସ୍ଥାପନ କରିଥିଲେ । ଦକ୍ଷିଣ ଭାରତର ତାମିଲଭାଷୀ

ଅଞ୍ଚଳରେ ପ୍ରଚଳିତ ଅଳଓ୍ୱାର ବୈଷ୍ଣବ ଧର୍ମର ଜଣେ ଶ୍ରେଷ୍ଠ ଧର୍ମଗୁରୁ ଭାବରେ ରାମାନୁଜ ପ୍ରସିଦ୍ଧିଲାଭ କରିଥିଲେ । ସେ ପ୍ରାୟ ୧୧୨୨ ସାଲରୁ ୧୨୩୭ ସାଲ ମଧ୍ୟରେ ଉତ୍କଳକୁ ଆସିଥିଲେ । ଉତ୍କଳର ଧର୍ମ ଜଗତର ଇତିହାସ ଖୋଜି ବସିଲେ କେବଳ ରାମାନୁଜ ନୁହନ୍ତି, ତାଙ୍କପରି ଆହୁରି ଅନେକ ଧର୍ମଗୁରୁ ଓଡ଼ିଶାକୁ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଆସିଥିବାର ଜଣାଯାଏ । ସେହିପରି ୧୫୦୯-୧୦ ସାଲରେ ଶ୍ରୀଚୈତନ୍ୟ ଓଡ଼ିଶାକୁ ଆସିଥିଲେ ଓ ନିଜର ଧର୍ମମତ ପ୍ରଚାର କରିବାକୁ ପ୍ରୟାସ କରିଥିଲେ ।

ଶ୍ରୀଚୈତନ୍ୟ ଓଡ଼ିଶାରେ ଜଗନ୍ନାଥ ଦାସଙ୍କର ପାଣ୍ଡିତ୍ୟ ତଥା ଧର୍ମଭାବ ଦେଖି ବିସ୍ମିତ ହୋଇଥିଲେ । ଓଡ଼ିଶାରେ ଖ୍ୟାତିଲାଭ କରିଥିବା ବୈଷ୍ଣବ କବିଗଣ ଜଗନ୍ନାଥ, ବଳରାମ, ଅଚ୍ୟୁତାନନ୍ଦ, ଅନନ୍ତ ଓ ଯଶୋବନ୍ତଙ୍କୁ ନିଜ ଧର୍ମ ମାର୍ଗରେ ପ୍ରଭାବିତ କରି ଓଡ଼ିଶାର ଧର୍ମମାର୍ଗକୁ ପ୍ରଭାବିତ କରିବା ପାଇଁ ଶ୍ରୀଚୈତନ୍ୟ ଚେଷ୍ଟିତ ହୋଇଥିଲେ । ଓଡ଼ିଶାର ଧର୍ମପ୍ରତୀକ ଶ୍ରୀଜଗନ୍ନାଥ ସମସ୍ତ ଧର୍ମମତବାଦର ସମନ୍ୱୟ ହେଲେ ହେଁ ଶ୍ରୀଚୈତନ୍ୟ ତାଙ୍କଠାରେ ଶ୍ରୀକୃଷ୍ଣତ୍ୱ ଆରୋପ କଲେ । ଓଡ଼ିଶାରେ ଶୁଦ୍ଧାଭକ୍ତିମାର୍ଗ ଖ୍ୟାତିଲାଭ କଲା । ଉତ୍କଳର ଗଜପତି ଏହି ମାର୍ଗ ଅନୁସରଣ କଲେ । ଉତ୍କଳର ଧର୍ମରାଜ୍ୟରେ ଶୁଦ୍ଧା ଭକ୍ତିର ପ୍ରଭାବ ପଡ଼ିବାର ଦେଖି ଉତ୍କଳର ବୈଷ୍ଣବମାନେ ଉଭୟେ ଧର୍ମମତବାଦର ସମନ୍ୱୟ ସାଧନରେ ମନଦେଲେ । ସେମାନେ ଗୌଡ଼ୀୟ ବୈଷ୍ଣବ ଧର୍ମର କେତେକ ନୀତି ଗ୍ରହଣ କରି ନିଜ ଧର୍ମମତରେ ମିଶାଇ ଦେଲେ । ତେଣୁ ପଞ୍ଚସଖା ସୃଷ୍ଟ ବୈଷ୍ଣବ ସାହିତ୍ୟରେ ଉଭୟ ମତବାଦର ପରିଚୟ ମିଳିଥାଏ । ଆଲୋଚନାର ସୁବିଧା ଲାଗି ଆଲୋଚକଗଣ ବୈଷ୍ଣବ ଧର୍ମ ମତବାଦକୁ ଦୁଇ ଭାଗରେ ଗ୍ରହଣ କରିଥାଆନ୍ତି—ଓଡ଼ିଶୀ ବା ଉତ୍କଳୀୟ ଓ ଗୌଡ଼ୀୟ ।

ଶ୍ରୀଚୈତନ୍ୟ ଓଡ଼ିଶାରେ ଜ୍ଞାନମିଶ୍ରା ଭକ୍ତିର ପରାକାଷ୍ଠା ଦେଖି ଓ ଉତ୍କଳୀୟ ବୈଷ୍ଣବମାନଙ୍କର ଜ୍ଞାନ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ସେମାନଙ୍କଠାରୁ ବ୍ରହ୍ମ ଜ୍ଞାନ ସମ୍ପର୍କରେ ତତ୍ତ୍ୱ ଗ୍ରହଣ ଲାଗି ଇଚ୍ଛା ପ୍ରକାଶ କରିଥିଲେ । ସାର୍ବଭୌମଙ୍କ ନିର୍ଦ୍ଦେଶ କ୍ରମେ ସେ ରାଜମହେନ୍ଦ୍ରୀରେ ରାୟରାମାନନ୍ଦଙ୍କୁ ସାକ୍ଷାତ କରି ତାଙ୍କର ପାଣ୍ଡିତ୍ୟ ଓ ନିସ୍ପାପର ଭକ୍ତିରେ ମୁଗ୍ଧ ହେଲେ । ରାୟ ରାମାନନ୍ଦଙ୍କ ସହିତ ଶ୍ରୀଚୈତନ୍ୟ ବୃନ୍ଦାବନ ଯାତ୍ରା କରି ପୁଣି ଶ୍ରୀକ୍ଷେତ୍ରକୁ ଫେରି ଆସିଲେ ଓ ସେଠାରେ ଦୀର୍ଘ ପଚିଶ ବର୍ଷ କାଳ ଅତିବାହିତ କରି ଶେଷରେ ଶ୍ରୀଜଗନ୍ନାଥ ବିଗ୍ରହରେ ଲୀନ ହୋଇଗଲେ ବୋଲି ବୈଷ୍ଣବମାନେ ବିଶ୍ୱାସ କରନ୍ତି । ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ, ଓଡ଼ିଶାରେ ଧର୍ମପ୍ରଚାର ଓ ଶ୍ରୀଜଗନ୍ନାଥଙ୍କ ଅଙ୍ଗରେ ଲୀନ ହେବା ବିଷୟରେ

ଐତିହାସିକମାନେ ବଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରିଅଛନ୍ତି । ଏହିସବୁ ଆଲୋଚନାରେ ବହୁପ୍ରକାର ମତ ପରିଦୃଷ୍ଟ ହୋଇଥାଏ ।

ଗୌଡ଼ୀୟ ବୈଷ୍ଣବ ଧର୍ମମତବାଦର ପ୍ରଚାର ପାଇଁ ଆମ ଦେଶରେ ବହୁ-ପରିମାଣରେ ଅତିରଞ୍ଜିତ କାହାଣୀ ପ୍ରଚଳିତ ହୋଇଅଛି । ଏହିସବୁ କାହାଣୀରେ ଶ୍ରୀକୃଷ୍ଣଙ୍କର ମହିମା ବା ଶ୍ରୀଜଗନ୍ନାଥଙ୍କର ମହିମା ଅତିରଞ୍ଜିତ ଭାବରେ ବର୍ଣ୍ଣିତ । ଏ ପ୍ରକାର କାହାଣୀଗୁଡ଼ିକୁ ପଣ୍ଡିତ ନୀଳକଣ୍ଠ ଦାସ ଭକ୍ତକ ମିଥ୍ୟା ନାମରେ ଅଭିହିତ କରି ଅଛନ୍ତି । ଓଡ଼ିଶାର ଅଶିକ୍ଷିତ ଜନସାଧାରଣ ଏପ୍ରକାର କାହାଣୀକୁ ସତ୍ୟ ଭାବ ବିଶ୍ୱାସ କରିଯାଇ ଅଛନ୍ତି । ତେଣୁ ଜଗନ୍ନାଥ ଦାସ, ବଳରାମ ଦାସ ଆଦି ବୈଷ୍ଣବ କବିମାନଙ୍କ ଜୀବନରେ ବହୁ ଅଲୌକିକ ଘଟଣା ଘଟିଥିବାର ବର୍ଣ୍ଣନା ରହିଛି । ପଣ୍ଡିତ ନୀଳକଣ୍ଠ ଦାସ ଏପ୍ରକାର ବର୍ଣ୍ଣନାକୁ ଅତ୍ୟନ୍ତ ନିଷ୍ଠୁର ଭାବରେ ଉପେକ୍ଷା କରି ଅଛନ୍ତି । ଗୌଡ଼ୀୟ ବୈଷ୍ଣବମାନଙ୍କର ପରକୀୟା ପ୍ରୀତିକୁ ସେ ଅତ୍ୟନ୍ତ ନିର୍ଦ୍ଦୟ ଭାବରେ ନିନ୍ଦା କରି ଅଛନ୍ତି । ଉତ୍କଳୀୟ ବୈଷ୍ଣବମାନଙ୍କର ଜ୍ଞାନମିଶ୍ରା ଭକ୍ତିର ଉତ୍କର୍ଷ ପ୍ରତିପାଦନ କରି ସେ ଉତ୍କଳୀୟ ଧର୍ମମତବାଦର ସାରସତ୍ତା ପ୍ରଦର୍ଶନ କରି ଅଛନ୍ତି ।

ଷୋଡ଼ଶ ଶତାବ୍ଦୀର ଅବ୍ୟବହିତ କାଳରେ ପଞ୍ଚଦଶ ଶତାବ୍ଦୀରେ ଓଡ଼ିଶାରେ ଶକ୍ତି ଉପାସନାର ପ୍ରାଧାନ୍ୟ ସୂଚିତ । ସେ ସମୟରେ ମଧ୍ୟ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରସାର ଘଟିଥିଲା । ମାତ୍ର ଓଡ଼ିଶାର ଜ୍ଞାନୀ ତଥା ପଣ୍ଡିତମଣ୍ଡଳୀ ଶୁଦ୍ଧାଭକ୍ତି ମାର୍ଗକୁ ପ୍ରକୃଷ୍ଟ ମାର୍ଗ ଭାବରେ ଗ୍ରହଣ କରି ନ ଥିଲେ ବରଂ ଗୌଡ଼ୀୟ ବୈଷ୍ଣବ ଧର୍ମର ପରକୀୟା ପ୍ରୀତିକୁ ଶତମୁଖରେ ନିନ୍ଦା କରିଥିଲେ । ସାରଳାଦାସଙ୍କର ମହାଭାରତରେ ଏହାର ପ୍ରମାଣ ସୁସ୍ପଷ୍ଟ ।(ବୃନ୍ଦା ସହିତ ବା ସହଜ ସୁନ୍ଦରୀ ସହିତ ଶ୍ରୀକୃଷ୍ଣଙ୍କର ସମ୍ଭୋଗ ଫଳରେ ଖଞ୍ଜକାରର ଜନ୍ମବୃତ୍ତାନ୍ତ ସାରଳା ମହାଭାରତରେ ବର୍ଣ୍ଣିତ । ସାରଳାଦାସଙ୍କର ଏହି ବର୍ଣ୍ଣନା ସେ ସମୟର ସମାଜରେ ସହଜିଆ ବୈଷ୍ଣବମାନଙ୍କ ପ୍ରତି ଜନସାଧାରଣଙ୍କର ଧାରଣାକୁ ରୂପାୟିତ କରିଅଛି ।) ଶ୍ରୀଚୈତନ୍ୟ ପୁରୀଧାମରେ ଅବତୀର୍ଣ୍ଣ ହୋଇ ଅତ୍ୟନ୍ତ ସତର୍କତାର ସହିତ ନିଜ ଧର୍ମ ମତବାଦ ପ୍ରଚାର ନିମନ୍ତେ କ୍ଷେତ୍ର ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଓଡ଼ିଶାର ବୈଷ୍ଣବ-ମାନଙ୍କ ଜ୍ଞାନର ପ୍ରଶଂସା କରିବା ସମୟରେ ତାଙ୍କ ସହିତ ନବଦ୍ୱୀପରୁ ଆସିଥିବା ବହୁ ବୈଷ୍ଣବ ପରିକର ବିରକ୍ତ ହୋଇ ତାଙ୍କ ସଙ୍ଗ ତ୍ୟାଗ କରିଥିଲେ । ସେମାନେ ଶ୍ରୀଚୈତନ୍ୟଙ୍କୁ ନବଦ୍ୱୀପକୁ ଫେରାଇ ନେବାକୁ ଚେଷ୍ଟା କରିଥିଲେ ମାତ୍ର ଶ୍ରୀଚୈତନ୍ୟ ସେମାନଙ୍କର ଅନୁରୋଧ ରକ୍ଷା ନ କରି ଶ୍ରୀକ୍ଷେତ୍ରରେ ଅବସ୍ଥାନ କରିଥିଲେ ।

ପୁରୁଷୋତ୍ତମରେ ବାସ କରୁଥିବା ବହୁ ଜ୍ଞାନମିଶ୍ରା ଭକ୍ତିର ଉପାସକ ଉତ୍କଳୀୟ ବୈଷ୍ଣବ ଶ୍ରୀଚୈତନ୍ୟଙ୍କର ଧର୍ମପ୍ରଚାରକୁ ସମର୍ଥନ କରି ପାରିଲେ ନାହିଁ । ସେମାନେ ଯେତେ ପ୍ରତିବାଦ କଲେହେଁ ସେମାନଙ୍କର ପ୍ରତିବାଦର କୌଣସି ମୂଲ୍ୟ ରହିଲା ନାହିଁ, ଯେତେବେଳେ ସ୍ୱୟଂ ଗଜପତି ଗୌଡ଼ୀୟ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ତେଣୁ ସେମାନେ ଅନନ୍ୟୋପାୟ ହୋଇ ଶ୍ରୀକ୍ଷେତ୍ର ତ୍ୟାଗ କରି ଉତ୍କଳର ସୁଦୂରପଲ୍ଲୀକୁ ଯାଇ ସେଠାରେ ବାସ କଲେ । ଏବେ ମଧ୍ୟ ଓଡ଼ିଶାର ଗାଁ ଗହଳରେ ବହୁସ୍ଥାନରେ ଗାଁର ଆରମ୍ଭ ବା ଶେଷଭାଗରେ ବଟବୃକ୍ଷ ମୂଳରେ ସେହି ବୈଷ୍ଣବମାନଙ୍କର ଗାଦି ରହିଥିବାର ଦେଖାଯାଏ । ଓଡ଼ିଶାର ଗାଁ ଗହଳରେ ଥିବା ଭାଗବତ ଗାଦି ପୂଜା ପାଏ ଏବଂ ତତ୍ସହିତ ବାସୁଦେବଙ୍କର ପୂଜା କରାଯାଏ । ଓଡ଼ିଶାର ଧାର୍ମିକ ପରମ୍ପରାରେ ପୂର୍ବରୁ ଥିଲେ ବାସୁଦେବ ନନ୍ଦନ ଶ୍ରୀକୃଷ୍ଣ, ମାତ୍ର ଶ୍ରୀଚୈତନ୍ୟଙ୍କ ଆଗମନ ପରେ ଓଡ଼ିଶାରେ ପ୍ରଚଳିତ ହେଲା ରାଧାବଲ୍ଲଭ ଶ୍ରୀକୃଷ୍ଣଙ୍କର ପୂଜା । ଓଡ଼ିଶାର ପ୍ରତ୍ୟେକ ଗ୍ରାମରେ ରାଧାକୃଷ୍ଣ ମନ୍ଦିର ବା ଠାକୁର ଘର ଗଢ଼ି ଉଠିଲା । ରାଧା ଅତ୍ୟନ୍ତ ସାବଧାନ ସହକାରେ ଓଡ଼ିଶାର ଧର୍ମ ଜଗତରେ ପ୍ରବେଶ କଲେ ।

ଓଡ଼ିଶାର ଧର୍ମଜଗତରେ ଶ୍ରୀରାଧାଙ୍କର ପ୍ରବେଶ ଫଳରେ ଓଡ଼ିଆ ସାହିତ୍ୟ ରାଜ୍ୟରେ ରସ ସାହିତ୍ୟର ପ୍ରାଧାନ୍ୟ ସୂଚିତ ହେଲା । ଓଡ଼ିଆ କାବ୍ୟ ସାହିତ୍ୟରେ ରାଧା ଓ ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ଲୀଳା ବର୍ଣ୍ଣନୀୟ ବିଷୟ ହେଲା ।

ଉତ୍କଳର ପଞ୍ଚସଖାଙ୍କଠାରୁ ଓଡ଼ିଆ ବୈଷ୍ଣବ ସାହିତ୍ୟର ସମୃଦ୍ଧି ସମ୍ପାଦିତ ହୋଇଅଛି । ଏମାନଙ୍କ ଆଦର୍ଶ ସେ ସମୟର ବହୁ ଭକ୍ତ କବିଙ୍କୁ ପ୍ରଭାବିତ କରିଅଛି । ତେଣୁ ଜ୍ଞାନମିଶ୍ରା ଭକ୍ତିର ଉପାସ୍ୟ ଶ୍ରୀଜଗନ୍ନାଥଙ୍କ ସ୍ଥାନରେ ବହୁ କବି ଶୁଦ୍ଧା ଭକ୍ତିର ଉପାସ୍ୟ ଶ୍ରୀକୃଷ୍ଣଙ୍କୁ ଗ୍ରହଣ କରିଅଛନ୍ତି । ଫଳରେ ଓଡ଼ିଆ ବୈଷ୍ଣବ ସାହିତ୍ୟରେ କୃଷ୍ଣଲୀଳାର ପ୍ରାଧାନ୍ୟ ସୂଚିତ ହେବାର ଦେଖାଗଲା । ଉତ୍କଳର ପଞ୍ଚସଖା ପୁରାଣମାନଙ୍କରୁ ବହୁ ଉପାଦେୟ ଅଂଶ ଗ୍ରହଣ କରି କାବ୍ୟ କବିତା ରଚନା କଲେ । ଏଗୁଡ଼ିକ ଉତ୍କଳର ଜନସମାଜରେ ବିଶେଷ ଆଦୃତ ହୋଇଥିଲା । ଜଗନ୍ନାଥଦାସଙ୍କର ଓଡ଼ିଆ ଭାଗବତ ଅଚ୍ୟୁତାନନ୍ଦ ଦାସଙ୍କର ହରିବଂଶ ଓ ବଳରାମ ଦାସଙ୍କର ଜଗମୋହନ ରାମାୟଣ ଏହି ସମୟର ଓଡ଼ିଆ ସାହିତ୍ୟରେ ତିନିଗୋଟି ଉଲ୍ଲେଖଯୋଗ୍ୟ ସୃଷ୍ଟି । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ବୈଷ୍ଣବ କବିଗଣ ମୁଖ୍ୟତଃ ଶୁଦ୍ଧାଭକ୍ତି ବା ରାଗାନୁଗାଭକ୍ତିକୁ ଆଶ୍ରୟ କରି ସେମାନଙ୍କର କାବ୍ୟ କବିତା ରଚନା କରିଅଛନ୍ତି । ରାଧା ଓ କୃଷ୍ଣଙ୍କର ପ୍ରେମଚରିତ ଅତି ସହଜ ଭାବରେ ପ୍ରାୟ ଅଧିକାଂଶ କାବ୍ୟରେ ବର୍ଣ୍ଣିତ ।

ଉତ୍କଳର ବୈଷ୍ଣବ କବିମାନେ ଗୌଡ଼ୀୟ ପ୍ରଭାବପୁଷ୍ଟ କଥାବସ୍ତୁକୁ ନେଇ କାବ୍ୟ ରଚନା କରିବା ସମୟରେ କାବ୍ୟର ଆରମ୍ଭରେ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ବନ୍ଦନା କରିଅଛନ୍ତି । ଶ୍ରୀଜଗନ୍ନାଥଙ୍କୁ ସେମାନେ ଶ୍ରୀକୃଷ୍ଣଙ୍କଠାରୁ ଅଭିନ୍ନ, ପୁଣି କେତେକ କ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ଅବତାରୀ ଭାବରେ ଚିତ୍ରଣ କରିଅଛନ୍ତି । କାବ୍ୟର ବନ୍ଦନାରେ ଶ୍ରୀଜଗନ୍ନାଥଙ୍କର ରୂପଶୋଭା ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କ ରୂପଶୋଭା ଅନୁସାରେ ବର୍ଣ୍ଣିତ । କାବ୍ୟର କଳେବର ମଧ୍ୟରେ ଶ୍ରୀଜଗନ୍ନାଥ ପ୍ରସଙ୍ଗ କ୍ରମରେ ବର୍ଣ୍ଣିତ ହୋଇପାରନ୍ତି ମାତ୍ର ମୁଖ୍ୟତଃ ଶ୍ରୀକୃଷ୍ଣଙ୍କର ଲୀଳା ବର୍ଣ୍ଣିତ । ବୈଷ୍ଣବ ଧର୍ମର ପ୍ରତିବାଦ କହିଲେ ଏହି ସମୟରୁ ବୁଝାଗଲା ଯେ ରାଧାକୃଷ୍ଣ ବା ଗୋପୀକୃଷ୍ଣଙ୍କର ଲୀଳା ବର୍ଣ୍ଣନା ।

ରାଗାନୁଗାଭକ୍ତିର ଶ୍ରେଷ୍ଠତ୍ୱ ସୂଚିତ କରିବା ପାଇଁ ଏହି ସମୟରୁ କବିମାନେ ତତ୍ପର ହୋଇପଡ଼ିଥିବାର ଦେଖାଯାଏ । ଶରୀରକୁ କଷ୍ଟ ଦେଇ, ସାଧନା କରି, ଜ୍ଞାନମାର୍ଗରେ ଅଗ୍ରସର ହେଲେ ସହଜରେ ବିଭୁପ୍ରାପ୍ତି ହୁଏ ନାହିଁ । ବିଶ୍ୱାସ କଲେ, ସ୍ତ୍ରୀ ଭାବରେ ଭଗବାନଙ୍କ ପ୍ରତି ପ୍ରୀତ୍ୟର୍ପଣ କଲେ ସେ ସହଜରେ ମିଳି ପାରନ୍ତି । ରାଧାଭାବ ବା ଗୋପୀଭାବ ହେଉଛି ଏଥିପାଇଁ ପ୍ରକୃଷ୍ଟ ମାର୍ଗ । ତେଣୁ କବିଙ୍କ ଭାଷାରେ ପ୍ରକାଶ ପାଇଲା, ଭଗବାନ ମୁନିମାନଙ୍କ ମୁଖରୁ ଉଚ୍ଚାରିତ ବେଦ ଧ୍ୱନି ନ ଶୁଣି ଗୋପୀମାନଙ୍କ ମୁଖର ଗାଳିକୁ ଅତି ଆଦରରେ ଶୁଣନ୍ତି । ଗୋପୀମାନଙ୍କର ଭାବ ପ୍ରତି ସେ ସଦା ସନ୍ତୁଷ୍ଟ । ନିଜକୁ ଗୋପୀ ଭାବରେ ତାଙ୍କ ନିକଟରେ ସମର୍ପଣ କଲେ ସେ ଭକ୍ତ ପାଖରେ ସୁଲଭ ହୁଅନ୍ତି ।

ଓଡ଼ିଆ ସାହିତ୍ୟର କେତେକ କାବ୍ୟରେ ରାଗାନୁଗାଭକ୍ତିର ଶ୍ରେଷ୍ଠତ୍ୱ ସୂଚିତ ଓ ତାହା ସହିତ ଜ୍ଞାନମିଶ୍ରା ଭକ୍ତିର ନ୍ୟୂନତା ମଧ୍ୟ ସୂଚିତ । କବିମାନଙ୍କର ଭକ୍ତିମଗ୍ନ ଗୋପୀ ପ୍ରେମର ଆଦର୍ଶରେ ପ୍ରତିଷ୍ଠିତ । ଗୋପୀକୃଷ୍ଣ ବା ରାଧାକୃଷ୍ଣଙ୍କର ସ୍ୱରୂପ ବହୁସ୍ଥଳରେ କାବ୍ୟ କବିତାରେ ଉଦ୍‌ଘାଟିତ ।

## ରହସ୍ୟମଞ୍ଜରୀ ଓ ଶୂନ୍ୟସଂହିତା :—

ଅଚ୍ୟୁତାନନ୍ଦଙ୍କର ଶୂନ୍ୟସଂହିତାର ନବମ ଅଧ୍ୟାୟରେ ନିରାକାର ଗୋଲୋକ ଓ ଅଷ୍ଟପାଟବଂଶୀଙ୍କର ଦର୍ଶନ ସମ୍ବନ୍ଧରେ ଯେଉଁ ବିସ୍ତୃତ ବିବରଣୀ ପ୍ରଦତ୍ତ ହୋଇ-ଅଛି ତାହାର ପ୍ରଭାବ ରହସ୍ୟମଞ୍ଜରୀର କଥାବସ୍ତୁ ଉପରେ ସୁସ୍ପଷ୍ଟ ।

ବିଶ୍ୱସ୍ତ ଶିଷ୍ୟ ରାମଦାସଙ୍କ ନିକଟରେ ଅଚ୍ୟୁତାନନ୍ଦ ନିରାକାର ବିଷ୍ଣୁଙ୍କର ମହିମା ଗାନକରି କୃଷ୍ଣଚନ୍ଦ୍ର ଓ ଅଷ୍ଟପାଟବଂଶୀ ପ୍ରସଙ୍ଗ ବର୍ଣ୍ଣନା କରିଛନ୍ତି । ରୁକ୍ମିଣୀ,

ସତ୍ୟଭାମା ପ୍ରମୁଖ ଅଷ୍ଟପାଟରାଣୀଙ୍କ ଗହଣରେ କୃଷ୍ଣଚନ୍ଦ୍ର ମଥୁରା ଓ ଦ୍ୱାରକାରେ ରାଜକୀୟ ବିଳାସ ବ୍ୟସନ ମଧ୍ୟରେ କାଳ ଅତିବାହିତ କରୁଥିଲେ । ଶ୍ରୀକୃଷ୍ଣଙ୍କର ମନ ଜାଣି ସମସ୍ତେ ସେବାରେ ନିରତ । ତୁଳସୀ ସବୁବେଳେ ଶ୍ରୀକୃଷ୍ଣଙ୍କର ପାଖେ ପାଖେ ଥାଆନ୍ତି । ହାସ, ରସ ପରିହାସ ଓ ଐଶ୍ୱର୍ଯ୍ୟ ଉପଭୋଗରେ କାଳ କାଟୁଥିବା ସମୟରେ ବିଚ୍ଛେଦ ମିଳନକାରିଣୀ ଯୋଗମାୟା ପ୍ରଭୁଙ୍କ ମନରେ ପ୍ରକଟ ହେଲେ । ଧୀରେ ଧୀରେ ଶ୍ରୀକୃଷ୍ଣ ବିଚ୍ଛେଦ ଚିନ୍ତାରେ କ୍ଷୀଣ ମଳିନ ହୋଇପଡ଼ିଲେ । ଅଷ୍ଟପାଟରାଣୀ ଶ୍ରୀକୃଷ୍ଣଙ୍କର ଏ ପ୍ରକାର ଅବସ୍ଥା ଦେଖି ଚିନ୍ତିତ ହୋଇପଡ଼ିଲେ । ସେମାନେ ଭାବିଲେ ବୋଧହୁଏ, ପ୍ରଭୁଙ୍କର ସେବାବିଧି ଉପଯୁକ୍ତ ଭାବରେ ହେଉ ନାହିଁ । ପୁଣି ପିତାମାତାଙ୍କ କଥା ଭାବି ପ୍ରଭୁ ବିମର୍ଷ ହୋଇଥାଇ ପାରନ୍ତି । ତୁଳସୀଙ୍କୁ ଏ କଥାର ପ୍ରକୃତ କାରଣ ସମ୍ବନ୍ଧରେ ଶ୍ରୀକୃଷ୍ଣଙ୍କୁ ପଚାରିବା ପାଇଁ କେହି କେହି ପ୍ରବର୍ତ୍ତାଇଲେ । ସାହସ ଅଭାବରୁ କେହି ଏ କଥା ଶ୍ରୀକୃଷ୍ଣଙ୍କୁ ପଚାରିବା ପାଇଁ ଆଗଭର ହେଲେ ନାହିଁ । ଏହିପରି ଭାବରେ କିଛିଦିନ ଅତିବାହିତ ହେବା ପରେ ଦିନେ ତୁଳସୀଙ୍କ ସହ ଅଷ୍ଟପାଟରାଣୀ ସେବାରେ ନିଯୁକ୍ତ ଥିବା ସମୟରେ ସତ୍ୟଭାମା ଅତ୍ୟନ୍ତ ବିନୟ ସହକାରେ କହିଲେ, ପ୍ରଭୁ, କଥାଟିଏ ପଚାରିବାକୁ ଇଚ୍ଛା ହେଉଅଛି, ଦୋଷଥିଲେ କ୍ଷମା କରିବ । ଶ୍ରୀକୃଷ୍ଣ ଅଳ୍ପ ହସି ସତ୍ୟଭାମାଙ୍କୁ ନିଃସଙ୍କୋଚରେ ପଚାରିବାକୁ କହିଲେ । ତୁଳସୀ ଆଗଭର ହୋଇ ପଚାରିଲେ, ପ୍ରଭୁ, ଆପଣଙ୍କ ଶ୍ରୀଅଙ୍ଗ କ୍ଳାନ୍ତ, ବିମର୍ଷ, ମଳିନ ଦିଶୁଅଛି । ଭୋଜନ ବା ସେବା ହୁଏତ ମନଃପୂତ ହେଉ ନାହିଁ—ଆମ୍ଭମାନଙ୍କ ମନର ସଂଶୟ ଦୂର କରି ପ୍ରକୃତ କଥା କହନ୍ତୁ ।

ଶ୍ରୀକୃଷ୍ଣଙ୍କ ଦ୍ୱାରକାଲୀଳା ଅପେକ୍ଷା ଗୋପଲୀଳାର ଶ୍ରେଷ୍ଠତ୍ୱ ପ୍ରତିପାଦିତ । ଦ୍ୱାରକାର ଅଷ୍ଟପାଟମହିଷୀଙ୍କୁ ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରେ ବସାଇ ନିତ୍ୟ ବୈକୁଣ୍ଠ ପୁରର ନିତ୍ୟରାଧା ଓ ନିତ୍ୟ କୃଷ୍ଣଙ୍କର ନିତ୍ୟଲୀଳା ପ୍ରଦର୍ଶନାର୍ଥେ ନେଇ ଯାଇଥିଲେ । ସ୍ୱୟଂ ଶ୍ରୀକୃଷ୍ଣ ରାଧା ଓ ଗୋପୀଙ୍କ ଭକ୍ତି ଅଷ୍ଟପାଟମହିଷୀଙ୍କ ଭକ୍ତି ଅପେକ୍ଷା ଉତ୍କୃଷ୍ଟ ବୋଲି ମତ ବ୍ୟକ୍ତ କରିଛନ୍ତି । ରାଜସିକ ସେବାରେ ଦ୍ୱାରକାର ଅଷ୍ଟପାଟରାଣୀ ମହିଷୀମାନେ ଶ୍ରୀକୃଷ୍ଣଙ୍କ ମନକୁ ହରଣ କରୁଥିଲେ; ଏମାନେ ପୁଣି ତାଙ୍କର ବିବାହିତା ପତ୍ନୀ; ଏହି ପ୍ରେମ ସ୍ୱକୀୟା ଓ ଐଶ୍ୱର୍ଯ୍ୟମୟୀ । ଗୋପୀ ଓ ରାଧାଙ୍କ ପ୍ରେମ ପରକୀୟା ଓ ଶୁଦ୍ଧଭକ୍ତି । ପରକୀୟା ଭକ୍ତି ଐଶ୍ୱର୍ଯ୍ୟ ଭକ୍ତି ଅପେକ୍ଷା ଶ୍ରେଷ୍ଠ—ଏହାହିଁ ପ୍ରତିପାଦିତ ବିଷୟ । ଏଥିରେ ଅନ୍ୟ ଏକ ବିଷୟର ଅବତାରଣା କରାଯାଇଅଛି । ଗୋପୀମାନେ ଅଧମ ଗଉଡ଼ୁଣୀ, ଅଷ୍ଟପାଟରାଣୀ ମହିଷୀମାନେ ରାଜରାଣୀ, କ୍ଷତ୍ରିୟ ବଂଶଜା, ଉଚ୍ଚକୂଳ ସମ୍ଭୂତା ଓ ଶ୍ରୀକୃଷ୍ଣଙ୍କ ନିଜ ପତ୍ନୀ । ମାତ୍ର ଗୋପୀମାନଙ୍କ

ପ୍ରେମର ଉଚ୍ଚସ୍ଥାନ ହୋଇଥିବା ସଙ୍ଗେ ସଙ୍ଗେ ସେମାନେ ଅଷ୍ଟପାଟବଂଶୀ ମହର୍ଷୀ-ମାନଙ୍କ ଅପେକ୍ଷା ଅଧିକ ସମ୍ମାନ ଲାଭ କରିଛନ୍ତି ।

ମନୁରାଜାଙ୍କ ରାଜସିକ କନ୍ୟାଙ୍କୁ ଶ୍ରୀକୃଷ୍ଣ କହିଲେ ତୁମେ ମୋର ଅର୍ଦ୍ଧାଙ୍ଗିନୀ । ମୁଁ ନ କହିଲେ ତୁମ ମନର ସଂଶୟ ଦୂର ହେବ ନାହିଁ, ମାତ୍ର ତାହା ଶୁଣି ତୁମେ ଉପହାସ କରିପାର । ଏଠାରେ ରାଜସୁଖ ସମ୍ପଦରେ ମଜ୍ଜି ରହି ମଧ୍ୟ ଗୋପାଙ୍ଗନାମାନଙ୍କ ସ୍ମୃତି ଆସିବାର ଦୁଃଖ ଭୁଲିପାରୁ ନାହିଁ । ରାସକ୍ରୀଡ଼ାର ଆନନ୍ଦ ଓ ରାଧିକାଙ୍କର ସଙ୍ଗ ପାଇଁ ମୁଁ ଝୁରି ହେଉଅଛି । ରାଧାଙ୍କ ସହିତ ମୋର ନିତ୍ୟ ସମ୍ବନ୍ଧ । କବିଙ୍କ ଭାଷାରେ,

"ଆଗେ ରାଧା ପଛେ ମୁହିଁ କର୍ମଟ ଭାବରେ
ଏକ ବୀଜ ବେନିଫାଲ ଯୁଗଳ ଅଙ୍ଗରେ ।" (ନବମ ଅଧ୍ୟାୟ) ।

ଶ୍ରୀରାଧା ଓ ଶ୍ରୀକୃଷ୍ଣ ଏକ ଓ ଅଭିନ୍ନ । କେବଳ ଲୀଳା କରଣ ପାଇଁ ଦୁହେଁ ଦ୍ୱିଧା ବିଭକ୍ତ । ପୁଣି;

"ନବଧା ଭକତି ଶତେ ସୂର୍ଯ୍ୟ ଅଛୁ ରହି
ମୋର ମନ ହରେ ରାଧା ପ୍ରୀତିରସ ଦେଇ ।
ତାଙ୍କ ବିନୁ କ୍ଷୀଣ ହେଲା ଆମ୍ଭର ଶରୀର
କ୍ଷଣେ ନତେଜୁ ଯେ ଆମ୍ଭେ ରାଧା ପ୍ରେମ ଥାଳ ।"

(ନବମ ଅଧ୍ୟାୟ) ।

ଶ୍ରୀରାଧାଙ୍କର ତେଜୋମୟ ରୂପ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ପରେ ଶ୍ରୀକୃଷ୍ଣ କହିଲେ, ନିତ୍ୟରାଧା ନିତ୍ୟଗୋଲୋକ ବୃନ୍ଦାବନରେ ବାସ କରନ୍ତି । ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କର କ୍ଷଣକ ପାଇଁ ମଧ୍ୟ ବିଚ୍ଛେଦ ଘଟେ ନାହିଁ । କେତେକାଳ ଅନ୍ତବାହିତ ହୋଇଗଲାଣି । ଶ୍ରୀରାଧାଙ୍କୁ ନ ଦେଖି ତାଙ୍କ ଶରୀର କ୍ଷୀଣ ହୋଇଯାଉଅଛି ।

ଶ୍ରୀକୃଷ୍ଣଙ୍କଠାରୁ ଏକଥା ଶୁଣି ଦୁଃଖ ଓ କ୍ଷୋଭରେ ଅଷ୍ଟପାଟବଂଶୀ ବିସ୍ମିତ ହେଲେ । ସେମାନଙ୍କ ମୁଖରୁ ବାକ୍ୟ ସ୍ଫୁରିଲା ନାହିଁ । ରାଧାଙ୍କୁ ପ୍ରତ୍ୟକ୍ଷରେ ଦେଖି ସତ୍ୟ ମିଥ୍ୟା ପରୀକ୍ଷା କରିବା ପାଇଁ ତୁଳସୀ ପ୍ରାର୍ଥନା କଲେ । ତାଙ୍କ ମନରେ ପ୍ରଶ୍ନ ଉଠିଲା,

"ଗୋପର ଯେ ଗଉଡ଼ୁଣୀ ଗୋରସର ଅଙ୍ଗ
ପ୍ରଭୁ ଶ୍ରୀଅଙ୍ଗକୁ କେହ୍ନେ ଯୋଗାଇ ସେ ସଙ୍ଗ ।
ତୁମ୍ଭେ କେହ୍ନେ ତାଙ୍କ ଅଙ୍ଗ ଗୁଡ଼ିଣ ଅଇଲ
ଏମନ୍ତ ସ୍ୱରୂପ ରାଧା କେମନ୍ତେ ତେଜିଲ ।"

ରାଜକନ୍ୟାଙ୍କୁ ତ୍ୟାଗ କରି ଗୋପର ରାଜେନ୍ଦ୍ରାଣୀଙ୍କ ପ୍ରତି ତୁମେ କିପରି ଆସକ୍ତ ହେଲ ? ଆଖିରେ ନ ଦେଖିବା ପର୍ଯ୍ୟନ୍ତ କିଛି ବିଶ୍ୱାସ ଆସୁନାହିଁ । ଶ୍ରୀକୃଷ୍ଣ ରାଧାକୃଷ୍ଣଙ୍କର ସ୍ୱରୂପ ନିର୍ଣ୍ଣୟ କରି କହିଲେ, ରାଧାକୃଷ୍ଣ ସର୍ବଦା ମିଳିତ ଭାବରେ ଅବସ୍ଥାନ କରନ୍ତି । ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ନୁହନ୍ତି । ମଣିଷର ଦୁଇ ଆଖି ପରି ସେମାନେ ଏକାନ୍ତ ସନ୍ନିହିତ । ଗୋପାଙ୍ଗନାମାନେ ନବଧା ଭକ୍ତିରେ ସାତ୍ତ୍ୱିକ ଭାବରେ ମଗ୍ନ । ଅଷ୍ଟପାଟବଂଶୀ ରାଜସିକ ଅହଂକାରପୂର୍ଣ୍ଣ । ସେମାନେ ରାଧାଙ୍କୁ ନ ଦେଖିଲେ ବିଶ୍ୱାସ କରିବେ ନାହିଁ ଯେ ରାଧାଙ୍କ ଶ୍ରୀଅଙ୍ଗକୁ ସେମାନେ କେହି ସରି ନୁହନ୍ତି । ହେଲେ, ପଥ ଦୁର୍ଗମ । ରାଧାକୃଷ୍ଣଙ୍କ ପ୍ରେମ ଭକ୍ତି ଅଗମ୍ୟ । ତେଣୁ ଅଷ୍ଟପାଟ-ବଂଶୀଙ୍କୁ ରାଧା ଦର୍ଶନ କରାଇବା ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣ ଗରୁଡ଼ଙ୍କୁ ସ୍ମରଣ କଲେ ଓ ସଖା ସୁଦାମଙ୍କୁ ଆହ୍ୱାନ କରି ରାଜସିକ କନ୍ୟାମାନଙ୍କୁ ନେଇ ଗରୁଡ଼ ପୃଷ୍ଠରେ ଯାତ୍ରା କରିବାକୁ ଆଦେଶ ଦେଲେ । ଚତୁର ସୁଦାମ ସେହି ସ୍ଥଳରେ ନିତ୍ୟ ରାଧାଙ୍କୁ ଦେଖାଇବା ପାଇଁ ଅନୁରୋଧ କଲେ । ସଖାଙ୍କର ଅନୁରୋଧରେ ଧ୍ୟାନମଗ୍ନ ହୋଇ ଶ୍ରୀକୃଷ୍ଣ ନିଜ ଅଙ୍ଗରେ ରାଧାଙ୍କର ସ୍ୱରୂପ ଦେଖାଇଲେ । ଅଷ୍ଟପାଟବଂଶୀ ଓ ସୁଦାମ ସେହି ତେଜୋମୟ ମୂର୍ତ୍ତି ଦେଖି ବିସ୍ମିତ ହେଲେ ।

ରାଜସିକ ଭକ୍ତି ବାହ୍ୟ ପ୍ରକାର । ମାୟା ମୋହ, ଦମ୍ଭ ରାଜସମ୍ପଦରେ ପରି-ପୂର୍ଣ୍ଣ । ଗୋପୀ ଭକ୍ତି ନବଧା ଭକ୍ତିର ସାତ୍ତ୍ୱିକ ଭାବାପନ୍ନ । ଶତଯୋଜନ ପଥ ଅତିକ୍ରମ କଲାପରେ ପ୍ରଭୁ କହିଲେ, ନିତ୍ୟ ରାଧାଙ୍କ ସ୍ଥାନ ଆଉ ଚାରିଯୋଜନ ଅବଶିଷ୍ଟ ରହିଲା । ସ୍ଥାନଟି ଜ୍ୟୋତିର୍ମୟ—ପ୍ରଥମ ଦ୍ୱାରରେ ଥିବା ତେଜୋମୟୀ ରାଜସିକ କନ୍ୟାଗଣ ଅଷ୍ଟପାଟବଂଶୀଙ୍କୁ କହିଲେ, ମାନବ ଦେହରେ ଏତେଦୂର କାହିଁକି ଆସିଛ ? ଶଙ୍ଖ, ଚକ୍ର, ଗଦା ଓ ପଦ୍ମଧାରୀ ଶ୍ରୀକୃଷ୍ଣ ଷୋଳ ସହସ୍ର ଜ୍ୟୋତିର୍ମୟୀ ରାଜକନ୍ୟାଙ୍କ ସହ ରାଜସୁଖ ସମ୍ପଦରେ ବିରାଜମାନ । ଏସବୁ ଦେଖି ସତ୍ୟଭାମା ବିସ୍ମିତ ହେଲେ ।

ଦ୍ୱିତୀୟ ଦ୍ୱାରରେ ଦେବକନ୍ୟାଗଣ ରହିଛନ୍ତି । ସେଠାରେ ଷଡ଼ଭୁଜ ଶ୍ରୀକୃଷ୍ଣ ଦେବକନ୍ୟାଙ୍କ ସହ ଆନନ୍ଦରେ ପ୍ରମତ୍ତ, ପ୍ରେମରସରେ ବିହ୍ୱଳ । ତୃତୀୟ ଦ୍ୱାରରେ ଋଷିକନ୍ୟାମାନେ ରହିଛନ୍ତି । ସୁବର୍ଣ୍ଣପାତ୍ରରେ ଫଳମୂଳ ଆହାରରେ ଶ୍ରୀକୃଷ୍ଣ ପରମ ସନ୍ତୋଷ ଲାଭ କରୁଛନ୍ତି । ଗୋଟିଏ ସ୍ଥାନରେ ସତ୍ୟଭାମାଙ୍କ ସହ ଶ୍ରୀକୃଷ୍ଣ ହାସ ପରିହାସରେ ଆଳାପରତ । ଏ ଦୃଶ୍ୟ ସହ୍ୟ କରି ନ ପାରି ସତ୍ୟଭାମା ମୂର୍ଚ୍ଛିତା ହେଲେ । ତତ୍ପରେ ଗୋପକନ୍ୟାମାନଙ୍କୁ ଦେଖିଲେ । କେଉଁଠାରେ ଶ୍ରୀକୃଷ୍ଣ ଗୋଦୋହନରେ ବ୍ୟସ୍ତ, କେଉଁଠାରେ ବତ୍ସାଙ୍କ ସହିତ ବନରେ ବିଚରଣ ।

ଶ୍ରୀକୃଷ୍ଣଙ୍କ ବ୍ୟତୀତ ସେମାନେ ଅନ୍ୟ କାହାକୁ ଜାଣନ୍ତି ନାହିଁ । ସେମାନେ ଶ୍ରୀକୃଷ୍ଣଙ୍କର ନାମ ଗାନ କରି ଦୁଧଦହି ବିକି କରନ୍ତି । ଗୋପୀମାନଙ୍କର ଏକନିଷ୍ଠ ଭାବ ହେତୁ ଶ୍ରୀକୃଷ୍ଣ ଗୋପୀନାଥ ନାମରେ ପରିଚିତ ହେଲେ ।

"ଗୋପୀ ଯହିଁ କୃଷ୍ଣ ତହିଁ ଦୃଷ୍ଟି ସହଚରୀ
ଆଚମ୍ଭିତ ହେଲେ ଦେଖି କୃଷ୍ଣପ୍ରିୟା ନାରୀ ।" (ନବମ ଅଧ୍ୟାୟ)

ଏହାର ଦୁଇ ଯୋଜନ ଅନ୍ତରରେ ନିତ୍ୟ ରାସମଣ୍ଡଳ । ସେ ସ୍ଥାନ କୋଟି କୋଟି ସୂର୍ଯ୍ୟତେଜରେ ସ୍ନାତ । ରାଧାଙ୍କର ତେଜୋଦୀପ୍ତ ଦିବ୍ୟସୁନ୍ଦର କାନ୍ତି ସହ୍ୟ କରି ନ ପାରି ଅଷ୍ଟପ୍ରାଟବଂଶୀ ମୂର୍ଚ୍ଛିତା ହେଲେ । ସଚେତ ହୋଇ ସତ୍ୟଭାମା କହିଲେ,

"ଆମ୍ଭେ କି ଭଜନ ସଖୀ ଗୋପୀମଣ୍ଡଳକୁ
ପ୍ରେମରାଧା ଦେଖି ହ୍ରାସ ଅଜ୍ଞାନ ଭାବକୁ ।
ସଦାକାଳେ କୃଷ୍ଣଚନ୍ଦ୍ର ଗର୍ବଗଞ୍ଜନ
ଆମ୍ଭଙ୍କୁ ଗଞ୍ଜିଲେ ପ୍ରଭୁ କେମନ୍ତ ଭାବେଣ ।"

ଏହି ନିତ୍ୟକୃଷ୍ଣ ହିଁ ସଚ୍ଚିଦାନନ୍ଦରୂପୀ ବ୍ରହ୍ମ । ରାଧାକୃଷ୍ଣ ସମସ୍ତଙ୍କ ନେତ୍ରରେ ପୂରି ରହିଛନ୍ତି । ଅଷ୍ଟପାଟବଂଶୀ ନିଜେ ବିଗ୍ରହ କରି ବୁଝିଲେ କିଏ ଶ୍ରେଷ୍ଠ । ମନର ନିକଟରେ ତଉଲିଲେ ପ୍ରକୃତ ସତ୍ୟ ଉପଲବ୍ଧ ହୁଏ । ରାଜସିକ ଭକ୍ତି ଅପେକ୍ଷା ରାଧାଭକ୍ତି ଗରୁ ହେଲା—"ରାଜସିକ ଭକତିରୁ ରାଧାଭକ୍ତି ବେଶି ।" ଅଷ୍ଟପାଟବଂଶୀ ନିତ୍ୟ ରାଧାଙ୍କ ଦର୍ଶନ ପାଇଁ ଆଉ ଅଧିକ ଅଗ୍ରସର ହୋଇପାରିଲେ ନାହିଁ । ସେମାନେ ଗରୁଡ଼ଙ୍କ ନିକଟରେ ରହିଲେ । ମାତ୍ର ଅଷ୍ଟପାଟବଂଶୀଙ୍କ ଅପେକ୍ଷା ତୁଳସୀଙ୍କ ଭକ୍ତି ଶ୍ରେଷ୍ଠ ବୋଲି ପ୍ରଭୁ ତାଙ୍କୁ ସ୍ୱରୂପ ଦେଖାଇବା କଥା କବି ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣ ସଖା ସୁଦାମ ରୂପରେ ଏକ ଯୋଜନ ପଥ ଯାଇ ପ୍ରେମ ରାଧାକୃଷ୍ଣଙ୍କୁ ରାସକ୍ରୀଡ଼ାରେ ମଗ୍ନ ଥିବା ଦେଖିଲେ । ସେ ସ୍ଥାନ ଶତଚନ୍ଦ୍ରର କିରଣରେ ଆଲୋକିତ । ସେଠାରେ ଦିନରାତିର ପାର୍ଥକ୍ୟ ନାହିଁ । ଏହି ସମୟରେ ଜଣେ ସଖୀ ଆସି କହିଲେ, ନିରାକାର ଭଜନା କଲେ ଏ ଭୂମିକୁ ସ୍ପର୍ଶ କରିବା ସମ୍ଭବ । ବୃନ୍ଦାମାତା ଦୟାବହି ସୁଦାମଙ୍କୁ ନିରାକାର ମନ୍ତ୍ର ଦ୍ୱାବିଂଶ ଅକ୍ଷର ଉପଦେଶ ଦେଲେ । ଏହି ମନ୍ତ୍ର ଜପ କଲେ ଇହଲୋକ ପରଲୋକରେ ମୁକ୍ତିଲାଭ ସମ୍ଭବ । ନିତ୍ୟ ରାସମଣ୍ଡଳୀରୁ ଶ୍ରୀକୃଷ୍ଣ ଓ ତୁଳସୀ ବାହୁଡ଼ି ଆସିବାରୁ ଅଷ୍ଟପାଟବଂଶୀଙ୍କ ସହିତ ସମସ୍ତେ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କଲେ ।

ନିର୍ମଳ ଭକ୍ତି ନିତ୍ୟ ଗୋଲୋକ ପାଇଁ ନିରାଳମ୍ବ ପଥ । ଶ୍ରୀକୃଷ୍ଣଙ୍କଠାରେ ନିର୍ମଳ ଭକ୍ତି ଥିଲେ ନିତ୍ୟରାସ ଦର୍ଶନ ସମ୍ଭବ । ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କର ଅର୍ଦ୍ଧଆତ୍ମା ସଖା ସୁଦାମ କଳିଯୁଗରେ ଅଚ୍ୟୁତ ନାମରେ ଜନ୍ମଗ୍ରହଣ କରିଛନ୍ତି ।

ଶୂନ୍ୟ ସଂହିତା ନବମ ଅଧ୍ୟାୟରେ ଅଷ୍ଟପାଟବଂଶୀଙ୍କୁ ନିରାକାର ଗୋଲୋକ ଦର୍ଶନର ଯେଉଁ ବୃତ୍ତାନ୍ତ ରହିଛି ତାହାକୁ ଅବଲମ୍ବନ କରି ପରବର୍ତ୍ତୀ କାଳରେ ଦେବଦୁର୍ଲଭ ଦାସ ରହସ୍ୟ ମଞ୍ଜରୀ କାବ୍ୟ ରଚନା କରିଛନ୍ତି । ଏହି ନିତ୍ୟରାସର ବର୍ଣ୍ଣନା ଭାଗବତରେ ନାହିଁ । ବ୍ରହ୍ମବୈବର୍ତ୍ତପୁରାଣରେ ଏହାର ସୂଚନା ଥିବାର ଜଣାଯାଏ ।

ରହସ୍ୟମଞ୍ଜରୀରେ କବି ଦେବଦୁର୍ଲଭ ଦାସ କେତେକ ପରିବର୍ତ୍ତନ ଘଟାଇଥିବା ପରିଲକ୍ଷିତ ହୁଏ । ପ୍ରଥମତଃ; ଦେବଦୁର୍ଲଭ ରୁକ୍ମିଣୀଙ୍କୁ ଲକ୍ଷ୍ମୀଙ୍କର ଅଂଶ ରୂପେ ସ୍ୱୀକାର କରି କେବଳ କୃଷ୍ଣଙ୍କ ସହିତ ରୁକ୍ମିଣୀ ନିତ୍ୟ ରାସସ୍ଥଳୀ ଦର୍ଶନ କରିବାକୁ ଯାଇଥିଲେ ବୋଲି ବର୍ଣ୍ଣନା କରିଅଛନ୍ତି । ମାତ୍ର ଶୂନ୍ୟସଂହିତାରେ ଶ୍ରୀକୃଷ୍ଣ ଅଷ୍ଟପାଟବଂଶୀ ତୁଳସୀ ଓ ସୁଦାମଙ୍କ ସହ ନିତ୍ୟରାସସ୍ଥଳୀକୁ ଯିବାର ବର୍ଣ୍ଣନା ଅଛି । କେବଳ ତୁଳସୀ ନିତ୍ୟ ରାଧାଙ୍କ ସ୍ୱରୂପ ଦର୍ଶନ କରିଥିଲେ । ଦ୍ୱିତୀୟତଃ ରହସ୍ୟମଞ୍ଜରୀରେ ରୁକ୍ମିଣୀ ନାୟିକା; ମାତ୍ର ଶୂନ୍ୟସଂହିତାରେ ସତ୍ୟଭାମାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦିତ । ତୃତୀୟତଃ; ରୁକ୍ମିଣୀ ନିତ୍ୟସ୍ଥଳୀର ଦ୍ୱାରଦେଶରେ ଆଦିମାତା ତ୍ରିପୁରାଙ୍କଠାରୁ ମନ୍ତ୍ର, ଯନ୍ତ୍ର, ଭେଦ ଶିକ୍ଷା କରି ନିତ୍ୟ ରାସସ୍ଥଳୀକୁ ଯାଇ-ଥିଲେ; କିନ୍ତୁ ଶୂନ୍ୟ ସଂହିତାରେ ବୃନ୍ଦାମାତା ସୁଦାମଙ୍କୁ ନିରାକାର ମନ୍ତ୍ର ଓ ଦ୍ୱାତ୍ରିଂଶ ଅକ୍ଷର ଜପ କରିବାକୁ ଉପଦେଶ ଦେଇଥିଲେ । ସୁଦାମ ଏକ ଯୋଜନ ଦୂରରୁ ବୃନ୍ଦାମାତାଙ୍କୁ ଭେଟିଥିଲେ ମାତ୍ର ।

କବି ଦେବଦୁର୍ଲଭ ଦାସ ଏହି କଥାକୁ ଅବଲମ୍ବନ କରିଥିଲେହେଁ ଭକ୍ତି-ଧାରାରେ କେତେକ ପାର୍ଥକ୍ୟ ପ୍ରଦର୍ଶନ କରିଅଛନ୍ତି । ଶୂନ୍ୟସଂହିତାରେ ଅଚ୍ୟୁତା-ନନ୍ଦ ସ୍ପଷ୍ଟତଃ ନିରାକାରତତ୍ତ୍ୱ ଓ ମନ୍ତ୍ରକୁ ସାଧନାର ମୂଳାଧାର ରୂପେ ସ୍ୱୀକାର କରି ଶ୍ରୀକୃଷ୍ଣଙ୍କୁ ଅଲେଖ ଶୂନ୍ୟ ରୂପରେ କଳ୍ପନା କରିଛନ୍ତି । ଶୂନ୍ୟ ଭଜନ, ନିରାକାର ମନ୍ତ୍ର ଜପରେ ଭବସଂସାରରୁ ମୁକ୍ତି ସମ୍ଭବ । ଅଚ୍ୟୁତାନନ୍ଦଙ୍କର ଏହି ଶୂନ୍ୟବାଦୀ ଚିନ୍ତାଧାରା ପରିବର୍ତ୍ତେ ଗୌଡ଼ୀୟ ରାଗାନୁଗା ଭକ୍ତିମାର୍ଗର ଅପରୂପ ପ୍ରେମଲୀଳା ଓ ଅପରିମେୟ ମାଧୁର୍ଯ୍ୟରସ ପରିବେଷଣ କରିଛନ୍ତି ଦେବ-ଦୁର୍ଲଭ । କବିଙ୍କର ସ୍ୱକୀୟତା ଓ ବିଶେଷତ୍ୱ ଏଥିରୁ ସ୍ପଷ୍ଟ ସୂଚିତ ହୁଏ ।

## ଗୋପୀଚନ୍ଦନ ଓ ରହସ୍ୟମଞ୍ଜରୀ :—

କବି ବୃନ୍ଦଦାସ ଷୋଡ଼ଶ ଶତାବ୍ଦୀର ବୈଷ୍ଣବ କବି । ତାଙ୍କ ରଚିତ ଗୋପୀ ଚନ୍ଦନ କାବ୍ୟର କଥାବସ୍ତୁ ସହିତ ରହସ୍ୟମଞ୍ଜରୀର କଥାବସ୍ତୁର ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ତେଣୁ କାବ୍ୟର କଥାବସ୍ତୁ ବର୍ଣ୍ୟ ।

ସନକାଦି ମୁନିମାନେ ବ୍ୟାସଦେବଙ୍କୁ ଗୋପୀଚନ୍ଦନର ବ୍ୟବସ୍ଥା ପଚାରିବାରୁ ବ୍ୟାସଦେବ ଉପାଖ୍ୟାନର ବର୍ଣ୍ଣନା କରିଛନ୍ତି । କଂସ ନିଧନ ପରେ ଜରାସନ୍ଧର ଅତ୍ୟାଚାରରେ ଶ୍ରୀକୃଷ୍ଣ ମଥୁରା ତ୍ୟାଗ କରି ଦ୍ୱାରକାରେ ବାସକଲେ । ସେଠାରେ ରୁକ୍ମିଣୀ ସତ୍ୟଭାମା ପ୍ରଭୃତି ଅଷ୍ଟପାଟବଂଶୀଙ୍କୁ ବିବାହ କଲେ । ନରକାସୁରକୁ ମାରି ଷୋଳ ସହସ୍ର ବନ୍ଦିନୀ ନାରୀଙ୍କୁ ବିବାହ କରି ଶ୍ରୀକୃଷ୍ଣ ସୁଖରେ କାଳ ଅତିବାହିତ କରୁଥିଲେ । ଥରେ କଥା ପ୍ରସଙ୍ଗରେ ଗୋପୀମାନଙ୍କ ରୂପଗୁଣ ବର୍ଣ୍ଣନା କରି ଶ୍ରୀକୃଷ୍ଣ ତାଙ୍କର ପତ୍ନୀମାନଙ୍କୁ କହୁଥିଲେ । ସେମାନେ ଗୋପୀମାନଙ୍କ ପ୍ରଶଂସାରେ ଈର୍ଷାନ୍ୱିତା ହୋଇ ସେମାନଙ୍କୁ ଦେଖିବା ପାଇଁ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ ।

ଶରତକାଳ ଆସିବାରୁ ଶ୍ରୀକୃଷ୍ଣ ଗୋପୀମାନଙ୍କ ବିଚ୍ଛେଦ ଦୂର କରିବା ଓ ସତ୍ୟଭାମାଙ୍କର ଗର୍ବ ଗଞ୍ଜନ କରିବା ପାଇଁ ଅଷ୍ଟପାଟବଂଶୀଙ୍କ ସହିତ ବସିଥିବା ନାରଦଙ୍କୁ ଗୋପକୁ ଯିବା ପାଇଁ ନିର୍ଦ୍ଦେଶ ଦେଲେ । ଗୋପପୁରରେ ନାରଦ ପ୍ରବେଶ କଲେ । ଗୋପୀମାନେ ଦହିପସରା ଧରି ଦହି ବିକ୍ରୟ କରୁଥିବା ଦେଖି ସତ୍ୟଭାମା ପ୍ରଭୃତି ସେମାନଙ୍କୁ ପରିହାସ କଲେ । ଶ୍ରୀକୃଷ୍ଣ ଅଷ୍ଟପାଟବଂଶୀଙ୍କର ଗର୍ବ ଗଞ୍ଜନ କରିବା ଉଦ୍ଦେଶ୍ୟରେ ସେଠାରୁ ଦ୍ୱାରକାକୁ ଫେରି କିଂପୁରୁ ନାମକ ଗନ୍ଧର୍ବଙ୍କୁ ଡାକି ଗୋପୀମାନଙ୍କ ନିମିତ୍ତ ଦିବ୍ୟ ଅଳଙ୍କାରର ବ୍ୟବସ୍ଥା କରିବାକୁ ଆଦେଶ ଦେଲେ । ଗୋପୀମାନଙ୍କୁ ଆଣିବା ପାଇଁ ଉଦ୍ଧବଙ୍କୁ ପଠାଗଲା । ବିରହ ଜର୍ଜରିତା ଗୋପୀମାନେ ଉଦ୍ଧବଙ୍କୁ ଦେଖି ଅତ୍ୟନ୍ତ ହର୍ଷୋତ୍ଫୁଲ୍ଲିତା ହୋଇ ଶ୍ରୀକୃଷ୍ଣଙ୍କର କୁଶଳ ପ୍ରଶ୍ନ କଲେ । ଶ୍ରୀକୃଷ୍ଣଙ୍କର ନିମନ୍ତ୍ରଣ ପାଇ ସେମାନେ ଆନନ୍ଦରେ ସଜବାଜ ହୋଇ ପୁଷ୍ପକ ବିମାନରେ ବସି ଦ୍ୱାରକା ଗଲେ । ଗୋପୀମାନଙ୍କର ଆସିବାରେ ବିଳମ୍ବ ହେବାରୁ ଶ୍ରୀକୃଷ୍ଣ ସଖାଙ୍କୁ ଡାକି କାରଣ ପଚାରନ୍ତେ ସେ ବିଳମ୍ବରେ କାର୍ଯ୍ୟସିଦ୍ଧି ବୋଲି କହି ଆଶ୍ୱାସନା ଦେଲେ । ତତ୍ପରେ ଶ୍ରୀକୃଷ୍ଣ ବିଶ୍ୱକର୍ମାଙ୍କୁ ଡାକି ଗୋପୀମାନଙ୍କ ରହିବା ନିମିତ୍ତ ଦିବ୍ୟ ସୁନ୍ଦର ଭବନ ନିର୍ମାଣ କରିବା ଲାଗି ଅନୁରୋଧ କଲେ ଓ ପରିଚାରିକାମାନଙ୍କୁ ଗୋପୀମାନଙ୍କ ପାଇଁ ସବୁ ପ୍ରକାର ଆବଶ୍ୟକୀୟ ଦ୍ରବ୍ୟ ପ୍ରସ୍ତୁତ କରିବା ଲାଗି ଆଦେଶ ଦେଲେ ।

ଉଦ୍ଧବଙ୍କ ସହ ଗୋପୀମାନେ ଦ୍ୱାରକାପୁରକୁ ଆସି ସେ ସ୍ଥାନର ନଗର ଶୋଭା ଦେଖି ବିମୋହିତା ହେଲେ । ଗୋପୀମାନଙ୍କୁ ନୂତନ ଭବନରେ ରଖାଇ ଶ୍ରୀକୃଷ୍ଣଙ୍କୁ ସମ୍ବାଦ ଦେବାଲାଗି ଉଦ୍ଧବ ଅନ୍ତଃପୁରକୁ ଗଲେ । ପରିଚାରିକା-ମାନେ ନାନା ଭୋଜ୍ୟ ପାନାଦିରେ ଗୋପୀମାନଙ୍କର ପରିଚର୍ଯ୍ୟା କଲେ । ମାତ୍ର ଗୋପୀମାନେ ସେଥିପ୍ରତି ଆଗ୍ରହ ପ୍ରକାଶ ନ କରି ଶ୍ରୀକୃଷ୍ଣଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଲେ ।

ଗୋପୀମାନଙ୍କ ଆଗମନ ବାର୍ତ୍ତା ପାଇ ଶ୍ରୀକୃଷ୍ଣ ଆନନ୍ଦରେ ବୃଦ୍ଧ ବିଦୁ-ଷାଖାଙ୍କୁ ସେମାନଙ୍କୁ ଦେଖିବା ପାଇଁ ପଠାଇଲେ ଏବଂ ଯୋଗମାୟାଙ୍କୁ ଡାକି ସେମାନଙ୍କୁ ମାୟାରେ ବଶ କରିବାକୁ ଆଦେଶ ଦେଲେ । ବିଦୁଷାଖା ଗୋପୀମାନଙ୍କ ରୂପ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ, କିନ୍ତୁ ଗୋପୀମାନେ ବିଦୁଷାଖାଙ୍କର କୁତ୍ସିତ ରୂପ ଦେଖି ପରିହାସ କଲେ । ବିଦୁଷାଖା ଫେରିଯିବା ପରେ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ସଙ୍ଗରେ ଧରି ଗୋପୀଙ୍କ ନିକଟରେ ଉପସ୍ଥିତ ହେଲେ । ଗୋପୀମାନେ ଚିରଇପ୍‌ସିତ ଶ୍ରୀକୃଷ୍ଣଙ୍କୁ ସମ୍ମୁଖରେ ପାଇ ସଙ୍ଗେ ସଙ୍ଗେ ନିଜ ନିଜର ଆସନ ତ୍ୟାଗ କରି ତାଙ୍କ ସେବାରେ ମନପ୍ରାଣ ସମର୍ପଣ କଲେ । ଶ୍ରୀକୃଷ୍ଣଙ୍କ ସ୍ପର୍ଶ କରିବାମାତ୍ରେ ସେମାନଙ୍କ ମନରେ ସାତ୍ତ୍ୱିକ ବିକାର ଜାତ ହେଲା । ଶ୍ରୀକୃଷ୍ଣ ଏହା ଜାଣିପାରି ପୁଷ୍ପବନରେ ଗୋପୀମାନଙ୍କ ସହ ବନ ବିହାର କରି ସେମାନଙ୍କ ଆକାଙ୍କ୍ଷା ପୂର୍ଣ୍ଣ କଲେ । ତତ୍ପରେ ରାଗାନୁରାଗମାର୍ଗର ସର୍ବଶ୍ରେଷ୍ଠ ସାଧିକା ଗୋପୀମାନଙ୍କୁ ଦର୍ଶନ କରିବା ପାଇଁ ରୁକ୍ମିଣୀ, ସତ୍ୟଭାମା ପ୍ରମୁଖ ଅଷ୍ଟପାଟବଂଶୀଙ୍କ ନିକଟକୁ ସମ୍ବାଦ ପଠାଇଲେ ।

ବିଦୁଷାଖା ଅର୍ଥାତ୍ କୌତୁକପ୍ରବୀଣ ବିଦୂଷକ ଅଷ୍ଟପାଟବଂଶୀଙ୍କ ସମ୍ମୁଖରେ ଗୋପୀମାନଙ୍କର ରୂପବର୍ଣ୍ଣନା କରି କହିଲେ, ତାଙ୍କର କୁତ୍ସିତଦର୍ଶନା ସ୍ତ୍ରୀ ସୁଦ୍ଧା ଗୋପୀମାନଙ୍କ ଆଗରେ ସ୍ୱର୍ଗର ଅପ୍‌ସରା ପରି ସୁନ୍ଦରୀ । ଅର୍ଥାତ୍, ଗୋପୀମାନେ କୁରୂପା । ସତ୍ୟଭାମା ଆନନ୍ଦରେ କଣ୍ଠର ମୁକ୍ତାମାଳା ଉପହାର ଦେଲେ । ମାତ୍ର ରୁକ୍ମିଣୀ ବୁଝିଥିଲେ ବିଦୂଷକ ସେମାନଙ୍କୁ ମିଛ କହି ମୋତିମାଳା ନେଇଗଲେ । ସମସ୍ତେ ସୁବେଶ ହୋଇ ଗୋପାଙ୍ଗନାଙ୍କୁ ଦେଖିବା ପାଇଁ ଆସିଲେ । ଶ୍ରୀକୃଷ୍ଣଙ୍କ ମାୟାରେ ଗୋପୀମାନେ ଅଷ୍ଟପାଟବଂଶୀଙ୍କୁ ଦେଖି ଓ ଅଷ୍ଟପାଟବଂଶୀ ଗୋପୀମାନଙ୍କୁ ଦେଖି ମୁଗ୍‌ଧ ହେଲେ ଓ ପରସ୍ପରକୁ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ରୁକ୍ମିଣୀ ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କ ରାସକ୍ରୀଡ଼ା ଦେଖିବାକୁ ଆଗ୍ରହ ପ୍ରକାଶ କରିବାରୁ ଶ୍ରୀକୃଷ୍ଣ ରାସୋତ୍ସବ ପାଇଁ ଶ୍ରୀରାଧାଙ୍କ ସହ ରାସବେଶରେ ସଜ୍ଜିତ ହେଲେ ।

ରାସ ଉତ୍ସବ ସମୟରେ ମଳୟ ପବନ ପ୍ରବାହିତ ହୋଇ ବସନ୍ତ ସମାଗମ ପ୍ରାପ୍ତ ବୋଧହେଲା । ନାୟିକାମାନେ କୃଷ୍ଣ ପ୍ରେମରେ ଉନ୍ମତ୍ତ ହୋଇ ଉଠିଲେ । ଶ୍ରୀକୃଷ୍ଣ ଅନନ୍ତ ରୂପ ଧାରଣ କରି ପ୍ରତ୍ୟେକ ନାୟିକାଙ୍କ ସହିତ ରାସକ୍ରୀଡ଼ା କଲେ । ରାସ ବନୋଦର ସ୍ୱରୂପ ଦର୍ଶନ କରି ଓ ଭାବ ଗ୍ରହଣ କରି ସମସ୍ତେ ଦ୍ୱାରକା ନଗରକୁ ପ୍ରତ୍ୟାବର୍ତ୍ତନ କଲେ । ଅରେ ମହର୍ଷି ନାରଦ ପ୍ରଭୁଙ୍କର ନୃତ୍ୟରାସ ଦେଖିବା ପାଇଁ ଅଭିଳାଷ ପୋଷଣ କଲେ । ନୃତ୍ୟରାସ ସ୍ଥଳୀକୁ କୌଣସି ପୁରୁଷ ପ୍ରବେଶର ନିୟମ ନ ଥିବାରୁ ନାରଦ ରାଧା ସରୋବରରେ ସ୍ନାନ କରି ଯୁବତୀ ବେଶରେ ନୃତ୍ୟ ରାସସ୍ଥଳୀରେ ପ୍ରବେଶ କଲେ ଓ ପ୍ରଭୁଙ୍କର ଅସୀମ କରୁଣାରେ ନୃତ୍ୟରାସ ଦେଖି ପରମ ସନ୍ତୋଷ ଲାଭ କଲେ ।

କବି ବୃନ୍ଦାବନଙ୍କର ଗୋପୀଚନ୍ଦନ ଓ ରହସ୍ୟମଞ୍ଜରୀରେ ବିଷୟଗତ ସାମ୍ୟ ଓ ବୈଷମ୍ୟ ବିଚାର କଲେ ଜଣାଯାଏ ଯେ ଗୋପୀଚନ୍ଦନରେ ଶ୍ରୀକୃଷ୍ଣ ଅଷ୍ଟ-ପାଟବଂଶୀଙ୍କ ସହ ଜଗନ୍ନ ଉପରେ ବସି ଗୋପପୁରକୁ ଯାଇଥିଲେ । ରହସ୍ୟ ମଞ୍ଜରୀରେ ଅଷ୍ଟପାଟବଂଶୀ ଓ ଅନ୍ୟାନ୍ୟ ବିବାହିତା ପତ୍ନୀଙ୍କ ସହ ଗରୁଡ଼ ପୃଷ୍ଠରେ ବସି ଗୋପପୁରକୁ ଯାଇଥିଲେ ।

ରହସ୍ୟ ମଞ୍ଜରୀରେ ରାଧାକୃଷ୍ଣ ଗୋପାଙ୍ଗନାଙ୍କ ସହିତ ମହାରାସ କରିଥିବା ବର୍ଣ୍ଣିତ । ଗୋପୀଚନ୍ଦନରେ ଗୋପୀ ଓ ଅଷ୍ଟପାଟବଂଶୀ ମିଳିତ ଭାବରେ ଦ୍ୱାରକାରେ ରାଧାକୃଷ୍ଣ ସହିତ ରାସକେଳିରେ ସହଯୋଗ କରିଥିଲେ ।

ରହସ୍ୟମଞ୍ଜରୀରେ ରାଧା ଓ ସଖୀମାନେ ତାଙ୍କର ଅଙ୍ଗଜାତ ମନ୍ଥ କନ୍ୟାଙ୍କୁ ଦ୍ୱାରକାକୁ ପ୍ରେରଣ କରିଥିଲେ । ଗୋପୀଚନ୍ଦନରେ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ପଠାଇ ଗୋପୀମାନଙ୍କୁ ପୁଷ୍ପକ ବିମାନରେ ଦ୍ୱାରକାକୁ ଆମନ୍ତ୍ରଣ କରି ଆଣିଥିଲେ ।

ରହସ୍ୟମଞ୍ଜରୀରେ ମହାଭାବମୟୀ ଶ୍ରୀରାଧା ଓ ପ୍ରେମ ମାର୍ଗର ସାଧିକା ଗୋପାଙ୍ଗନାଙ୍କ ମହତ୍ତ୍ୱ ପ୍ରତିପାଦିତ । ଗୋପୀଚନ୍ଦନରେ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠତ୍ୱ ପ୍ରକାଶ ପାଇଅଛି ।

ରହସ୍ୟମଞ୍ଜରୀରେ ବର୍ଣ୍ଣିତ ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରେ ଦ୍ୱାରକା ନାରୀମାନଙ୍କୁ ବସାଇ ଅଦୂରରେ ଗୋପାଙ୍ଗନାଙ୍କ ସହ ରାସକ୍ରୀଡ଼ା କରିଛନ୍ତି ଓ ପରେ ଦ୍ୱାରକାରେ ନାରୀ ଓ ଗୋପାଙ୍ଗନାଙ୍କ ମିଳନ କରାଇଛନ୍ତି । ଗୋପୀଚନ୍ଦନରେ ଶ୍ରୀକୃଷ୍ଣ ପ୍ରଥମେ ଗୋପୀମାନଙ୍କ ସହ ଦ୍ୱାରକାରେ ଅଷ୍ଟପାଟବଂଶୀଙ୍କ ସାକ୍ଷାତ କରାଇ ଉଭୟଙ୍କ ମନରୁ ପରସ୍ପର ପ୍ରତି ଭ୍ରମଧାରଣା ଦୂର କରି ସ୍ନେହଭାବ ଜନ୍ମାଇଛନ୍ତି । ତତ୍ପରେ

ଉଭୟ ଦ୍ୱାରକା ଓ ଗୋପନାଗ୍ରମାନଙ୍କ ଗହ୍ୱରରେ ନଜେ ରାସକ୍ରୀଡ଼ାର ନାୟକ ନଟବର ବେଶରେ ସଜ୍ଜିତ ହୋଇ ରାସକ୍ରୀଡ଼ା କରଛନ୍ତି ।

ଏହପର ଉଭୟ କାବ୍ୟ ମଧ୍ୟରେ କଥାବସ୍ତୁରେ ସାମଞ୍ଜସ୍ୟ ପରଲକ୍ଷିତ ହେଲେହେଁ ବଷୟ ଉପସ୍ଥାପନରେ ଉଭୟ କାବ୍ୟରେ ସ୍ୱାତନ୍ତ୍ୟ ରକ୍ଷିତ ହୋଇଅଛୁ ।

## ନାମରତ୍ନ ଗୀତା ଓ ରହସ୍ୟମଞ୍ଜରୀ—

ଅଷ୍ଟାଦଶ ଶତାବ୍ଦୀର କବ ଦୀନକୃଷ୍ଣ ଦାସଙ୍କ ନାମରତ୍ନ ଗୀତାରେ ତୁଳସୀ ମହମା ଓ ନତ୍ୟ ସ୍ଥଳର ରାସ ବର୍ଣ୍ଣିତ ହୋଇଅଛୁ । ପୌରାଣିକ ଶୈଳୀରେ ରଚତ ଏହ କାବ୍ୟରେ ଅର୍ଜୁନ ଭଗବାନ ଶ୍ରୀକୃଷ୍ଣଙ୍କ ତୁଳସୀଙ୍କ ମାହାତ୍ମ୍ୟ ଓ ଲୋକପ୍ରତଷ୍ଠା ଦେଖି ତାଙ୍କର ପୂର୍ବ ଅବତାର ବୃତ୍ତାନ୍ତ ଜାଣିବା ପାଇଁ ଆଗ୍ରହ ପ୍ରକାଶ କର ପ୍ରଶ୍ନ କରଛନ୍ତି ।

ଶ୍ରୀହର ତୁଳସୀଙ୍କ୍ତୁ ପବତ୍ର ମହାସତୀ ଓ ଗଡମୂର୍ତ୍ତି ସ୍ୱରୂପିଣୀ ଭାବରେ ବର୍ଣ୍ଣନା କରଛନ୍ତି । ନତ୍ୟସ୍ଥଳରେ ନତ୍ୟ ଦ୍ୱାରଦେଶ ଆବୋର ତ୍ରିପୁରା ଦେବୀ ରହଛନ୍ତି । ତ୍ରିପୁରାଙ୍କ ତୀକ୍ଷ୍ଣ ଦୃଷ୍ଟିକୁ ଅତକ୍ରମ କର ନତ୍ୟସ୍ଥଳକୁ ଯିବା ଏକାନ୍ତ ଅସମ୍ଭବ । ତେତଶକୋଟି ଦେବତା, ଏପରକ ବ୍ରହ୍ମା, ଶିବ ପ୍ରମୁଖ ମୁଖ୍ୟ ଦେବତା ତ୍ରିପୁରାଙ୍କର ଅନେକ ସେବା ଯତ୍ନ କର ନତ୍ୟ ରାସସ୍ଥଳ ଦେଖିପାର ନାହାନ୍ତି । ମାନବ ବଷ୍ଣୁ ତ୍ରିପୁରାଙ୍କ ମନଜାଣି ସେବା କଲେ ଓ ତ୍ରିପୁରା ସନ୍ତୁଷ୍ଟ ହୋଇ ବଷ୍ଣୁଙ୍କୁ ବର ମାଗିବାକୁ କହଲେ । ମାନବ ବଷ୍ଣୁ ଆନନ୍ଦତ ହୋଇ ନତ୍ୟରାସ ଦେଖିବା ପାଇଁ ପ୍ରାର୍ଥନା କଲେ । ତ୍ରିପୁରା ଦେବୀ ଜାଣିଲେ ତାଙ୍କୁ ଅନର୍ଥ ଭୋଗ କରବାକୁ ହେବ । ତଥାପି ଶୁଭଚତ୍ତରେ ବଷ୍ଣୁଙ୍କୁ ବଭନ୍ନ ଆଭରଣରେ ମଣ୍ଡିତ କଲେ ଓ ନତ୍ୟ ଗୋପୀମାନଙ୍କ ପର ସଜ କର ରାସସ୍ଥଳୀକୁ ନେଇଗଲେ । ଚୌଷଠି ସହସ୍ର ଗୋପୀ ତାଙ୍କୁ ବାର ପାରଲେ ନାହିଁ । ନତ୍ୟରାସ ସ୍ଥଳରେ ଶ୍ରୀକୃଷ୍ଣ ଓ ଶ୍ରୀରାଧା ସମାନ ବେଶରେ ସଜ୍ଜିତ । କବଙ୍କ ଭାଷାରେ,

"ଅଙ୍ଗେ ଅଙ୍ଗେ ପ୍ରତଭେଦ ଏକ ଦେହ ସେ ଯେ
କମଳ କେଶର ପରେ କରଛନ୍ତି ବଜେ ।
ଶ୍ରୀକୃଷ୍ଣ ଶ୍ରୀଭୁଜ ଶ୍ରୀରାଧା ଶ୍ରୀଅଙ୍ଗ ଶୋଭା
ରାଧିକାଙ୍କ ଶ୍ରୀଭୁଜ ଶ୍ରୀକୃଷ୍ଣ ଅଙ୍ଗେ ଶୋଭା ।
ବେନ ଅଙ୍ଗେ ବାରଣ ନୋହଲା ଆଉ କେହ
କମଳ କେଶରେ ଛନ୍ତି ଏକ ଦେହେ ରହ ।

ଅଭେଦ ପୀରତି ବେନି ପ୍ରେମ ରସ ଘେନି
ଦୁଇ ଲୋକେ ବସିଣ କରନ୍ତି ଦେଖୁ ଧୁନି ।"

ସେହି ଦିବ୍ୟ ରାସସ୍ଥଳ ଅତ୍ୟନ୍ତ ଶୋଭାଯୁକ୍ତ । ଚତୁର୍ଦ୍ଦଳରେ ବହୁବେଦୀ, ଷଡ଼ଦଳରେ ପୁନଗର ଅଥବା ନିକୁଞ୍ଜ; ଅଷ୍ଟଦଳରେ ଅଷ୍ଟକନ୍ୟା ବିରାଜମାନ, ସ୍ୱର୍ଣ୍ଣର ଷୋଡ଼ଶ ଦଳରେ ରାଧାକୃଷ୍ଣଙ୍କର ଚଉଷଠି କଳାର ଲୀଳା ଅନୁଷ୍ଠିତ । ଗୋପୀମାନେ ବିବିଧ ବାଦ୍ୟଯନ୍ତ୍ର ବାଦନରେ ପ୍ରଭୁଙ୍କ ସେବାରେ ନିରତ । ଏହି ସମୟରେ ତ୍ରିପୁରା ସୁନ୍ଦରୀ ମାନବ ବିଷ୍ଣୁଙ୍କୁ ନେଇ ନୃତ୍ୟରଙ୍ଗରେ ମିଶାଇ ଦେଲେ । ମାତ୍ର ଗୋପୀମାନଙ୍କ କଟାକ୍ଷ, ବିଚିତ୍ର ବିଭ୍ରମ, ନୃତ୍ୟଗୀତ ବାଦ୍ୟ ଦେବଦୁର୍ଲ୍ଲଭ । ସେମାନଙ୍କର ଐକାନ୍ତିକ ନିଷ୍ଠାପର ପ୍ରେମ ଅର୍ପିତ ସଙ୍ଗୀତ ସେବା ମାନବ ବିଷ୍ଣୁଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ସେ ବିଚଳିତ ହେଲେ । ତାଙ୍କର ଚିତ୍ତ ବିଶୃଙ୍ଖଳା ଘଟିଲା । ଅନ୍ୟ ଗୋପୀମାନଙ୍କ ନୃତ୍ୟ ରଙ୍ଗରସରେ ସେ ମିଶିଯାଇ ନପାରି ବା'ରହୋଇ ପଡ଼ିଲେ । ନିତ୍ୟରାସର ଗୋପୀମାନଙ୍କ କାର୍ଯ୍ୟକଳାପ ସ୍ୱତନ୍ତ୍ର । କବିଙ୍କ ଭାଷାରେ,

"ଅଶେଷ ବ୍ରହ୍ମାଣ୍ଡେ ଯେତେ ଲୋକ ଛନ୍ତି ରହି
ଏ ଗୋପୀ ଭବନ ହାଦେ ନ ଜାଣନ୍ତି କେହି ।
ସର୍ବ କର୍ମ ସର୍ବ ଧର୍ମ-ଯୋଗ ଯେତୁ ସାଧି
ସେହୁ ଦେଖି ନପାରନ୍ତି ନିତ୍ୟସ୍ଥଳ ବିଧି ।"

ନିତ୍ୟସ୍ଥଳର ଗୋପୀମାନେ ନିଜ ନିଜ ଭିତରେ ବିଚାର କଲେ । ନିରାକାର ହରି ଧ୍ୟାନଯୋଗେ ପ୍ରକୃତ ଘଟଣା ଜାଣିପାରିଲେ । ତ୍ରିପୁରାଙ୍କୁ ଡାକି କ୍ରୋଧାନ୍ୱିତ ହୋଇ ସେ ତାଙ୍କୁ ଅଭିଶାପ ଦେଲେ । ମାନବ ବିଷ୍ଣୁଙ୍କ ପ୍ରତି ମମତାଶୀଳ ହୋଇ ରାସସ୍ଥଳକୁ ଆଣିଥିବାରୁ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରି ପାପର ଫଳ ଭୋଗ କରିବାକୁ ନିରାକାର ହରି କହିଲେ । ତ୍ରିପୁରାଙ୍କ ଅଂଶଯୁକ୍ତ ଗୋପାଙ୍ଗନାମାନେ ମଧ୍ୟ ତାଙ୍କ ସହିତ ମର୍ତ୍ତ୍ୟରେ ଜନ୍ମ ହେଲେ । ମାନବ ବିଷ୍ଣୁଙ୍କ ପ୍ରତି ତାଙ୍କର ଦୁର୍ବଳତା ପ୍ରକାଶ ପାଇଥିବାରୁ ସେ ପ୍ରିୟାରୂପେ ଜନ୍ମ ହେବେ ଓ ଶ୍ରୀକୃଷ୍ଣଙ୍କ ମଥାରେ ତୁଳସୀରୂପେ ଶୋଭା ପାଇବେ ।

ଦୀନକୃଷ୍ଣ ଦାସଙ୍କର ନାମରତ୍ନ ଗୀତାରେ ଅଷ୍ଟପାଟବଂଶୀଙ୍କର ଉଲ୍ଲେଖ ମାତ୍ର ନାହିଁ । ତୁଳସୀ ଅର୍ଥାତ୍ ତ୍ରିପୁରାଙ୍କର ମହତ୍ତ୍ୱ ଓ ଅବତାରତ୍ୱ ବର୍ଣ୍ଣିତ ହୋଇଅଛି । ନିତ୍ୟରାସସ୍ଥଳ ଦେବତାମାନଙ୍କ ପାଇଁ ମଧ୍ୟ ଅଗମ୍ୟ । ପୁଣି ମାନବ ବିଷ୍ଣୁ ନିତ୍ୟରାସସ୍ଥଳକୁ ଯିବା ଫଳରେ ଅଭିଶାପଗ୍ରସ୍ତ ହୋଇଛନ୍ତି । ରହସ୍ୟ

ମଞ୍ଜରୀରେ ରୁକ୍ମିଣୀ ନିତ୍ୟରସସ୍ଥଳ ଦର୍ଶନ କରିଛନ୍ତି ନିପୁରୀଙ୍କର ମନ୍ତ୍ର ସାଧନ ଶିକ୍ଷାଲାଭ ଫଳରେ । ନିପୁରୀ ଅଘଟନ ଘଟନ ପଟିୟସୀ ଯୋଗମାୟା ରୂପରେ ଚିତ୍ରିତା ହୋଇଛନ୍ତି; କିନ୍ତୁ ଅଭିଶାପର ଗ୍ଳାନି ତାହାଙ୍କ ଜୀବନରେ ଲଘୁ ହୋଇ-ନାହିଁ । ରହସ୍ୟମଞ୍ଜରୀରେ ନିପୁରୀଙ୍କ ଚରିତ୍ର ନିତ୍ୟ ତତ୍ତ୍ୱଜ୍ଞାନ ଆଦ୍ୟ ଶକ୍ତିରୂପେ କଳ୍ପିତ ହୋଇଅଛି । ତାଙ୍କୁ ନିଜଗତକାରିଣୀ ଗୁରୁର ସମ୍ମାନ ଦିଆଯାଇଛି; କିନ୍ତୁ ନାମଚିନ୍ତାମଣି ଗୀତାରେ ନିପୁରୀ ନିତ୍ୟସ୍ଥଳ ଦ୍ୱାରର ସେବିକା ମାତ୍ର । ଅବଶ୍ୟ ଏଥିରେ ତାଙ୍କ ଶକ୍ତିହାନି କରି ଚିତ୍ରଣ କରାଯାଇ ନାହିଁ । ସେ ସନ୍ତୁଷ୍ଟ ହୋଇ ବରଦାନ କରିଛନ୍ତି ମାନବ ବନ୍ଧୁଙ୍କୁ । ରହସ୍ୟମଞ୍ଜରୀରେ ଦେବଦୁର୍ଲଭ କଥାବସ୍ତୁ ସଂସ୍ଥାପନରେ କାବ୍ୟର ଗୁରୁତ୍ୱ ପ୍ରମାଣ କରିଛନ୍ତି । ନାମଚିନ୍ତାମଣି ଗୀତାରେ ଦୀନକୃଷ୍ଣଦାସ କେବଳ ଉପାଖ୍ୟାନର ସରଳ ନିରାଡ଼ମ୍ବର ବର୍ଣ୍ଣନା ମାତ୍ର ଗୋଟିଏ ଅଧ୍ୟାୟ ମଧ୍ୟରେ ସୀମିତ କରି ଦେଇଅଛନ୍ତି ।

## କଥାବସ୍ତୁରେ ପୁରାଣ-ପ୍ରଭାବ :—

ରହସ୍ୟମଞ୍ଜରୀର କଥାବସ୍ତୁ କେଉଁ ପୁରାଣରେ ବର୍ଣ୍ଣିତ ହୋଇଅଛି, କବି ତାହା ବର୍ଣ୍ଣନା କରି ନାହାନ୍ତି । ତାଙ୍କର ବକ୍ତବ୍ୟରୁ ଜଣାଯାଏ, ଯଦିଓ ଏହି ବିଷୟ କେଉଁଠାରେ ବର୍ଣ୍ଣନା କରାଯାଇଛି; ତାହାର ବିସ୍ତୃତ, ଶୃଙ୍ଖଳିତ ଓ ସମ୍ପୂର୍ଣ୍ଣ ବିବରଣୀ କେଉଁଠାରେ ପ୍ରକାଶ ପାଇ ନାହିଁ । ମୂଳକଥାକୁ ସମ୍ପ୍ରସାରିତ କରି କବି କେତେ ପ୍ରକାରରେ ବର୍ଣ୍ଣନା କରିଛନ୍ତି । ବିଭିନ୍ନ ଶାସ୍ତ୍ର ପୁରାଣରୁ ତଥ୍ୟ ଆହରଣ କରି ସ୍ୱଶକ୍ତି ବଳରେ ଯେ ଯେତେ ବର୍ଣ୍ଣନା କରିପାରିଲି ସେ ସେତେ ରହସ୍ୟ-ମଞ୍ଜରୀର ବିଚିତ୍ର ରସରେ ପାଠକକୁ ମୁଗ୍ଧ କଲି । କବି କେଉଁଠାରୁ ବିଷୟ ଗ୍ରହଣ କରିଛନ୍ତି ସେ ସମ୍ବନ୍ଧରେ କୌଣସି ସୂଚନା ଦେଇ ନାହାନ୍ତି ।

କବି ବୃନ୍ଦାବନଦାସ ଗୋପୀଚନ୍ଦନ କାବ୍ୟରେ ଉଲ୍ଲେଖ କରିଛନ୍ତି,

"କୃଷ୍ଣ ଅବତାରେ ପଦ୍ମପୁରାଣର କଥା
ଦ୍ୱାରକାରେ ଗୋପୀଚନ୍ଦନର କି ବେବସ୍ଥା ହେ ।
ଗୋପକାହିଂ ଦ୍ୱାରକା ଯେ, କେତେକ ଅନ୍ତର
କେମନ୍ତ ଚରିତ୍ର ଆଗ୍ୟାଂଦେବା ଦାମୋଦର ହେ ।"

( ୧ । ୫-୬ )

କବି ପଦ୍ମପୁରାଣରୁ ବିଷୟବସ୍ତୁ ଗ୍ରହଣ କରିଥିବାର ଜଣାଯାଏ । ପଦ୍ମ-ପୁରାଣରେ ଦନ୍ତବକ୍ରର ମୃତ୍ୟୁ ସାଧନ କରି ଶ୍ରୀକୃଷ୍ଣ ଗୋକୁଳରେ ଗୋପୀମାନଙ୍କ

ସହିତ ମିଳିତ ହୋଇ ରାସକ୍ରୀଡ଼ା କରିଥିଲେ । ମାତ୍ର ଗୋପୀମାନେ ଦ୍ୱାରକାକୁ ଯାଇ ଶରତ କାଳରେ ଶ୍ରୀକୃଷ୍ଣଙ୍କ ସହ ରାସକ୍ରୀଡ଼ା କରିବା ବିଷୟ ଉଲ୍ଲିଖିତ ହୋଇ ନାହିଁ । ନିତ୍ୟ ରାସସ୍ଥଳ ଓ ନିିପୁରୀଙ୍କ ବିଷୟ ପଦ୍ମପୁରାଣରେ ଉଲ୍ଲେଖ କରାଯାଇଅଛି । ନିତ୍ୟ ରାସସ୍ଥଳରେ ଦ୍ୱାରରକ୍ଷିକା ହୋଇଛନ୍ତି ନିିପୁରସୁନ୍ଦରୀ ।

କୌଣସି କବି ପଦ୍ମପୁରାଣରୁ ବିଷୟବସ୍ତୁ ଗ୍ରହଣ କରିଥିବାର ଜଣାଯାଏ ନାହିଁ । ବ୍ରହ୍ମ ବୈବର୍ତ୍ତ ପୁରାଣରୁ ଜଣାଯାଏ ଯେ, ଶ୍ରୀକୃଷ୍ଣ କଂସ ନିଧନ ପାଇଁ ଗୋପପୁର ତ୍ୟାଗ କରି ମଥୁରା ଗିବା ପରେ ଥରେ ମାତ୍ର ଦ୍ୱାରକାରୁ ଗୋପ ନଗର ଆସିଥିଲେ ବିରହିଣୀ ରାଧାଙ୍କୁ ସାନ୍ତ୍ୱନା ଓ ଜ୍ଞାନଗର୍ଭିକ ଉପଦେଶ ଦେବାପାଇଁ । ସେତେବେଳେ ସେ ରାଧା ଓ ଅନ୍ୟ ଗୋପୀମାନଙ୍କ ସହ ରାସକ୍ରୀଡ଼ା କରି ବ୍ରଜ-ବାସୀଙ୍କ ସହିତ ଗୋଲୋକ ଧାମକୁ ଯାଇଥିଲେ । ଏଠାରେ ଦ୍ୱାରକାର ଅଷ୍ଟ-ପାଟବଂଶୀଙ୍କ ବିଷୟ କୌଣସି ପ୍ରାଧାନ୍ୟ ଲାଭ କରି ନାହିଁ ।

ଖିଲ ହରିବଂଶରେ ବର୍ଣ୍ଣନା କରାଯାଇଛି ଯେ, ଶ୍ରୀକୃଷ୍ଣ 'ହଂସଡ଼ିମ୍ଭକ' ଅସୁରକୁ ହତ୍ୟାକରି ଗୋବର୍ଦ୍ଧନ ଗିରିରେ ବଳଦେବଙ୍କ ସହିତ କିଛିକାଳ ବିଶ୍ରାମ ନେଇଥିଲେ । ସେତେବେଳେ ନନ୍ଦ, ଯଶୋଦା, ଗୋପୀ ଓ ଗୋପାଳମାନେ ଶ୍ରୀକୃଷ୍ଣଙ୍କୁ ବିଭିନ୍ନ ଖାଦ୍ୟ ସହ ଭେଟିବା ପାଇଁ ଯାଇଥିଲେ ।

ସ୍କନ୍ଦ ପୁରାଣର ପ୍ରଭାସଖଣ୍ଡ ଦ୍ୱାରକା ମାହାତ୍ମ୍ୟ ପ୍ରକରଣରେ କୁହାଯାଇଛି ଯେ ଶ୍ରୀକୃଷ୍ଣ କଂସ ବିନାଶ କରି ଉଗ୍ରସେନଙ୍କୁ ସିଂହାସନରେ ବସାଇଲା ପରେ ଥରେ ନନ୍ଦ, ଯଶୋଦା ଓ ଗୋପୀମାନଙ୍କୁ ସ୍ମରଣ କରି ଉଦ୍ଧବଙ୍କୁ ସେମାନଙ୍କ ନିକଟକୁ ପଠାଇଥିଲେ । ଉଦ୍ଧବଙ୍କୁ ଦେଖି ନନ୍ଦ ଯଶୋଦା ଓ ବିରହକ୍ଷୀଣା ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଦେଖିବା ପାଇଁ ବିଶେଷ ଉତ୍କଣ୍ଠା ପ୍ରକାଶ କଲେ । ଉଦ୍ଧବ ସେମାନଙ୍କ ଦୁଃଖ ସହି ନ ପାରି ସେମାନଙ୍କୁ ସଙ୍ଗରେ ନେଇ ମଧୁପୁର ନିକଟରେ ପହଞ୍ଚିଲେ । ଗୋପୀମାନେ ସେଠାରେ ରହିଲେ । ଉଦ୍ଧବ ଶ୍ରୀକୃଷ୍ଣଙ୍କୁ ସମ୍ବାଦ ଦେବାକୁ ଗଲେ । ଶ୍ରୀକୃଷ୍ଣଙ୍କୁ ଦେଖିବା ମାତ୍ରେ ଗୋପୀମାନେ ଉଚ୍ଚ ସ୍ୱରରେ ରୋଦନ କଲେ । ଶ୍ରୀକୃଷ୍ଣ ସେମାନଙ୍କୁ ଜ୍ଞାନ ଉପଦେଶ ଦେଇ ଗୋପପୁରକୁ ପଠାଇଦେଲେ ।

ଭାଗବତର ଦଶମସ୍କନ୍ଧରେ ଗୋପୀମାନଙ୍କ ସହିତ ଶ୍ରୀକୃଷ୍ଣଙ୍କର ପୁନର୍ମିଳନ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି; କିନ୍ତୁ ରାସଲୀଳା କଥା କୁହାଯାଇ ନାହିଁ । ତଥାପି ଭାଗବତର ପ୍ରଭାବରେ ରହସ୍ୟମଞ୍ଜରୀର ପୌରାଣିକ ଅଂଶ ସୃଷ୍ଟି ହେବାର ସମ୍ଭାବନା ସ୍ୱୀକୃତ । ଭାଗବତରେ ରାଧା ବା ଅଷ୍ଟପାଟବଂଶୀ ଅନ୍ତରାଳରେ ରହିଯାଇଛନ୍ତି ଏବଂ

ଗୋପୀ ପ୍ରେମର ସାର୍ବଭୌମତ୍ୱ ପ୍ରତିପାଦିତ ହୋଇଅଛି, ଦେହାଭିମାନୀ ତପସ୍ୱୀ ବା ନିବୃତ୍ତାଭିମାନୀ ଜ୍ଞାନୀଙ୍କଠାରୁ ଗୋପୀତ୍ୱକୁ ଅଧିକ ଗୌରବ ପ୍ରଦାନ କରାଯାଇ ଅଛି । ଏପରିକି, ଜଗଜ୍ଜନନୀ ମହାଲକ୍ଷ୍ମୀଙ୍କର ନ୍ୟୂନତା ପ୍ରତିପାଦନ କରି ଗୋପୀ-ମାନଙ୍କୁ ଉଚ୍ଚ ଆସନ ଦିଆଯାଇଅଛି । ଭାଗବତର ଗୋପୀମାନଙ୍କର ପ୍ରେମପୂରିତ ଭାବର ଶ୍ରେଷ୍ଠତ୍ୱ ରହସ୍ୟମଞ୍ଜରୀର କଥାବସ୍ତୁ ରଚନାଲାଗି ବହୁଭାବରେ ସହାୟକ ହୋଇଅଛି ।

ରହସ୍ୟମଞ୍ଜରୀରେ ବର୍ଣ୍ଣିତ ମଥୁରା ଗମନ ପରେ ରାଧା ଓ ଗୋପାଙ୍ଗନାଙ୍କ ସହ ଶ୍ରୀକୃଷ୍ଣଙ୍କର ମିଳନ ଓ ରାସକ୍ରୀଡ଼ା ବିଷୟରେ ପୁରାଣମାନଙ୍କ ମତର ଐକ୍ୟ ପରି-ଲକ୍ଷିତ ହୁଏ ନାହିଁ । ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡ ୫୯ ଅଧ୍ୟାୟରେ କୁହାଯାଇଛି ସୁଦାମ ରାଧାଙ୍କୁ ଅଭିଶାପ ଦେଲେ ।

"ଭବଗୋପୀ ଗୋପକନ୍ୟା ଗୋପିଭିଃ ସ୍ୱାଭିରେବଃ
ତତସ୍ତେ କୃଷ୍ଣ ବିଚ୍ଛେଦୋ ଭବିଷ୍ୟତି ଶତଂ ସମାଃ ।"

ଅର୍ଥାତ୍, ତୁମ୍ଭେ ଗୋପୀରୂପରେ ମର୍ତ୍ତ୍ୟରେ ଜନ୍ମଗ୍ରହଣ କର । ସେଠାରେ ତୁମ୍ଭର କୃଷ୍ଣଙ୍କ ସହ ଶତବର୍ଷବ୍ୟାପୀ ବିଚ୍ଛେଦ ଘଟୁ । ଏହି ବିଷୟକୁ ସ୍ୱୀକାର କରି ଏକଶତ ବର୍ଷ ପରେ ଶ୍ରୀକୃଷ୍ଣ ଜନ୍ମଖଣ୍ଡର ୧୨୬ ଅଧ୍ୟାୟରେ ପୁରାଣକାର ରାଧାକୃଷ୍ଣଙ୍କର ପୁନର୍ମିଳନ କରାଇଛନ୍ତି । ୧୨୭ ଅଧ୍ୟାୟରେ ଉଭୟଙ୍କର ବିହାର ଓ ୧୨୮ ଅଧ୍ୟାୟରେ ଗୋକୁଳବାସୀଙ୍କ ସହ ଶ୍ରୀରାଧାଙ୍କ ଗୋଲୋକଗମନ ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି ।

ବ୍ରହ୍ମ ବୈବର୍ତ୍ତ ପୁରାଣରେ ମଥୁରାଗମନାନ୍ତର ପୁନର୍ମିଳନ ସମ୍ବନ୍ଧରେ କୌଣସି ଉଲ୍ଲେଖ ଦେଖାଯାଏ ନାହିଁ । ପଦ୍ମପୁରାଣରେ ଦନ୍ତବକ୍ର ବଧ ପରେ ଶ୍ରୀକୃଷ୍ଣଙ୍କର ଗୋପୀଙ୍କ ସହ ପୁନର୍ମିଳନ ଓ ପୁନଃରାସକ୍ରୀଡ଼ାର ବର୍ଣ୍ଣନା ରହିଛି ।

"କାଳିନ୍ଦ୍ୟା ପୁଳିନେ ରମ୍ୟେ ପୁଣ୍ୟ ବୃକ୍ଷ ସମାବୃତ
ଗୋପନାରୀ ଭିରନିଶଂ କ୍ରୀଡ଼ୟାମାସ କେଶବ ।"

ଅର୍ଥାତ୍, ଯମୁନା ତୀରରେ ପୁଣ୍ୟବୃକ୍ଷ ସମାବୃତ ସ୍ଥଳୀରେ ଶ୍ରୀକୃଷ୍ଣ ଗୋପ-ନାରୀଙ୍କ ସହିତ କ୍ରୀଡ଼ାରତ ।

ଭାଗବତରେ ଗୋପୀଙ୍କ ସହିତ ଶ୍ରୀକୃଷ୍ଣଙ୍କର କୁରୁକ୍ଷେତ୍ରରେ ମିଳନ ହୋଇ-ଥିବାର ଉଲ୍ଲେଖ ରହିଛି, ମାତ୍ର ରାସଲୀଳାର ବିବରଣ ନାହିଁ । ଏହି ପ୍ରସଙ୍ଗରେ ଶ୍ରୀମଦ୍ ଭାଗବତ, ଦଶମସ୍କନ୍ଧ, ୮୨ ଅଧ୍ୟାୟ ଦ୍ରଷ୍ଟବ୍ୟ ।

ହରିବଂଶର ହରିବଂଶ ଭବିଷ୍ୟତ ପର୍ବର ୫୮ ଅଧ୍ୟାୟରେ ନନ୍ଦ, ଗୋପୀଙ୍କ ସହିତ ଶ୍ରୀକୃଷ୍ଣଙ୍କର ପୁନର୍ମିଳନ ବର୍ଣ୍ଣିତ ହୋଇଅଛି । ସେଠାରେ ରାସଲୀଳାର ଅବତାରଣା କରାଯାଇ ନାହିଁ ।

ରାଧା ତନ୍ତ୍ରର ବର୍ଣ୍ଣନା ଅନୁସାରେ ପଦ୍ମିନୀ ରାଧା ନିଜର ରୂପପରି ଏକ କୃତ୍ରିମ ରାଧା ରଚନା କରିଥିଲେ । ସେ ରାଧା ବୃଷଭାନୁଙ୍କ ଗୃହରେ ସର୍ବଦା ବାସ କରୁଥିଲେ । ରାଧାଙ୍କର ଶ୍ରୀକୃଷ୍ଣଙ୍କ ସହିତ ବିରହ ନାହିଁ, କେବଳ କୃତ୍ରିମ ରାଧାଙ୍କର ଶ୍ରୀକୃଷ୍ଣଙ୍କ ସହିତ ବିଚ୍ଛେଦ ଘଟିଛି । ସେଥିପାଇଁ ଅଚ୍ୟୁତାନନ୍ଦଙ୍କର ଶୂନ୍ୟ ସଂହିତାରେ କୁହାଯାଇଛି, "କ୍ଷଣେ ମୁଁ ଯେ ନଛୁଡ଼ଇ ରାଧିକାର ସଙ୍ଗ ।"

ବୃହଦ୍ ବିଷ୍ଣୁ ପୁରାଣ ପ୍ରଭୃତିରେ ଶ୍ରୀକୃଷ୍ଣ ଗୋପୀମାନଙ୍କର ବିରହ ବର୍ଣ୍ଣ ଶ୍ରବଣରେ ଶୋକାକୁଳ ହେବା ବିଷୟ ନାନା ଭାବରେ ବାରମ୍ବାର ବର୍ଣ୍ଣିତ ହୋଇ ଅଛି । ଯେଉଁ ସମୟରେ ଶ୍ରୀକୃଷ୍ଣ ବ୍ରଜକୁ ପ୍ରତ୍ୟାବର୍ତ୍ତନ କରନ୍ତି ବ୍ରଜବାସୀଗଣ ଶ୍ରୀକୃଷ୍ଣଙ୍କର ମଥୁରା ଗମନ ଘଟଣା ବିସ୍ମୃତ ହୋଇଯାଆନ୍ତି ।

ପୁରାଣମାନଙ୍କରେ ଶ୍ରୀକୃଷ୍ଣ, ଶ୍ରୀରାଧା ଓ ଗୋପୀମାନଙ୍କର ମିଳନ ବିରହ ଓ ରାସକ୍ରୀଡ଼ା ନାନାରୂପରେ ଉଚ୍ଚାରିତ । ଏହି ବୈଶିଷ୍ଟ୍ୟ ଦୃଷ୍ଟିରୁ ଦେବଦୁର୍ଲଭ ନିଜ ଇଚ୍ଛାନୁଯାୟୀ ବିଭିନ୍ନ ବିଷୟର ଏକତ୍ର ସମାବେଶରେ ଅଭିନବ ବିଷୟବସ୍ତୁ ସଂଯୋଜନା କରିଛନ୍ତି । କାବ୍ୟର ଶେଷ ପର୍ଯ୍ୟାୟରେ ସେ କହିଛନ୍ତି,

"ରହସ୍ୟ ମଞ୍ଜରୀ ଏ ବିଚିତ୍ରମୟ ରସ
ଏ ପୁଣି ଜାଣିମ ଯେହୁ ବିବେକ ପୁରୁଷ ।
ଅବିବେକ ବୋଲିବ ଏ କେଉଁ ପାଠେ ଥିଲା
ଥିଲା ଯେବେ କବି କିଁପା ଆଗରୁଁ ନ କଲା ।
ବିବେକୀ ବୋଲିବେ ଏ ଗୁପତେ ଥିଲା ରହି
ସରସ୍ୱତୀ ଭଣ୍ଡାରେ ଗୁପତେ ଥିଲା ଥୋଇ ।"

ରହସ୍ୟ ମଞ୍ଜରୀରେ କବି ଦେବଦୁର୍ଲଭ ବିଭିନ୍ନ ପୁରାଣର ବିଭିନ୍ନ ବିଷୟକୁ ଏକତ୍ର ଗ୍ରଥିତ କରି ଏକ କାବ୍ୟିକ ଆଖ୍ୟାୟିକ ରଚନା କରିଛନ୍ତି । ଏହି ପୁରାଣ ଓ କାବ୍ୟର ଏକ ମଧ୍ୟବର୍ତ୍ତୀ ରୂପ ଲାଭ କରିଅଛି ।

କବି ଗୋବିନ୍ଦ ଦାସ ତାଙ୍କ ରଚିତ ଗୋପୀଚନ୍ଦନର ବିଷୟବସ୍ତୁ ପଦ୍ମପୁରାଣରୁ ଗୃହୀତ ହୋଇଅଛି ବୋଲି ନିର୍ଦ୍ଦେଶ ଦେଇଛନ୍ତି, କିନ୍ତୁ କବି ପଦ୍ମ ପୁରାଣରୁ ବିଷୟ ବସ୍ତୁ ଗ୍ରହଣ କରିବାର କୌଣସି ପ୍ରମାଣ ମିଳି ନାହିଁ । ପଦ୍ମପୁରାଣରେ ଗୋପୀଚନ୍ଦନ ନାମରେ ଦୁଇଗୋଟି ଅଧ୍ୟାୟ ଦେଖିବାକୁ ମିଳେ, ମାତ୍ର ସେଥିରେ ଗୋପୀଚନ୍ଦନ

ବା ଉଲଜ ଧାରଣର ବାଧ ବିଷୟରେ ଉଲ୍ଲେଖ ରହିଛି । ତେଣୁ ଗୋପୀଚନ୍ଦନ କଥାବସ୍ତୁର କୌଣସି ପୌରାଣିକ ସତ୍ୟତା ଥିବାର ମତ ସମାଲୋଚକମାନେ ଦେଇ ନାହାନ୍ତି । କବି ଗୃନ୍ଦାବନ ପଦ୍ମପୁରାଣର ପାତାଳଖଣ୍ଡରେ ବର୍ଣ୍ଣିତ ନାରଦଙ୍କର ନୃତ୍ୟରାସ ଦର୍ଶନ ଅଭିଳାଷ, ରାସେଶ୍ୱର ନାରାୟଣଙ୍କ ନିର୍ଦ୍ଦେଶରେ ଅମୃତକୁଣ୍ଡରେ ସ୍ନାନ ଓ ସ୍ନାନାନ୍ତେ ସ୍ତ୍ରୀ ବେଶ ଧାରଣ କରି ନୃତ୍ୟରାସରେ ଯୋଗଦାନ ପ୍ରଭୃତି ବିଷୟ ଓ ଅନ୍ୟାନ୍ୟ କେତେକ ପୁରାଣରେ ଥିବା ଶ୍ରୀକୃଷ୍ଣ ଗୋପାଙ୍ଗନା ମିଳନ ବୃତ୍ତାନ୍ତକୁ ମିଶାଇ ଏକ କାଳ୍ପନିକ ବିଷୟବସ୍ତୁର ଅବତାରଣା କରିଛନ୍ତି । ଗୋପୀମାନଙ୍କର ପ୍ରେମଭକ୍ତିରେ ମୋହିତ ହୋଇ ସେମାନଙ୍କ ଗୌରବ ବୃଦ୍ଧି ପାଇଁ କବି ଏକପ୍ରକାର କାଳ୍ପନିକତାର ଆଶ୍ରୟ ଗ୍ରହଣ କରିଛନ୍ତି । ପ୍ରକୃତରେ କୃଷ୍ଣଚନ୍ଦ୍ର ଦ୍ୱାରକା ଯୁବତୀମାନଙ୍କୁ ନେଇ ନୃତ୍ୟସ୍ଥଳୀକୁ ଯାତ୍ରା କରିବା କୌଣସି ପୁରାଣରେ ବର୍ଣ୍ଣିତ ହୋଇ ନାହିଁ ।

ରହସ୍ୟମଞ୍ଜରୀରେ ଦେବଦୁର୍ଲଭ ଯେଉଁ ଆଖ୍ୟାୟିକା ବର୍ଣ୍ଣନା କରିଛନ୍ତି ତାର କଥାବସ୍ତୁ କୌଣସି ନିର୍ଦ୍ଦିଷ୍ଟ ପୁରାଣରୁ ଗୃହୀତ ହୋଇ ନାହିଁ । ଶୂନ୍ୟସଂହିତା ବା ଗୋପୀଚନ୍ଦନ ପ୍ରଭୃତିର ବିଷୟବସ୍ତୁ ଆଂଶିକ ଭାବରେ ଗ୍ରହଣ କରି ରାଗମାର୍ଗ ବା ପ୍ରେମ ଭକ୍ତିର ଉତ୍କର୍ଷ ପ୍ରତିପାଦନ ଲକ୍ଷ୍ୟରେ ଦେବଦୁର୍ଲଭ ରହସ୍ୟମଞ୍ଜରୀର ପରିକଳ୍ପନା କରିଛନ୍ତି । ରହସ୍ୟ ମଞ୍ଜରୀର ବିଚିତ୍ର ରସ ନୂତନ ସ୍ୱାଦର କାବ୍ୟ ।

ଚରିତ୍ର ବିଚାର —

ଶ୍ରୀକୃଷ୍ଣ :—ଶ୍ରୀ ଚୈତନ୍ୟ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ପରମେଶ୍ୱର ଜ୍ଞାନକରି ଶ୍ରୀକୃଷ୍ଣ ଉପାସନା ଓ ଶ୍ରୀକୃଷ୍ଣ ନାମ ସଂକୀର୍ତ୍ତନର ପ୍ରବର୍ତ୍ତନ କରିଥିଲେ । ତାଙ୍କର ଉପାସନାର ଅର୍ଥ, ଭକ୍ତିଶ୍ରଦ୍ଧା ସହିତ ପ୍ରେମପ୍ରୀତି ଦେଇ ଶ୍ରୀକୃଷ୍ଣଙ୍କର ପୂଜା କରିବା ବିଧେୟ । ପୁଣି, ଶ୍ରୀକୃଷ୍ଣଙ୍କର ଆରାଧନା ରାଧା ଭାବରେ ଭାବିତ ନ ହେଲେ ଅର୍ଥାତ୍ ନିରହଙ୍କାର ଭାବ ପୋଷଣ ନ କଲେ ସମ୍ଭବ ହୁଏ ନାହିଁ । ଶ୍ରୀଚୈତନ୍ୟ ରାଧା ଭାବରେ ଆବିଷ୍ଟ ହୋଇ ଶ୍ରୀକୃଷ୍ଣଙ୍କର ଆରାଧନା କରିଥିଲେ । ବିଚ୍ଛେଦ କାତରା ବିରହିଣୀ ଶ୍ରୀରାଧାଙ୍କ ସଦୃଶ ସେ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାର ବ୍ୟାକୁଳ ଅଭିଳାଷ ନେଇ ମଥୁରା, ବୃନ୍ଦାବନ ଓ ଶ୍ରୀକ୍ଷେତ୍ରର ପଥଧାରରେ କାନ୍ଦି କାନ୍ଦି ବୁଲୁଥିଲେ । ସବୁ ସ୍ଥାନରେ ସେ ଖୋଜୁଥିଲେ ପୀତାମ୍ବର, ବେଣୁଧାରୀ ଶ୍ରୀକୃଷ୍ଣଙ୍କୁ । ବ୍ୟାକୁଳ କଣ୍ଠରେ କୃଷ୍ଣନାମ କୀର୍ତ୍ତନ ସେ କରୁଥିଲେ । ତାଙ୍କ ପୂର୍ବରୁ ରାଧାକୃଷ୍ଣ ଚେତନାର ପ୍ରତିଷ୍ଠା ଏପରି ବ୍ୟାପକ ଓ ଜନପ୍ରିୟ ହୋଇପାରି ନଥିଲା । ପୂର୍ବ କାଳର ରାଧାକୃଷ୍ଣଙ୍କ ଅପେକ୍ଷା ଏହି ଯୁଗର ରାଧାକୃଷ୍ଣଙ୍କ ଗରିମାରେ ଭିନ୍ନତା

ଆରୋପିତ ହେବାର ଦେଖାଗଲା । ଏହି ପାର୍ଥକ୍ୟର ପ୍ରକୃତ ସ୍ୱରୂପ ନିର୍ଦ୍ଦେଶ କରିବାକୁ ହେଲେ ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କର ଚରିତ୍ରର କ୍ରମବିକାଶର ସଂକ୍ଷିପ୍ତ ବିବୃତି ଆବଶ୍ୟକ ।

ହିନ୍ଦୁର ବିଶ୍ୱାସ—ଶ୍ରୀକୃଷ୍ଣ ମାନବ ନୁହନ୍ତି । ସେ ଈଶ୍ୱରଙ୍କର ଅବତାର । ଶ୍ରୀକୃଷ୍ଣଙ୍କ କଥା ଅତି ପ୍ରାଚୀନ ଓ କାଳକ୍ରମେ ତାହା ରୂପାନ୍ତରିତ ହୋଇଅଛି । ମହାଭାରତରେ ଶ୍ରୀକୃଷ୍ଣ ମନୁଷ୍ୟତ୍ୱର ଚରମ ଆଦର୍ଶ । ମହର୍ଷି ଚରିତ୍ରର ଆଦର୍ଶର ପୂଜାରୀ । ଆଦର୍ଶ ମନୁଷ୍ୟର ଉପାସନା କରିବାର ଫଳ ସ୍ୱରୂପ ଶ୍ରୀକୃଷ୍ଣ କ୍ରମେ ଉପାସ୍ୟ ଦେବତାରେ ପରିଣତ ହୁଅନ୍ତି । ପୁରାଣ ଅନୁସାରେ ସେ ଗୋଲୋକ ବିହାରୀ ବିଷ୍ଣୁଙ୍କର ଅବତାର । ତାଙ୍କର ଏହି ଅବତାରତ୍ୱ ଶ୍ରୀମଦ୍‌ଭଗବତ୍ ଗୀତାରେ ସର୍ବ ପ୍ରଥମେ ଅଭିବ୍ୟକ୍ତ । ତାପରେ ଭାଗବତ, ବିଷ୍ଣୁ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରଭୃତିରେ ସେ ସୃଷ୍ଟି, ସ୍ଥିତି ପ୍ରଳୟଙ୍କାରୀ, ମୋହନ ବଂଶୀଧାରୀ ପରମେଶ୍ୱର ରୂପେ ପୂଜିତ । "କୃଷ୍ଣସ୍ତୁ ଭଗବାନ ସ୍ୱୟଂ"—ଏହାହିଁ ଭକ୍ତର ଦୃଢ଼ ବିଶ୍ୱାସ । ସେ ସର୍ବପାପ ସଂସ୍ପର୍ଶଶୂନ୍ୟ, ନିର୍ବିକାର, ନିର୍ବିଶେଷ, ତ୍ରିଗୁଣାତୀତ ।

ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ଶ୍ରୀକୃଷ୍ଣ ଆମ ସମକ୍ଷରେ ଭିନ୍ନ ରୂପରେ ପ୍ରକଟିତ । ସେ ହେଉଛନ୍ତି କେବଳ ରାଧାବଲ୍ଲଭ—ରାଧାଙ୍କ ସହିତ ଗଭୀର ପ୍ରଣୟ ପାଶରେ ଆବଦ୍ଧ । ମନୁଷ୍ୟ ହୃଦୟରେ ଯେତେଗୁଡ଼ିଏ ବୃତ୍ତି ଅଛି, ତନ୍ମଧ୍ୟରୁ ପ୍ରଣୟବୃତ୍ତି ସର୍ବାଧିକ ଆକର୍ଷଣୀୟ । ମନୁଷ୍ୟର ମନ ପ୍ରେମର ମାଧୁର୍ଯ୍ୟରେ ଯେପରି ଆନ୍ଦୋଳିତ ହୁଏ, ଅନ୍ୟ କୌଣସି ବୃତ୍ତି ସେପରି ପ୍ରତିଷ୍ଠାବନ୍ତ ନୁହେଁ । ପ୍ରେମମୟ ଶ୍ରୀକୃଷ୍ଣଙ୍କ ସହିତ ରାସେଶ୍ୱରୀ ରାଇଙ୍କର ମାଧୁର୍ଯ୍ୟଲୀଳା ଏହି ଦୃଷ୍ଟିରୁ ପ୍ରତିଷ୍ଠିତ ।

ମନ୍ଦିରକର ଶ୍ରୀକୃଷ୍ଣ ହିଁ ନୀଳାଚଳର ଶ୍ରୀଜଗନ୍ନାଥ । ବୈଷ୍ଣବ ଗ୍ରନ୍ଥରେ କୁହାଯାଇଛି ଯେ ମହାମନ୍ତ୍ରରେ ଧ୍ୟାନ ଆତ୍ମା ସ୍ୱୟଂ ଶ୍ରୀକୃଷ୍ଣ ହିଁ ନୀଳାଚଳର ଶ୍ରୀଜଗନ୍ନାଥ । ପୁଣି, ମହାବିଷ୍ଣୁ ବା ନିତ୍ୟକୃଷ୍ଣ ହିଁ ଶ୍ରୀଜଗନ୍ନାଥ । ସହସ୍ରାର ପଦ୍ମମଧ୍ୟରେ ନିତ୍ୟ ରାଧାକୃଷ୍ଣଙ୍କର ରାସଲୀଳା ଲାଗି ରହିଛି । ପ୍ରଭୁ ଦୁଷ୍ଟ ଦମନ କରିବା ପାଇଁ ମର୍ତ୍ତ୍ୟରେ ଅବତାର ଗ୍ରହଣ କରିଥିଲେ । ଏଠାରେ ରାଧାକୃଷ୍ଣ ଲୀଳା କରୁଛନ୍ତି ଏବଂ ତାହା ଦୃଶ୍ୟମାନ ନୁହେଁ । ଏହି ଲୀଳା ଅନାଦି କାଳ ପର୍ଯ୍ୟନ୍ତ ଲାଗିରହିଛି ଓ ରହିଥିବ ମଧ୍ୟ । କୋଟିଯୁଗ ବିତିଗଲେ ମଧ୍ୟ ଏହାର ଅବସାନ ନାହିଁ ।

ଭଗବତ୍ ଗୀତା ବର୍ଣ୍ଣିତ ଅବତାର ଲୀଳାରେ ଭଗବାନଙ୍କର ସ୍ୱଭାବରେ ଦୁଇଗୋଟି ଭାବ ଲକ୍ଷିତ ହୁଏ—ଗୋଟିଏ କଠୋର, ଅପରଟି କୋମଳ । ଏକ

ପକ୍ଷରେ ସେ ଦୁଷ୍ଟର ଦମନ, ଶିଷ୍ଟର ପାଳନ ଓ ଦୁଷ୍କୃତମାନଙ୍କର ଶାସ୍ତିବିଧାନ କରନ୍ତି; ଦ୍ୱାରକାର ଅଧିପତି ଭାବରେ ସକଳ ରାଜକୀୟ ବିଳାସ ବ୍ୟସନରେ ଅଭ୍ୟସ୍ତ, ଦୁର୍ଦ୍ଦମନୀୟ ବୀର, ବିଚକ୍ଷଣ ରାଜନୀତିଜ୍ଞ, ପ୍ରବଳ ପ୍ରତାପାନ୍ୱିତ ମହାଶକ୍ତି-ଶାଳୀ—ଏସବୁ ଐଶ୍ୱର୍ଯ୍ୟ । ଅନ୍ୟ ପକ୍ଷରେ, ସେ ପ୍ରେମମୟ, ତାଙ୍କର କରୁଣାରେ ଦେବଦାନବ ବିଗଳିତ, ସେ ଅନନ୍ତ ପ୍ରେମମୟ, ପରମସୁନ୍ଦର, ବୃନ୍ଦାବନର ଗୋପାଙ୍ଗନା ଓ ଶ୍ରୀରାଧାଙ୍କ ସହିତ ରାସକ୍ରୀଡ଼ାରେ ରସୋଜ୍ଜ୍ୱଳ—ଏସବୁ ମାଧୁର୍ଯ୍ୟ ।

ଭାଗବତ ପ୍ରଭୃତି ପୁରାଣ ଐଶ୍ୱର୍ଯ୍ୟ-ପ୍ରଧାନ । ବୈଷ୍ଣବ ପଦାବଳୀ ଓ ଶ୍ରୀଚୈତନ୍ୟଙ୍କର ଚନ୍ଦ୍ରାଚେତନାରେ ମାଧୁର୍ଯ୍ୟର ପ୍ରକାଶ । ଗୌଡ଼ୀୟ ବୈଷ୍ଣବମାନ-ଙ୍କର ପ୍ରଧାନ କାବ୍ୟ କବିତାରେ ଶ୍ରୀକୃଷ୍ଣଙ୍କର ସୁମଧୁର ବଂଶୀବାଦନ, କୁସୁମିତ କଦମ୍ବକୁଞ୍ଜ, ଯମୁନାତଟ, ଗୋପାଙ୍ଗନାଙ୍କ ସହିତ ପ୍ରଣୟ ବିଳାସ, ଶ୍ରୀରାଧାଙ୍କ ସହିତ ଗୋପନରେ ପ୍ରେମମିଳନର ବିଚିତ୍ର ପ୍ରେମଲୀଳା ବର୍ଣ୍ଣିତ ।

ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ଉଭୟ ଭାବରେ ଦେବତାଙ୍କର ଆରାଧନା କରିଯାଇ-ପାରେ; କିନ୍ତୁ ଐଶ୍ୱର୍ଯ୍ୟରେ ଭକ୍ତ ଭଗବାନଙ୍କ ମଧ୍ୟରେ ବ୍ୟବଧାନ ସୁସ୍ପଷ୍ଟ । ଭକ୍ତ ଦୂରର ପରମ ଆରାଧ୍ୟ ଦେବତାଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧା ସହକାରେ ଭକ୍ତି ନିବେଦନ କରେ । ପୁତନା, ଶକଟା, ତୃଣାବର୍ତ୍ତ, ବକାସୁର ନିଧନ ଓ କାଳୀୟଦଳନ ଐଶ୍ୱର୍ଯ୍ୟଲୀଳାର ପ୍ରଧାନ କଥା । ମାଧୁର୍ଯ୍ୟରେ ଦେବତା ମନୁଷ୍ୟର ସ୍ତରକୁ ଅବତରଣ କରି ଆସନ୍ତି । ଅନ୍ତରର ପ୍ରୀତି ଦେଇ ଭକ୍ତ ଭଗବାନଙ୍କୁ ନିଜର କରିନିଏ । ବୃନ୍ଦାବନରେ ଗୋପୀ ବା ରାଧା ଏହିପରି ସାଧକର ଶ୍ରେଷ୍ଠ ନିଦର୍ଶନ । ଧ୍ରୁବ, ପ୍ରହ୍ଲାଦଙ୍କ ପରି ସେମାନେ ଅତି ଦୂରର ନୁହନ୍ତି, ଅତି ଆପଣାର, ଅତି ନିକଟର । ବୈଷ୍ଣବମାନେ ଏହି ମଧୁର ଭାବଦ୍ୱାରା ଈଶ୍ୱରଙ୍କର ଆରାଧନା କରନ୍ତି । ଏହାକୁ ରାଗାତ୍ମିକା ସାଧନା କୁହାଯାଏ । ଯାବତୀୟ ଭଜନ ସାଧନ ମଧ୍ୟରେ ଏହାହିଁ ସର୍ବଶ୍ରେଷ୍ଠ ।

ବୈଷ୍ଣବ ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କ ମୁଖରେ ଭାଷା ଦିଆଯାଇଅଛି,

"ମୋର ପୁତ୍ର, ମୋର ସଖା, ମୋର ପ୍ରାଣପତି

ଏଇଭାବେ କରେ ଯେଇ ମୋରେ ଶୁଦ୍ଧଭକ୍ତି ।
ମାତା ମୋରେ ପୁତ୍ରଭାବେ କରେନ ବନ୍ଧନ
ଅତି ହୀନ ଜ୍ଞାନେ କରେ ଲାଳନ ପାଳନ ।

ସଖା ଶୁଦ୍ଧସଖ୍ୟେ କରେ ସ୍କନ୍ଧେ ଆରୋହନ
ତୁମି କୋନ ବଡ଼ଲୋକ ତୁମି ଆମି ସମ ।"

ଯେଉଁ ବ୍ୟକ୍ତି ଭଗବାନଙ୍କୁ ନିଜ ପୁତ୍ର, ପତି ବା ସଖା ଭାବରେ ଭଲପାଏ, ସେ ତାହାର ପାଖରେ ଧରା ଦିଅନ୍ତି । ସେ ଜ୍ଞାନମୟ, ଶକ୍ତିମୟ, ଐଶ୍ୱର୍ଯ୍ୟମୟ; କିନ୍ତୁ ବୈଷ୍ଣବ ଦୃଷ୍ଟିରେ ସେ କେବଳ ପ୍ରେମମୟ । ଦୁଷ୍ଟଦଳନ ପାଇଁ ସେ ମର୍ତ୍ତ୍ୟରେ ଅବତୀର୍ଣ୍ଣ—ଏକଥା ପ୍ରେମମାର୍ଗର ବୈଷ୍ଣବ ସାଧକମାନେ ବିଶ୍ୱାସ କରନ୍ତି ନାହିଁ । ଚୈତନ୍ୟ ଚରିତାମୃତରେ କୃଷ୍ଣାବତାରର କାରଣ ଭିନ୍ନ ଭାବରେ ପ୍ରକଟିତ । ତାହା ହେଉଛି,

"ପ୍ରେମରସ ନିର୍ଯ୍ୟାସ କରିତେ ଆସ୍ୱାଦନ
ରାଗମାର୍ଗ-ଭକ୍ତି ଲୋକେ କରିତେ ପ୍ରଚାରନ ।

ରସିକ ଶେଖର କୃଷ୍ଣ ପରମ କରୁଣ
ଏଇ ଦୁଇ ହେତୁ ହୈତେ ଇଚ୍ଛାର ଉଦ୍‌ଗମ ।"

କୃଷ୍ଣାବତାରର ଏହି ନୂତନ କାରଣ ପ୍ରେମ ଆସ୍ୱାଦନ ଓ ରାଗମାର୍ଗ ଭକ୍ତି ପ୍ରଚାର ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ।

"ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଶୃଙ୍ଗାର-ଚାରିରସ
ଚାରି ଭାବରେ ଭକ୍ତ ଯତ କୃଷ୍ଣ ତାର ବଶ ।"

ଶୃଙ୍ଗାର ବା ପ୍ରେମଭାବରେ ସାଧକ ପରମେଶ୍ୱରଙ୍କୁ ପ୍ରାଣବଲ୍ଲଭ ରୂପରେ ଆରାଧନା କରେ—ଏହାର ଦୃଷ୍ଟାନ୍ତ ଶ୍ରୀରାଧା । ପ୍ରେମଭାବ ହିଁ ସର୍ବଶ୍ରେଷ୍ଠ ଭାବ ।

ପ୍ରେମ ଦ୍ୱିବିଧ—ସ୍ୱକୀୟା ଓ ପରକୀୟା । ବୈଧିସମ୍ମତ ପ୍ରେମ ସ୍ୱକୀୟା, ପରନାରୀ ପ୍ରତି ପ୍ରେମ ପରକୀୟା । ଈଶ୍ୱରଙ୍କ ସହିତ ପ୍ରୀତିକରି ପରମାନନ୍ଦ ଭୋଗ-କରିବାକୁ ବୈଷ୍ଣବ ସାଧକଗଣ ନିର୍ଦ୍ଦେଶ ଦେଇ ଅଛନ୍ତି । ପ୍ରୀତିର ଲକ୍ଷଣ ସମ୍ବନ୍ଧରେ ଉକ୍ତ ଅଛି—

"ସୁନ୍ଦର ନାୟକ ଦେଖି ସାମାନ୍ୟ ନାୟିକା
ଯେଇ ଭାବେ ହେରେ ତାରେ ହୟେ ରାଗାତ୍ମିକା ।"

ଈଶ୍ୱରଙ୍କର ପ୍ରତିସାନୁରାଗ ପ୍ରେମର ସାଧନାକୁ ବୈଷ୍ଣବ କବିଗଣ ରାଧାକୃଷ୍ଣ-ଲୀଳା ସାହାଯ୍ୟରେ ରୂପାୟିତ କରିଅଛନ୍ତି । ଏହି ନିଖିଳ ବିଶ୍ୱ ଜୀବାତ୍ମା ଓ ପରମାତ୍ମାଙ୍କ ପରସ୍ପର ଆକର୍ଷଣର ଚିରନ୍ତନ ଲୀଳାଖେଳା । ଶ୍ରୀକୃଷ୍ଣ ପରମ, ଶ୍ରୀରାଧା ଜୀବ । ରାଧା କୃଷ୍ଣଙ୍କ ପ୍ରତି ଯେପରି ପ୍ରବଳ ଅନୁରାଗିଣୀ କୃଷ୍ଣ ସେହିପରି ରାଧାଙ୍କ ପ୍ରତି ଅତିଶୟ ଅନୁରକ୍ତ ମାତ୍ର ଏହି ଅନୁରାଗ ଲୌକିକ, ପାର୍ଥିବ ନୁହେଁ; ଅପାର୍ଥିବ, ଅଲୌକିକ । ଶ୍ରୀଚୈତନ୍ୟଙ୍କ ପ୍ରଭାବରେ ରାଧାକୃଷ୍ଣଙ୍କର ପ୍ରେମକାହାଣୀ ଆଧ୍ୟାତ୍ମିକ

ଜଗତକୁ ଉନ୍ନୀତ ହୋଇଅଛି । ମାନବୀୟ ପ୍ରେମ ଐଶ୍ବରିକ ପ୍ରେମରେ ରୂପାନ୍ତରିତ ହୋଇଅଛି ।

ନିରନ୍ତର ଈଶ୍ବର ଚିନ୍ତାରେ ନିମଗ୍ନ ରହି ଭକ୍ତ ତାର ମନରୁ କାମନା, ବାସନା, ଅହମିକା ଆଦି ବିସର୍ଜନ କରେ । ଏକମାତ୍ର ଈଶ୍ବର ତାର ସର୍ବସ୍ବ ହୋଇ ଉଠନ୍ତି । ସେତେବେଳେ ପରମାତ୍ମାଙ୍କ ସହିତ ଜୀବାତ୍ମା ସମ୍ମିଳିତ ହୁଅନ୍ତି, ସାଧକର ମୁକ୍ତି ଘଟେ ।

ରହସ୍ୟମଞ୍ଜରୀରେ ଶ୍ରୀକୃଷ୍ଣ ଜଗନ୍ନାଥଙ୍କର ପ୍ରତିଭୂ । ଜଗନ୍ନାଥଙ୍କୁ ଅବତାରୀ ଅର୍ଥାତ୍ ଷୋଳକଳାରେ ପରିପୂର୍ଣ୍ଣ ବ୍ରହ୍ମରୂପେ ଓ ଶ୍ରୀକୃଷ୍ଣଙ୍କୁ ତାଙ୍କର ଅବତାର ବା ଅଂଶରୂପେ କବି କଳ୍ପନା ନ କରି ଉଭୟଙ୍କର ଅଭେଦତ୍ବ ପ୍ରକାଶ କରିଛନ୍ତି ।

"ଏକ ଦିନେ ଏକାନ୍ତେ ମନ୍ଦିରେ ଜଗନ୍ନାଥ
ମଣିମୟ ପଲଙ୍କ ଉପରେ ବିରାଜିତ ।
ବେଳଜାଣି ରୁକ୍ମିଣୀ ରମଣୀ—ଶିରୋମଣି
ପତିପାଶେ ଏକଲି ପ୍ରବେଶ ଠାକୁରାଣୀ ।"

ଶ୍ରୀକୃଷ୍ଣ ଜଗନ୍ନାଥ ରୂପରେ କଳ୍ପିତ । ରୁକ୍ମିଣୀଙ୍କୁ ଜଗନ୍ନାଥଙ୍କର ପାଟ-ମହିଷୀ ଭାବରେ ଚିତ୍ରଣ କରାଯାଇଅଛି ।

ଅଷ୍ଟପାଟବଂଶୀ ଶ୍ରୀକୃଷ୍ଣଙ୍କ ସେବାରେ ଆତ୍ମୋତ୍ସର୍ଗ କଲେହେଁ ଶ୍ରୀକୃଷ୍ଣଙ୍କର ଚିତ୍ତ ତାଙ୍କର ପ୍ରାଣସଖୀ ଗୋପାଙ୍ଗନାଙ୍କ ପାଇଁ ବ୍ୟାକୁଳ । ରସରାଜ ଶ୍ରୀକୃଷ୍ଣଙ୍କ ପ୍ରୀତି କ୍ଷଣିକ ବିଳାସ ନୁହେଁ, ନିତ୍ୟ ସୌନ୍ଦର୍ଯ୍ୟରେ ବିଭୂଷିତ । ସ୍ବପତ୍ନୀଙ୍କ ସମକ୍ଷରେ ସତ୍ୟ ପ୍ରକାଶରେ ଶ୍ରୀକୃଷ୍ଣ କୁଣ୍ଠିତ ନୁହନ୍ତି । ପୁଣି, ଗୋପାଙ୍ଗନା ଓ ଅଷ୍ଟପାଟବଂଶୀଙ୍କ ମଧ୍ୟରେ ଥିବା ପାର୍ଥକ୍ୟକୁ ସ୍ପଷ୍ଟ ଭାବରେ ସେ ସୂଚାଇ ଦେଇଛନ୍ତି ।

ସ୍ବରୂପତଃ ଶ୍ରୀକୃଷ୍ଣ ଐଶ୍ବର୍ଯ୍ୟଲୀଳାରେ ଆଗ୍ରହୀ ନୁହନ୍ତି, ମାଧୁର୍ଯ୍ୟଲୀଳା ପ୍ରତି ତାଙ୍କର ଚିରନ୍ତନ ଆକାଙ୍‌କ୍ଷା, ଗୋପୀଭାବ ହିଁ କୃଷ୍ଣପ୍ରାପ୍ତିର ସର୍ବୋତ୍କୃଷ୍ଟ ଉପାୟ ।

ଶ୍ରୀକୃଷ୍ଣ ଦକ୍ଷିଣ ନାୟକ । ବହୁ ନାୟିକାରେ ସେ ଅଭିଳାଷୀ ଓ ପ୍ରତ୍ୟେକଙ୍କ ପ୍ରତି ତାଙ୍କର ସ୍ନେହ ବିସ୍ତାରିତ । ଜାମ୍ବବତୀଙ୍କ ଭର୍ତ୍ସନାବାକ୍ୟରେ କ୍ରୋଧାନ୍ବିତ ନ ହୋଇ ସସ୍ନେହରେ ସେ ତାଙ୍କୁ ଆଲିଙ୍ଗନ କରିଛନ୍ତି । ଏପରି ତାଙ୍କର ଭାବବିଳାସ । ଜାମ୍ବବତୀଙ୍କ ଈର୍ଷାପୂର୍ଣ୍ଣ ବଚନ ଶୁଣି ଶ୍ରୀକୃଷ୍ଣ ସାମାନ୍ୟ ହସି,

"ଧାଇଁପଡ଼ି ଜମ୍ବୁବତୀ କାମିକ ଧରି
ହୃଦୟେ ଭିଡ଼ନ୍ତେ ଆଣି କଙ୍କଣ ଗଲେ ତରୁଣୀ
ବଦନ ଚୁମ୍ବନ୍ତେ ଗ୍ୟାନ ସହିଲେ ହାରି ।"

ଏହ୍ୱମତ ସବୁନ୍ତ ସୁଖ
ଯୁବତୀଙ୍କେ ଭୁଜଯୁଗ ମୁଞ୍ଚକେ ମୁଖ ।"

ପତ୍ୟେକଙ୍କୁ ଆନନ୍ଦଦାନ କରିବା ପାଇଁ ସେ ଅନନ୍ତ ମୂର୍ତ୍ତି ଧାରଣ କରନ୍ତି । ଆକାଶପରି ଉଦାର, ବିସ୍ତୃତ ତାଙ୍କର ହୃଦୟ; ସମସ୍ତଙ୍କୁ ସ୍ୱୀକାର କରିବାପରି ବିଶାଳ ତାଙ୍କର ଚିତ୍ତବୃତ୍ତି । ସକଳ ସନ୍ଥାପଦ୍ୱାରା ଶ୍ରୀକୃଷ୍ଣଙ୍କର ଅନନ୍ତଗର୍ଭ ମୂର୍ତ୍ତି ଅଙ୍କନ କରି କବି ପାଠକ ଚିତ୍ତକୁ ବିସ୍ମୟାଭିଭୂତ କରିଦେଇଛନ୍ତି ।

"କୃଷ୍ଣସ୍ତୁ ଭଗବାନ ସ୍ୱୟମ୍"—ଅର୍ଥାତ୍ ଷଡ଼ ଐଶ୍ୱର୍ଯ୍ୟରେ ସେ ମଣ୍ଡିତ । ଭଗବତ୍ତ୍ୱରେ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟର ସମନ୍ୱୟ । ଶ୍ରୀକୃଷ୍ଣ ଦ୍ୱାରକାରେ ପୂର୍ଣ୍ଣ, ମଥୁରାରେ ପୂର୍ଣ୍ଣତର ଓ ବ୍ରଜରେ ପୂର୍ଣ୍ଣତମ ବୋଲି ବ୍ରହ୍ମବୈବର୍ତ୍ତ ପୁରାଣରେ ଉଲ୍ଲେଖିତ ।

ଶ୍ରୀକୃଷ୍ଣ ଅବତାରୀ; କିନ୍ତୁ ତାଙ୍କର ବହୁ ଅବତାର ରହିଛି । ତିନିଗୋଟି ଅବତାର ପ୍ରଧାନ-ଅଂଶାବତାର, ଗୁଣାବତାର ଓ ଲୀଳାବତାର । ଅଂଶାବତାର ଦୁଇ ପ୍ରକାର—ପୁରୁଷାବତାର ଓ ଲୀଳାବତାର । କାରଣାର୍ଣ୍ଣବଶାୟୀ ନାରାୟଣ ପୁରୁଷାବତାର ଓ ମତ୍ସ୍ୟ, କୂର୍ମ ପ୍ରଭୃତି ଲୀଳାବତାର । ବ୍ରହ୍ମା, ବିଷ୍ଣୁ ପ୍ରଭୃତି ଗୁଣାବତାର । ସନକ, ସନାତନ, ବ୍ୟାସ ପ୍ରଭୃତି ଶକ୍ତ୍ୟାବେଶାବତାର ।

ଭଗବାନଙ୍କର ବିଳାସ ଅବତାର ରୂପେ ଗୃହୀତ । ବିଳାସ ଅବତାର ଠାରୁ ଶ୍ରେଷ୍ଠ ଓ ଶକ୍ତିଶାଳୀ । ବିଳାସ ହେଉଛି; ଭଗବାନଙ୍କର ବିଳାସ ନାରାୟଣ, ନାରାୟଣଙ୍କର ବିଳାସ ବାସୁଦେବ । ପ୍ରଥମଟି ପ୍ରାଭବ ବିଳାସ ଓ ଦ୍ୱିତୀୟଟି ଅଂଶ ବିଳାସ । ଏକ ରୂପ ଏକ କାଳରେ ନାନା ସ୍ଥାନରେ ପ୍ରକଟିତ ହେଲେ ତାହାକୁ ପ୍ରକାଶ ରୂପେ ଅଭିହିତ କରାଯାଏ । ପ୍ରକାଶ ପ୍ରକୃତ ସ୍ୱରୂପଠାରୁ ଯଥାର୍ଥରେ ଅଭିନ୍ନ । ପ୍ରଭେଦ ଏତିକି ଯେ, ସ୍ୱୟଂରୂପୀ ଅନ୍ୟର ଅପେକ୍ଷା ରଖେ ନାହିଁ; କିନ୍ତୁ ପ୍ରକାଶ ସ୍ୱୟଂରୂପକୁ ଅପେକ୍ଷା କରି ପ୍ରକାଶିତ ହୁଏ । ରାସ କ୍ରୀଡ଼ାରେ ବହୁରୂପ ହେବା ତାଙ୍କର ପ୍ରକାଶ । ରହସ୍ୟମଞ୍ଜରୀରେ ଶ୍ରୀକୃଷ୍ଣଙ୍କଠାରେ ଲୀଳା ବିଳାସ ଓ ପ୍ରକାଶ ସମସ୍ତ ପରିଲକ୍ଷିତ ହୋଇଥାଏ ।

'ଶ୍ରୀକୃଷ୍ଣଙ୍କର ଦଶଭୁଜତ୍ୱ ରହସ୍ୟମଞ୍ଜରୀରେ ବର୍ଣ୍ଣିତ ହୋଇଅଛି । ଜାତେଷା ଜାମ୍ବବତୀ ଶ୍ରୀକୃଷ୍ଣଙ୍କୁ ବିଦ୍ରୂପ କରି ରାଧା ରୂପର ବିଦ୍ରୂପାତ୍ମକ ଅସମ୍ଭାବ୍ୟ ବର୍ଣ୍ଣନା କରିବାରୁ ଶ୍ରୀକୃଷ୍ଣ ରାଧା ରୂପର ଅସମ୍ଭାବ୍ୟତାକୁ ସମର୍ଥନ କରି ନିଜର ଦଶଭୁଜତ୍ୱ ଓ କମ୍ବୁର ଚନ୍ଦ୍ରସେଣୀ ରୂପେ ଜନ୍ମ ହେବା କଥା ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣ ନିତ୍ୟରେ ଦଶଭୁଜ ଧାରଣ କରି ଶ୍ରୀରାଧାଙ୍କ ସହିତ ଲୀଳା ବିହାର କରିବା ଶାସ୍ତ୍ର ସମର୍ଥିତ ନୁହେଁ । ଶ୍ରୀକୃଷ୍ଣଙ୍କର ଦଶଭୁଜତ୍ୱ ମହାଭାରତରେ କଥିତ—"ଦଶବାହୁଃ

ମହାତେଜା ଦେବତାରି ନିସୂଦନ''—ମାତ୍ର ଦଶଭୁଜର କାର୍ଯ୍ୟକଥା ଏ ସ୍ଥଳରେ ଉଲ୍ଲେଖିତ ହୋଇ ନାହିଁ । କେବଳ ଶ୍ରୀକୃଷ୍ଣ ଚରିତର ମହତ୍ତ୍ୱ ପାଇଁ କବି ଏପରି ରୂପବର୍ଣ୍ଣନା କରିଛନ୍ତି ।

ଶ୍ରୀକୃଷ୍ଣଙ୍କ ବିରହରେ ଗୋକୁଳର କରୁଣ ଅବସ୍ଥା ଶ୍ରୀକୃଷ୍ଣଙ୍କ ଚରିତର ମାଧୁର୍ଯ୍ୟ ପ୍ରକାଶ କରେ । ଶ୍ରୀକୃଷ୍ଣ ସର୍ବ ମଙ୍ଗଳର ଆଧାର ସ୍ୱରୂପ । ତାଙ୍କ ଅଭାବରେ ଗୋପପୁରବାସୀ ଜୀବନ୍ମୃତ, ଜଡ଼ ପ୍ରକୃତି ସୁଦ୍ଧା ହତଶ୍ରୀ ହୋଇପଡ଼ିଛି । ପ୍ରେମ-ପାଗଳିନୀ ଶ୍ରୀରାଧା ଓ ଗୋପାଙ୍ଗନାଙ୍କର ଶ୍ରୀକୃଷ୍ଣ ବିରହରେ ଉନ୍ମତ୍ତ ପ୍ରଳାପ ଓ ଶୋଚନୀୟ ଦୁର୍ଦ୍ଦଶା ଶ୍ରୀକୃଷ୍ଣଙ୍କ ଚରିତକୁ ରସୋଜ୍ଜ୍ୱଳ କରିଅଛି । ପୁଣି, ଶ୍ରୀରାଧା ଓ ଗୋପାଙ୍ଗନାଙ୍କ ବିଚ୍ଛେଦରେ ସକଳ ସୁଖ ସମ୍ଭୋଗ ସୌଭାଗ୍ୟରେ ବିହାର କରି ଶ୍ରୀକୃଷ୍ଣଙ୍କର ଦୟନୀୟ ବିପନ୍ନ କ୍ଷୀଣ ଅବସ୍ଥା ଶ୍ରୀକୃଷ୍ଣ ଚରିତର ମହତ୍ତ୍ୱ ପ୍ରକାଶ କରେ ।

ମାନବ-କୃଷ୍ଣ ନିତ୍ୟ ସ୍ଥଳକୁ ରୁକ୍ମିଣୀଙ୍କୁ ନେଇଯିବାବେଳେ ତାଙ୍କୁ ଚାରି-ଗୋଟି ବ୍ୟୂହ ମଧ୍ୟ ଦେଇ ଯିବାକୁ ହୋଇଥିଲା । ନାରାୟଣଙ୍କର ମହାବସ୍ତ୍ର ନାମକ ବିଖ୍ୟାତ ବ୍ୟୂହ ଚତୁଷ୍ଟୟ ନିତ୍ୟ କୃଷ୍ଣଙ୍କର ଗୋଟିଏ ଗୋଟିଏ ଆବରଣ ଦେବତା ।

ଆଦ୍ୟବ୍ୟୂହ ବାସୁଦେବ, ଚିତ୍ତର ଅଧିଷ୍ଠାତ୍ରୀ ଦେବତା । ଜଳାବରଣସ୍ଥ ବୈକୁଣ୍ଠର ବେଦବତୀପୁରର ଅଧୀଶ୍ୱର । ରହସ୍ୟମଞ୍ଜରୀରେ ଅଛି, ''ବ୍ରହ୍ମାଣ୍ଡ-ଅଣ୍ଡ କଟାହ ବଳିଣ ଯାଇ, ବାସୁଦେବ ଆଳ ଜଳ ବୈକୁଣ୍ଠେ ହୋଇ'' । ୨୨।୧୬। ''ପୂର୍ବେ ଆମ୍ଭ ପୁର ସଙ୍କର୍ଷଣ ଦକ୍ଷିଣେ, ପଶ୍ଚିମେ ପ୍ରଦ୍ୟୁମ୍ନ ଦେଖ ଉତ୍ତରମଣେ । ସୋମେ ଉଷା ଅନିରୁଦ୍ଧ ଦେଖ ଗୋ ସଖି, ନବ ଆବରଣ ଏହିଠାବରୁ ଦେଖି'' (୨୨।୪୭-୪୮) । ଦ୍ୱିତୀୟ ବ୍ୟୂହ ସଙ୍କର୍ଷଣ, ବାସୁଦେବଙ୍କର ସ୍ୱ ଅଂଶ ଅର୍ଥାତ୍ ବିଳାସ । ସତ୍ୟଲୋକର ଉପରି ଭାଗରେ ଥିବା ବିଷ୍ଣୁଲୋକ ଏହାଙ୍କର ଅଧିଷ୍ଠାନ ସ୍ଥଳ, ସର୍ବ ଜୀବଙ୍କର ଉଦ୍ଭବର କାରଣ । ତୃତୀୟ ବ୍ୟୂହ ପ୍ରଦ୍ୟୁମ୍ନ, ସଙ୍କର୍ଷଣଙ୍କର ବିଳାସ ରୂପ । ନିତ୍ୟ ଦ୍ୱାରକାପୁର ଏହାଙ୍କର ଅଧିଷ୍ଠାନ ଭୂମି । ଚତୁର୍ଥ ବ୍ୟୂହ ଅନିରୁଦ୍ଧ ପ୍ରଦ୍ୟୁମ୍ନଙ୍କର ବିଳାସମୂର୍ତ୍ତି; କ୍ଷୀର ସମୁଦ୍ର ମଧ୍ୟବର୍ତ୍ତୀ ଶ୍ୱେତ ଦ୍ୱୀପରେ ଥିବା ଐରାବତୀ ପୁରରେ ଅନନ୍ତ ଶଯ୍ୟାରେ ଶାୟିତ ।

ଏହି ବ୍ୟୂହଗୁଡ଼ିକ ମଧ୍ୟରେ ବାସୁଦେବ ଶ୍ରେଷ୍ଠ ଓ ପୁରାଣକାର ଏହାଙ୍କୁ ଶ୍ରୀକୃଷ୍ଣଙ୍କର ଅବତାର ଭାବରେ ବର୍ଣ୍ଣନା କରିଥାଆନ୍ତି । ପ୍ରକୃତରେ ଏହି ଚତୁର୍ବ୍ୟୂହ ଶ୍ରୀକୃଷ୍ଣଙ୍କର ଆବରଣ ଦେବତା । ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟ ବାସୁଦେବଙ୍କ ଠାରୁ ଅଧିକ ।

ରହସ୍ୟମଞ୍ଜରୀରେ ଏହି ସ୍ବଲଗୋଟି ଆବରଣ ସହିତ ଲୀଳା ଆବରଣ ପ୍ରଭୃତ ନବଆବରଣର ଉଲ୍ଲେଖ ରହିଛି ।

ରହସ୍ୟମଞ୍ଜରୀରେ ଶ୍ରୀକୃଷ୍ଣଙ୍କର ସ୍ୱକୀୟା ନାୟିକା ରୁକ୍ମଣୀ କାବ୍ୟର ନାୟିକା ହେଲେ ହେଁ ଏଥିରେ ପରକୀୟା ପ୍ରୀତିର ଆଧାର ସ୍ୱରୂପିଣୀ ଶ୍ରୀରାଧାଙ୍କର ପାଇଁ ଶ୍ରୀକୃଷ୍ଣଙ୍କର ବ୍ୟାକୁଳତା ପ୍ରକାଶ ପାଇଅଛି । ଶ୍ରୀରାଧାଙ୍କର ଅଭାବରେ ଶ୍ରୀକୃଷ୍ଣଙ୍କର ଜୀବନ ବ୍ୟର୍ଥ । ଶ୍ରୀରାଧାଙ୍କ ରୂପଗୁଣ ପ୍ରଶଂସାରେ ଶ୍ରୀକୃଷ୍ଣ ଭାବବିଭୋର ହୋଇପଡ଼ିଛନ୍ତି ।

କେଳିକଳାନିଧି ଶ୍ରୀକୃଷ୍ଣ କଦମ୍ବ ବୃକ୍ଷମୂଳରେ ଗୋପାଙ୍ଗନାଙ୍କ ସହିତ ରାସକ୍ରୀଡ଼ା ରଚନା କରିଛନ୍ତି । ମୋହନ ବଂଶୀ ବାଦନରେ ଶ୍ରୀରାଧା ଓ ଗୋପାଙ୍ଗନାଙ୍କୁ ସେ ଆହ୍ୱାନ କରିଛନ୍ତି । ଶ୍ରୀକୃଷ୍ଣଙ୍କର ମୁରଲୀଧ୍ୱନି ଶୁଣି ଗୋପତରୁଣୀ ସାମାଜିକ ବିଧି ନିଷେଧ ବିସ୍ମୃତ ହୋଇ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାକୁ ଉଚ୍ଛନ୍ନ ହୋଇପଡ଼ିଛନ୍ତି । ସାଂସାରିକ ବନ୍ଧନ ପ୍ରତି ସେମାନଙ୍କର ଜ୍ଞାନ ଧ୍ୟାନ ରହିଲା ନାହିଁ । ବହ୍ନିଳ ମଣ୍ଡଳୀ ସେମାନେ ଶ୍ରୀକୃଷ୍ଣ ଦର୍ଶନ ପାଇଁ ଧାଇଁଲେ । ଶ୍ରୀକୃଷ୍ଣ ଗୋପାଙ୍ଗନାଙ୍କର ପାର୍ଥିବ ମୋହ ମାୟାର ଆବରଣ ଛିନ୍ନ କରି ସେମାନଙ୍କ ଅନ୍ତରରେ ଅଲୌକିକ ଅପାର୍ଥିବ ଭାବ ଉଦ୍ରେକ କରିଛନ୍ତି ମୋହନବଂଶୀ ବାଦନରେ ।

"ହେରି ଶ୍ରୀହରି ମୁଖ ପୂର୍ଣ୍ଣଇନ୍ଦୁ
ଉଛୁଳି ଉଠେ ଗୋପୀ ପ୍ରେମ ସିନ୍ଧୁ ।" (୧୯।୧୧)

ଗୀତ ବାଦ୍ୟ ମଧ୍ୟରେ ସେମାନଙ୍କ ମନର ଉତ୍ତେଜନା ଧୀରେ ଧୀରେ ସଂଯତ ପ୍ରମୂର୍ତ୍ତିତ ରୂପ ଧାରଣ କଲା । କାମ ମଦରେ ସେମାନେ ଉନ୍ମତ୍ତ ଅଧୀର ହୋଇ ଉଠିଲେ । ସେହି ଅଭିଜିତ ଲଗ୍ନରେ ଶ୍ରୀକୃଷ୍ଣ ଅନନ୍ତମୂର୍ତ୍ତି ଧାରଣ କରି ଗୋପାଙ୍ଗନାଙ୍କ ସହିତ ରାସକ୍ରୀଡ଼ା କଲେ ।

"ଗୋପୀ ଗୋଟିକେ କୃଷ୍ଣ ଗୋଟିଏକ
ଏକରୁ ମୂର୍ତ୍ତି ହୋଇଲେ ଅନେକ ।" (୧୯।୧୬) ।

"ଗୋଟି ଗୋଟିକେ ବୋଧ କରାଇ
ଅନେକ କୃଷ୍ଣ ଏକ ମୂର୍ତ୍ତି ହୋଇ ।" (୧୯।୨୧)

ଶ୍ରୀକୃଷ୍ଣଙ୍କର ଚରିତ ବିବିଧ ଭାବପୂର୍ଣ୍ଣ । ସେହି ଚରିତର ଅତଳସ୍ପର୍ଶୀ ଭାବରାଶିର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ ସମ୍ଭବ ନୁହେଁ । ଶ୍ରୀକୃଷ୍ଣ ଶ୍ରୀରାଧା ଓ ଅଷ୍ଟ ପାଟବଂଶୀ ଉଭୟଙ୍କର ମାନଭଞ୍ଜନ କରିବାରେ ପାରଦର୍ଶୀ ।

ରହସ୍ୟମଣ୍ଡଳୀରେ ଦେବଦୁର୍ଲଭ ପୁରାଣ ବର୍ଣ୍ଣିତ ଗୋଲୋକବିହାରୀ ଶ୍ରୀକୃଷ୍ଣ ଓ ରାଧାବଲ୍ଲଭ ମାନବ କୃଷ୍ଣ ଉଭୟଙ୍କର ସ୍ୱରୂପ ଚିତ୍ରିତ ବର୍ଣ୍ଣନା କରିଛନ୍ତି । ମୂଖ୍ୟତଃ ଶ୍ରୀକୃଷ୍ଣ ପ୍ରେମମୟ, ଲୀଳାମୟ, ରାଧା ବିରହ ବିଧୁର ମାଧୁର୍ଯ୍ୟମୟ ।

ଗରୁଡ଼ :—

ରହସ୍ୟମଣ୍ଡଳୀରେ ଶ୍ରୀକୃଷ୍ଣ ବାହନ ଗରୁଡ଼ ପୃଷ୍ଠରେ ବସି ଶ୍ରୀକୃଷ୍ଣ ଅଷ୍ଟପାଟ-ବଂଶୀଙ୍କ ସହ ଶ୍ରୀରାଧାଙ୍କ ଦର୍ଶନ ଦେଉଅଛନ୍ତି । ଗରୁଡ଼ ସାଧାରଣ ବାହନ ମାତ୍ର ନୁହନ୍ତି, ସେ ଯୋଗୀଶ୍ରେଷ୍ଠ । ଦାସ୍ୟ ଭକ୍ତର ଉତ୍କୃଷ୍ଟ ଦୃଷ୍ଟାନ୍ତ । ଯେତେବେଳେ ଭଗବାନ ଶ୍ରୀକୃଷ୍ଣ ନିଜ ବାହନ ଗରୁଡ଼ଙ୍କୁ ସ୍ମରଣ କଲେ ପ୍ରଭୁଭକ୍ତ ଗରୁଡ଼ ଧ୍ୟାନରେ ମଗ୍ନଥିଲେ । ପ୍ରଭୁଙ୍କ ଇଚ୍ଛା ଜାଣିବାମାତ୍ରେ ତତ୍‌କ୍ଷଣାତ୍ କ୍ଷିପ୍ର ଗତିରେ ଆକାଶ ମାର୍ଗରେ ସେ ଅଗ୍ରସର ହେଲେ । ଭକ୍ତଶ୍ରେଷ୍ଠ ଗରୁଡ଼ଙ୍କ ଆଗମନରେ ପବନ ଭୟଙ୍କର ବେଗରେ ପ୍ରବାହିତ ହେଲା, ମେଘ ଘଡ଼ଘଡ଼ର ଗର୍ଜନରେ ଆକାଶ କମ୍ପି ଉଠିଲା, ସମୁଦ୍ର ବକ୍ଷରେ ତରଙ୍ଗର ସୃଷ୍ଟି ହେଲା । ଅପରସୀମ ଶକ୍ତିଧାରୀ ଗରୁଡ଼ ଖର୍ବରୂପ ଧାରଣ କରି ପ୍ରଭୁଙ୍କ ସମକ୍ଷରେ ଉପନୀତ ହେଲେ । ପ୍ରଭୁଙ୍କର ଆଦେଶ ଅନୁଯାୟୀ ଇଚ୍ଛାରୂପୀ ଗରୁଡ଼ ବିରାଟକାୟା ଧାରଣ କରି ଦ୍ୱାରକାର ନାରୀମାନଙ୍କ ସହିତ ଗୋପପୁର ଅଭିମୁଖରେ ଯାତ୍ରା କଲେ । ତାଙ୍କର ପୃଷ୍ଠଦେଶର ଏତେ ପରିମାଣରେ ଭାର ଥିଲେହେଁ ସେ ସ୍ଥିର, ନିଶ୍ଚଳ ଓ ଏକାଗ୍ର । ରାଧାକୃଷ୍ଣଙ୍କର ମିଳନ ଅବକାଶରେ ପ୍ରଭୁଭକ୍ତ ଗରୁଡ଼ ମୁଖକୁ ପଶ୍ଚାତ୍ ଅପସାରଣ କରି ନିଜର ଶୋଭନ ରୁଚିଶୀଳତାର ପରିଚୟ ଦେଇଛନ୍ତି । ପୁଣି ତାଙ୍କ ପୃଷ୍ଠଦେଶରେ ବସି ଦେଖୁଥିବା ରାଣୀମାନଙ୍କ ଦୃଷ୍ଟିକୁ ସେ ଆଚ୍ଛାଦନ କରିଛନ୍ତି । ଗରୁଡ଼ ଚରିତ୍ରର ସୌନ୍ଦର୍ଯ୍ୟ କବି ଅତି ସୂକ୍ଷ୍ମଭାବରେ ପ୍ରକାଶ କରିଛନ୍ତି । ରାମଚନ୍ଦ୍ରଙ୍କର ବିଶ୍ୱସ୍ତ ଆଜ୍ଞାବହ ଦାସ ହନୁମାନ ପରି ଗରୁଡ଼ ପକ୍ଷୀ ହେଲେହେଁ ଶ୍ରୀକୃଷ୍ଣଙ୍କର ପରମ ଅନୁଗୃହୀତ ବିଶ୍ୱାସ-ଭାଜନ । କବିଙ୍କ ଭାଷାରେ,

"ହେଚ୍ଛି ବୋଲନ୍ତି ସକଳ ଗୋପୀ
ବାଳୁ ଗରୁଡ଼ ଏ ବଡ଼ ତପୀ ।" (୨୦/୩୮) ।

ଗୋପୀମାନେ ଗରୁଡ଼ଙ୍କର ରୂପଗୁଣ ବର୍ଣ୍ଣନା କରିଛନ୍ତି । ସେ ମୌନ, ଖର୍ବକାୟ; କିନ୍ତୁ ଇଚ୍ଛାକଲେ ବିରାଟକାୟା ବିସ୍ତାର କରିପାରନ୍ତି । ତାଙ୍କର ଆଖିର ଡୋଳା ସୁନ୍ଦର—ସତେ ଯେପରି ମାଣିକ୍ୟ ବା ପୋହଳା ପରି ଇଷତ୍ ରକ୍ତରଞ୍ଜିତ ଦିଶୁଛି । ତାଙ୍କ ଅଧରର ବର୍ଣ୍ଣ ଅରୁଣ, ଦାଢ଼ି କସ୍ତୁରୀଚୂର୍ଣ୍ଣପରି କୃଷ୍ଣବର୍ଣ୍ଣ । ଗରୁଡ଼ଙ୍କର ନାସା ବିଖ୍ୟାତ । ତାଙ୍କର ନାସା ସୁନ୍ଦର, ସଲଖ । ନାସାର ନିମ୍ନ ଦେଶରେ କିଣ ମୋଡ଼ିହୋଇ ରହିଛି । ବୀରମାନଙ୍କ ମଧ୍ୟରେ ସେ ଉତ୍କୃଷ୍ଟ ।

"ଦେଖ ଦେଖ ଗୋ ସୁନ୍ଦର ଗଳା
ସେ ତ କମ୍ବୁର ପ୍ରାୟେ ଧବଳା
ଏତେ ବୋଲି ଗୋପୀ ଶ୍ରଦ୍ଧାପାଇ ଅତି
ସର୍ବେ ଲମ୍ବାଇଲେ ପୁଷ୍ପମାଳା, ଗୋ ସଜନି ।" (୨୦/୪୩) ।

ଗରୁଡ଼ଙ୍କ ପାଦ ଧରି ଗୋପୀମାନେ ମିନତି କରିଛନ୍ତି । ସେ ଶ୍ରୀକୃଷ୍ଣଙ୍କର ସାନ୍ନିଧିରେ ଆଆନ୍ତି । ଦେବତାମାନେ ତାଙ୍କ ଦ୍ୱାରି ଗୁହାରି କରନ୍ତି । ସେ ସାମାନ୍ୟ ପକ୍ଷୀ ନୁହନ୍ତି, ସିଦ୍ଧ ସାଧକ । ସେ ବୁଝିଥିଲେ, ଗୋପୀମାନଙ୍କୁ ଛାଡ଼ିଯିବା ପାଇଁ ଶ୍ରୀକୃଷ୍ଣ ବଡ଼ ବ୍ୟଥିତ ।

ଗରୁଡ଼ ଋଷି କାଶ୍ୟପ ଓ ବିନତାଙ୍କର ପୁତ୍ର । ବିନତା ପକ୍ଷିଣୀଙ୍କର ଦୁଇ ଗୋଟି ଅଣ୍ଡ ପ୍ରସୂତ ହୋଇଥିଲା । ଗୋଟିଏ ଅକାଳରେ ଭଗ୍ନ ହେବାରୁ ନିମ୍ନାଙ୍ଗ-ହୀନ ସୂର୍ଯ୍ୟସାରଥି ଅରୁଣ ଜନ୍ମ ହେଲେ । ଅନ୍ୟଟିରୁ ବହୁ ଶତବର୍ଷ ପରେ ଗରୁଡ଼ ଜନ୍ମ ହୋଇଥିଲେ । ତେଣୁ ଗରୁଡ଼ ଅର୍ଦ୍ଧପକ୍ଷୀ ଓ ଅର୍ଦ୍ଧମାନବ । ତାଙ୍କର ମୁଖ ଶ୍ୱେତବର୍ଣ୍ଣ ପକ୍ଷ ରକ୍ତବର୍ଣ୍ଣ ଓ ଶରୀର ସ୍ୱର୍ଣ୍ଣାଭ । ଗରୁଡ଼ ଏପରି ଜିତେନ୍ଦ୍ରିୟ ଥିଲେ ଯେ ଅମୃତ ପାନର ଲୋଭ ସେ ସମ୍ବରଣ କରିଥିଲେ । ଫଳରେ ବିଷ୍ଣୁ ପ୍ରୀତ ହୋଇ ତାଙ୍କୁ ବର ଯାଚିଲେ । ଗରୁଡ଼ ଅମରତ୍ୱ ପ୍ରାର୍ଥନା କଲେ । ଗରୁଡ଼ ମଧ୍ୟ ବିଷ୍ଣୁଙ୍କୁ ତାଙ୍କଠାରୁ ବର ପ୍ରାର୍ଥନା କରିବାକୁ କହିଲେ । ବିଷ୍ଣୁ ଗରୁଡ଼ଙ୍କୁ ତାଙ୍କ ବାହନ ହେବାକୁ ଓ ରଥଧ୍ୱଜରେ ଅଧିଷ୍ଠାନ କରିବାକୁ କହିଲେ । ଗରୁଡ଼ ତଥାସ୍ତୁ ବୋଲି ବରଦାନ ଡରିଥିଲେ । ଗରୁଡ଼ ପୁରାଣ ଅଷ୍ଟାଦଶ ପୁରାଣ ମଧ୍ୟରୁ ଅନ୍ୟତମ ।

ଗରୁଡ଼ ପୃଷ୍ଠରେ ଅଷ୍ଟପାଟବଂଶୀଙ୍କ ସହିତ ଶ୍ରୀକୃଷ୍ଣ ମର୍ତ୍ତ୍ୟ ବୃନ୍ଦାବନରୁ ଯାତ୍ରା କରିବାର ଏକ ଆଧ୍ୟାତ୍ମିକ ତାତ୍ପର୍ଯ୍ୟ ଥାଇପାରେ । ଗରୁଡ଼ଙ୍କର ବେଦମୟତ୍ୱ ଭାଗବତରେ ବର୍ଣ୍ଣିତ । ପଦ୍ମପୁରାଣ ଉତ୍ତର ଖଣ୍ଡରେ ମଧ୍ୟ ବୈନତେୟ ତ୍ରୟୀଶ୍ୱରଃ ବୋଲି ଉଲ୍ଲେଖ ରହିଛି । ଗରୁଡ଼ ଉପନିଷଦରେ ଗରୁଡ଼ଙ୍କର ବେଦମୟତ୍ୱ ପ୍ରତିପାଦିତ ।

ବିଷ୍ଣୁଙ୍କୁ ବେଦବହନ କରେ । ବେଦରେ ତାଙ୍କ ମହିମା ପ୍ରକାଶିତ । ତେଣୁ ବେଦ ବିଷ୍ଣୁଙ୍କ ବାହନ, ସେଇ ବେଦ ହିଁ ଗରୁଡ଼ । ଅଷ୍ଟପାଟବଂଶୀ ନିର୍ଗୁଣମୟୀ ବିଷ୍ଣୁଙ୍କର ଐଶ୍ୱର୍ଯ୍ୟମୟୀ ଅଷ୍ଟଶକ୍ତିରୂପେ ବ୍ୟାଖ୍ୟାତ । ବେଦକୁ ଆଶ୍ରୟ କରି ଭଗବାନ ଶ୍ରୀକୃଷ୍ଣଙ୍କର ନିତ୍ୟସେବକ ସହ ମର୍ତ୍ତ୍ୟଲୀଳା ଦର୍ଶନ କରିବାକୁ ସେମାନେ ସମର୍ଥ ହୋଇଥିଲେ । ମାତ୍ର ରୁକ୍ମଣୀଙ୍କ ସହ ବାସୁଦେବ ବେଦମୟ ଗରୁଡ଼ ପୃଷ୍ଠରେ ଯାଇ ନିର୍ବେଦ ପୁରୁଷ ଭଗବାନ ଶ୍ରୀକୃଷ୍ଣ ଗୋଲକସ୍ଥିତ ନିତ୍ୟ ରାସଲୀଳା ଦର୍ଶନରେ

ସଫଳ କାମ ହୋଇଥିଲେ । ଶ୍ରୀକୃଷ୍ଣଙ୍କର ଲୀଳାର ମହତ୍ତ୍ୱ ବେଦର ଅତୀତ । ଏହା ଭାଗବତରେ ବ୍ରହ୍ମସୂତ୍ରରୁ ପରିପାଦିତ । ବେଦର ଅର୍ଥ ଜ୍ଞାନ । ଜାଣିବା, ଶୁଣିବା, ଦେଖିବା ସବୁ ବେଦ ବା ଜ୍ଞାନ । ଗରୁଡ଼ଙ୍କର ବେଦମୟତ୍ୱ ହେଉଛି ତାଙ୍କର ଜ୍ଞାନମୟତ୍ୱ । ସେ ପରମଜ୍ଞାନୀ ଓ ତପୀ ।

ରୁକ୍ମଣୀ—

ଐଶ୍ୱର୍ଯ୍ୟ ଗୁଣରେ ଶ୍ରେଷ୍ଠ ମହାଲକ୍ଷ୍ମୀଙ୍କ ଅଂଶରୁ ଜାତ ସେ ଶ୍ରୀକୃଷ୍ଣଙ୍କର ପାଟ ମହିଷୀ ବିଦର୍ଭରାଜ ଭୀଷ୍ମକଙ୍କର କନ୍ୟା ରୁକ୍ମଣୀ ରହସ୍ୟମଣ୍ଡପର ନାୟିକା । ହରିବଂଶରେ ରୁକ୍ମଣୀଙ୍କ ସମ୍ବନ୍ଧରେ କୁହାଯାଇଛି, ବିଦର୍ଭରାଜ ଭୀଷ୍ମକଙ୍କ ଆତ୍ମଜା ରୁକ୍ମଣୀ କୃଷ୍ଣପୁତ୍ରମାନଙ୍କର ଅର୍ଦ୍ଧାଙ୍ଗିନୀ । ଆତ୍ମୀୟ ସ୍ୱଜନ ଓ ଅତିଥି ଅଭ୍ୟାଗତ ଗୃହକୁ ଆସିଲେ ସେମାନଙ୍କର ଆଦର ଯତ୍ନ ପରିଚର୍ଯ୍ୟା ବିଷୟରେ ରୁକ୍ମଣୀ ଥିଲେ ଖୁବ୍ ଯତ୍ନଶୀଳା ।

ଐଶ୍ୱର୍ଯ୍ୟ ଶ୍ରେଷ୍ଠା ରୁକ୍ମଣୀଙ୍କ ପ୍ରତି ଶ୍ରୀକୃଷ୍ଣ ଅତ୍ୟନ୍ତ ଶ୍ରଦ୍ଧାଶୀଳ । ରୁକ୍ମଣୀ ଶ୍ରୀକୃଷ୍ଣଙ୍କର ଅନୁରକ୍ତା ପ୍ରେମମୟୀ ପତ୍ନୀ । ଶ୍ରୀକୃଷ୍ଣଙ୍କ ପରି ତାଙ୍କର ଥିଲା ସୁରମ୍ୟ ଅଙ୍ଗ ଓ ସେ ଥିଲେ ସର୍ବ ସୁଲକ୍ଷଣୀ ଓ ସର୍ବଗୁଣ ସମ୍ପନ୍ନା । ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଥିଲା ସୁବିସ୍ତୃତ ପ୍ରେମ । ଷୋଳସହସ୍ର ମହିଷୀଙ୍କ ମଧ୍ୟରେ ସେ ଥିଲେ ଶ୍ରୀକୃଷ୍ଣଙ୍କର ପ୍ରାଣସମା । ତାଙ୍କର ଅସାମାନ୍ୟ ରୂପଲାବଣ୍ୟରେ ଶ୍ରୀକୃଷ୍ଣ ତାଙ୍କ ପ୍ରତି ଆକୃଷ୍ଟ ଓ ଶ୍ରୀକୃଷ୍ଣଙ୍କ ଗୁଣାବଳୀରେ ରୁକ୍ମଣୀ ତାଙ୍କ ପ୍ରତି ଅନୁରକ୍ତା ହୋଇ ତାଙ୍କୁ ପତିତ୍ୱରେ ବରଣ କରିଥିଲେ ।

ରହସ୍ୟମଣ୍ଡପରେ ରୁକ୍ମଣୀଙ୍କୁ ନାୟିକା ଓ ଶ୍ରୀକୃଷ୍ଣଙ୍କୁ ନାୟକ ରୂପେ ବର୍ଣ୍ଣନା କରାଯାଇଅଛି । ଉନେ ରୁକ୍ମଣୀ ଠାକୁରାଣୀ ସ୍ୱାମୀଙ୍କ ନିକଟରେ ଏକାନ୍ତରେ ଥିବା ସମୟରେ ବେଳଜାଣି ଅତ୍ୟନ୍ତ ବିନମ୍ର ଆକୁଳ ଅନ୍ତରରେ ସ୍ୱାମୀଙ୍କର ଉପଦ୍ରବର କାରଣ ଜିଜ୍ଞାସା କରିଛନ୍ତି । ଶ୍ରୀକୃଷ୍ଣଙ୍କୁ ଜିଜ୍ଞାସା କରିବାର ସ୍ପର୍ଦ୍ଧା ଅନ୍ୟ ମହିଷୀମାନଙ୍କର ନଥିଲା । ମାତା, ପିତା, ଉଗ୍ରସେନ ଓ ଉଦ୍ଧବ ମଧ୍ୟ ଶଙ୍କିତ ହୋଇ ରହିଛନ୍ତି, କିନ୍ତୁ ରୁକ୍ମଣୀ ଶ୍ରୀକୃଷ୍ଣଙ୍କର ଦୟନୀୟ ଅବସ୍ଥା ଦେଖି ତାହା ସହ୍ୟ କରି ପାରି ନାହାନ୍ତି । ଶ୍ରୀକୃଷ୍ଣଙ୍କର ସୁଖରେ ସେ ସୁଖୀ, ଦୁଃଖରେ ସମଦୁଃଖୀ । ରୁକ୍ମଣୀଙ୍କର ବିନମ୍ର-ବୋଧ ବଚନ ଶୁଣି ଶ୍ରୀକୃଷ୍ଣ ତାଙ୍କୁ ସମାଦର କରିଛନ୍ତି । ରୁକ୍ମଣୀଙ୍କର ଚରିତ୍ର ମଧ୍ୟ ଏହି ବିଶେଷଣରେ ବିଶେଷିତ ହୋଇ ଯାଇଛି । ରୁକ୍ମଣୀ ବିନୀତ ଅଥଚ ଅଭିମାନରେ ସ୍ଫୁରିତ ।

ଶ୍ରୀକୃଷ୍ଣଙ୍କ ମୁଖରୁ ଅନ୍ୟନାରୀ ପ୍ରତି ତାଙ୍କର ଐକାନ୍ତିକ ପ୍ରୀତିର ପରିଚୟ ପାଇ ରୁକ୍ମିଣୀ ହତଚେତନ ହୋଇ ପଡ଼ିଛନ୍ତି । ସେ ମନେ ମନେ ସମସ୍ତ ବିଷୟକୁ ବାରମ୍ବାର ବିଚାର କରିଛନ୍ତି । ଅକସ୍ମାତ୍ ସେ କ୍ରୋଧରେ ଉତ୍‌କ୍ଷିପ୍ତ ହୋଇ ପଡ଼ି ନାହାନ୍ତି । ସେ ଶ୍ରୀକୃଷ୍ଣଙ୍କର କଥାଗୁଡ଼ିକ ପର୍ଯ୍ୟାଲୋଚନା କରି ବୁଝିଛନ୍ତି ଯେ ଗୋପପୁରର ଶ୍ରେଷ୍ଠ ନାୟିକା ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ମନୋହାରିଣୀ, ପ୍ରାଣ ସଙ୍ଗିନୀ । ଶ୍ରୀରାଧାଙ୍କ ପାଇଁ ଶ୍ରୀକୃଷ୍ଣ ଏପରି ବିରହସନ୍ତପ୍ତ ମାତ୍ର ଶ୍ରୀରାଧା ଗୋପାଙ୍ଗନା ପରସ୍ତ୍ରୀ ପୁଣି ଜାତିରେ ଗୋପାଳୁଣୀ । ସେମାନେ ସ୍ୱାମୀ ପୁତ୍ର ନେଇ ସ୍ୱ ସ୍ୱ ଗୃହରେ ପ୍ରତିଷ୍ଠିତା । ସେମାନଙ୍କ ପକ୍ଷରେ ଶ୍ରୀକୃଷ୍ଣଙ୍କ ମନକୁ କିଣିନେବା କିପରି ସମ୍ଭବ ! ଏହିପରି ଭାବରେ ନିଜ ମଧ୍ୟରେ କ୍ଷତବିକ୍ଷତ ହୋଇପଡ଼ିଛନ୍ତି ରୁକ୍ମିଣୀ । କବିଙ୍କ ଭାଷାରେ,

"ଏତ ଅଲୋକିତ ଚକିତ କଥା
ଅଧିକେ ହୃଦକୁ ଲାଗିଲା ବଥା
ମୁଁ କିସ କରିବି
ଏବେ ସେ ଗରଳ ଖାଇ ମରିବି ।"

ରୁକ୍ମିଣୀଙ୍କର ଏହି ଉକ୍ତି ତାଙ୍କ ଚରିତ୍ର ସୌନ୍ଦର୍ଯ୍ୟ ଉଦ୍‌ଘାଟିତ କରିଅଛି । ସେ ସ୍ୱାଭାବିକ ନାରୀଧର୍ମରେ ପ୍ରକଟିତା । ଐଶ୍ୱରିକ ଗୁଣ ସମ୍ପନ୍ନା ଅଲୌକିକ ନାରୀମୂର୍ତ୍ତି ସେ ନୁହନ୍ତି । ଶ୍ରୀକୃଷ୍ଣ ବହୁବଲ୍ଲଭ । ତେଣୁ ସପତ୍ନୀ ସହିତ ଚଳିବାରେ ରୁକ୍ମିଣୀ ଅଭ୍ୟସ୍ତା । ସତ୍ୟଭାମାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ସମ୍ଭ୍ରମ ଓ ସ୍ନେହପୂର୍ଣ୍ଣ ଭାବ ଦର୍ଶନରେ ରୁକ୍ମିଣୀ ବିଚଳିତ ହୋଇ ନାହାନ୍ତି । ମାତ୍ର ଅଜ୍ଞାତ ନାରୀପ୍ରତି ଶ୍ରୀକୃଷ୍ଣଙ୍କର ଏକନିଷ୍ଠ ଆସକ୍ତି ଦେଖି ସେ ଦୁଶ୍ଚିନ୍ତାଗ୍ରସ୍ତ ହୋଇ ପଡ଼ିଛନ୍ତି । ତଥାପି ସେ ହୃଦୟର ମହତ୍ତ୍ୱକୁ ବଳି ଦେଇ ନାହାନ୍ତି । କବିଙ୍କ ଭାଷାରେ,

"ପ୍ରଭୁଙ୍କ ମନକୁ ବନ୍ଧିଲା ଯେହୁ
ଆମ୍ଭ ଉପରେ ଅଧିକାରୀ ସେହୁ ।
ତାଙ୍କଠାରୁ ଶିଖି ଶ୍ରୀଅଙ୍ଗ ସେବା
ପ୍ରଭୁ ମନ ତୋଷି ଜାଣିମୁ ଅବା ।
କୃପାକର ତୁମ୍ଭେ,
ତାଙ୍କ ଚରଣେ ଖଟିଥିବୁ ଆମ୍ଭେ ।"

ଏହି ଉକ୍ତିରୁ ରୁକ୍ମିଣୀଙ୍କର ମହତ ହୃଦୟର ପରିଚୟ ମିଳେ । ସ୍ୱାମୀଙ୍କର ସୁଖ ସନ୍ତୋଷ ବିଧାନ ନିମନ୍ତେ ନିଜର ବଂଶ ଗୌରବ ଓ ଅଭିମାନରେ ଜଳାଞ୍ଜଳି

ଦେବାକୁ ମଧ୍ୟ ସେ କୁଣ୍ଠିତା ନୁହନ୍ତି । ଏହା ହିଁ ପାତିବ୍ରତ୍ୟର ମନୋଜ୍ଞ ଦୃଷ୍ଟାନ୍ତ । 'ସାତପାଟ ଉପରେ ଅଧିଷ୍ଠାତ୍ରୀ' ରୁକ୍ମିଣୀଙ୍କୁ ଶ୍ରୀକୃଷ୍ଣ କହିଛନ୍ତି ।

"ରାଧା ସାତ୍ତ୍ୱିକା, ରାଜସୀ ରୁକ୍ମିଣୀ
ଯାହା କହୁଛି ବେଦ ଅଥର୍ବାଣୀ ।"

ରୁକ୍ମିଣୀ ରାଜସିକ ଗୁଣମଣ୍ଡିତା ହେଲେହେଁ ଅନ୍ୟ ନାରୀମାନଙ୍କ ଅପେକ୍ଷା ବିଶେଷ ଧୈର୍ଯ୍ୟଶୀଳା । ଅନ୍ୟମାନେ ଦୁଃଖ, କ୍ଷୋଭ ଓ କ୍ରୋଧରେ କ୍ରନ୍ଦନ କରିବା ସମୟରେ ରୁକ୍ମିଣୀ ସେମାନଙ୍କୁ ପଛରେ ରହିବାକୁ ନିର୍ଦ୍ଦେଶ ଦେଇ ଶ୍ରୀକୃଷ୍ଣଙ୍କର ନିଗୂଢ଼ ପ୍ରେମର ରହସ୍ୟ ଜାଣିବାକୁ ଚାହିଁଲେ । ତେତିଶକୋଟି ଦେବତା, ବ୍ରହ୍ମା, ରୁଦ୍ର ପ୍ରମୁଖ ମୁଖ୍ୟ ଦେବତା, ଧାର୍ମିକ, ବିବେକୀ, ଯୋଗୀ, ଯତି, ଦାନୀ, ଧ୍ୟାନୀ, ବେଦାନ୍ତୀ, ବ୍ରତସ୍ନାତ, ମୁନି, ଜ୍ଞାନୀ କେହି ଭଗବାନ ଶ୍ରୀକୃଷ୍ଣଙ୍କର ଆତ୍ମାର ପ୍ରକୃତ ସ୍ୱରୂପ ଜାଣି ପାରିଲେ ନାହିଁ, କିନ୍ତୁ କେବଳ ଗୋପବାଳାମାନେ କିପରି ଜାଣିଲେ । ସୁଚତୁରା, ବୁଦ୍ଧିମତୀ, ଧୈର୍ଯ୍ୟଶୀଳା, କୌତୂହଳ ପରବଶା ରୁକ୍ମିଣୀଙ୍କ ପକ୍ଷରେ ଏପରି ଜଟିଳ ପ୍ରଶ୍ନ ଜିଜ୍ଞାସା କରିବା ସମ୍ଭବ । ରୁକ୍ମିଣୀଙ୍କୁ କବି ବହୁ ସ୍ତବରେ ବନ୍ଦିତ କରିଛନ୍ତି । ଶ୍ରୀକୃଷ୍ଣଙ୍କ ମୁଖରେ ରୁକ୍ମିଣୀଙ୍କର ଗୁଣାବଳୀ ବର୍ଣ୍ଣିତ ହୋଇଅଛି ।

"ତ୍ରିଭୁବନ ଜନମନ ଆନନ୍ଦ ଦାୟିନୀ ଗୋ
ସର୍ବ ଦୁଃଖ-ଦାରିଦ୍ର୍ୟ-ଖଣ୍ଡନୀ ।"

ରୁକ୍ମିଣୀ ପ୍ରକୃତିକାରିଣୀ ସର୍ବଭୂତରେ ସନ୍ତାପହାରିଣୀ । ତେଣୁ ଶ୍ରୀକୃଷ୍ଣ ଅଷ୍ଟପାଟରାଣୀଙ୍କ ମଧ୍ୟରୁ ମହାଲକ୍ଷ୍ମୀ ଅଂଶଜାତ ରୁକ୍ମିଣୀଙ୍କୁ ନିତ୍ୟରାସସ୍ଥଳୀ ଦର୍ଶନ କରାଇବାକୁ ନେଇଥିଲେ । କାରଣ,

"ବିଷ୍ଣୁ ବାସୁଦେବ କଳା ରୁକ୍ମିଣୀ ଅଂଶ
ଲକ୍ଷ୍ମୀ କଳାମାନ ଯେଣୁ ହେଲେ ପ୍ରକାଶ ।"

ତ୍ରିପୁରାଙ୍କର ମନ୍ତ୍ରତନ୍ତ୍ରରେ ଦୀକ୍ଷିତା ହୋଇ ରୁକ୍ମିଣୀଙ୍କର ଅନ୍ତର ଆଲୋକିତ ହେଲା । ସକଳ ରହସ୍ୟର ଗଣ୍ଠି ଉନ୍ମୋଚିତ ହେଲା । ସେ ଦ୍ୱାରକାର ନାରୀମାନଙ୍କୁ ମନ୍ତ୍ରରେ ଦୀକ୍ଷିତା କରି ସେମାନଙ୍କର ଗୁରୁ ହୋଇଥିଲେ ।

ଦେବଦୁର୍ଲଭ ରୁକ୍ମିଣୀଙ୍କର ଗର୍ବ ଖର୍ବ କରି ଶ୍ରୀରାଧାଙ୍କର ମହତ୍ତ୍ୱ ପ୍ରଦର୍ଶନ ଉଦ୍ଦେଶ୍ୟରେ କାବ୍ୟ ରଚନା କଲେ ହେଁ ରୁକ୍ମିଣୀଙ୍କୁ ଶ୍ରୀରାଧାଙ୍କର ସମତୁଲ୍ୟା ରୂପେ ସ୍ୱୀକୃତି ଦେଇଛନ୍ତି ।

**ଅଷ୍ଟପାଟବଂଶୀ :—**

ଦ୍ୱାରକାର ଅଧିପତି ଶ୍ରୀକୃଷ୍ଣ ରାଜକୀୟ ଐଶ୍ୱର୍ଯ୍ୟ ବିଳାସରେ ବିମଣ୍ଡିତ । ତାଙ୍କର ବହୁ ବିବାହିତା ମହିଷୀଙ୍କ ମଧ୍ୟରେ ଅଷ୍ଟପାଟବଂଶୀ ସୁପ୍ରସିଦ୍ଧା । ଅଷ୍ଟପାଟ-ବଂଶୀଙ୍କ ମଧ୍ୟରେ ରୁକ୍ମିଣୀ ଜ୍ୟେଷ୍ଠା ଓ ସବୁ ବିଷୟରେ ଶ୍ରେଷ୍ଠା । ଏମାନେ ରାଜ-ବଂଶରେ ସମ୍ଭୂତା ରାଜସିକ କନ୍ୟା, ସାତ୍ତ୍ୱିକ ଭାବାପନ୍ନ ସତ୍ତ୍ୱମୟୀ କନ୍ୟା ନୁହନ୍ତି, ଯଦିଓ ପ୍ରତ୍ୟେକେ ଦେବକଳାରେ ଜନ୍ମ । ପାଟମହିଷୀ ରୁକ୍ମିଣୀ ମହାଲକ୍ଷ୍ମୀ ଅଂଶ ସମ୍ଭୂତା । ସତ୍ୟଭାମା ବସୁନ୍ଧରାଙ୍କର ଅବତାର । ମିତ୍ରବିନ୍ଦା ସୂର୍ଯ୍ୟପତ୍ନୀ କଳାସମ୍ଭୂତା; ସୁନନ୍ଦା ସରସ୍ୱତୀଙ୍କ ଅବତାର । ନାଗ୍ନଜିତୀ ସାବିତ୍ରୀ ବା ବେଦମାତାଙ୍କ ଅଂଶରେ ଜନ୍ମ । ସୁଶୀଳା ସ୍ୱାହାଙ୍କ ଅଂଶଜାତ । ଜାମ୍ବବତୀ ଦୁର୍ଗାଙ୍କ ଅର୍ଦ୍ଧାଂଶରେ ସମ୍ଭୂତା । ଲକ୍ଷ୍ମଣା ତୁଳସୀଙ୍କ ଅର୍ଦ୍ଧାଂଶରେ ଜାତା । ବ୍ରହ୍ମ ବୈବର୍ତ୍ତ ପୁରାଣରେ ଅଷ୍ଟପାଟବଂଶୀ-ଙ୍କର ପରିଚୟ ଏହିପରି ଭାବରେ ଦିଆଯାଇଅଛି ।

ଗୋପୀଭାବ ଶ୍ରୀକୃଷ୍ଣ ପ୍ରାପ୍ତିର ସର୍ବୋତ୍କୃଷ୍ଟ ପନ୍ଥା—ଏହା ଶ୍ରୀକୃଷ୍ଣ ନିଜେ ରାଣୀମାନଙ୍କୁ ବୁଝାଇଛନ୍ତି । ଅଷ୍ଟପାଟମହିଷୀ ଗୋପାଙ୍ଗନାଙ୍କ ପ୍ରତି ଈର୍ଷାଭାବ ପ୍ରକାଶ କରିଛନ୍ତି ସାଧାରଣ ମାନବୀ ଢଙ୍ଗରେ । ଅଷ୍ଟପାଟବଂଶୀ ସ୍ୱକୀୟା ନାୟିକା, ବିବାହିତା ପତ୍ନୀ । ନିଜ ସ୍ୱାମୀ ପରନାରୀ ପ୍ରତି ଆକୃଷ୍ଟ ହେବ, ପୁଣି ପରସ୍ତ୍ରୀର ପ୍ରଶଂସାରେ ଶତମୁଖ ହେବ; ଏହା ଅସହ୍ୟ କଳ୍ପନା । ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ— ତାଙ୍କର ଲୀଳା ବିଚିତ୍ର ଓ ରହସ୍ୟପୂର୍ଣ୍ଣ । ତେଣୁ ସାଧାରଣ ମାନବୀ ଦୃଷ୍ଟିରେ ତାଙ୍କର କାର୍ଯ୍ୟକଳାପର ବିଚାର ଯୁକ୍ତିଯୁକ୍ତ ନୁହେଁ । ଅଷ୍ଟପାଟବଂଶୀ ଏକଥା ବିସ୍ମୃତ ହୋଇ ସ୍ୱାଭାବିକ ଭାବରେ ଈର୍ଷାପରବଶ ହୋଇ ପଡ଼ିଛନ୍ତି । ଅଭିମାନ ସ୍ଫୁରିତ ଈର୍ଷାକାତର ବଚନିକା ଅଷ୍ଟପାଟବଂଶୀଙ୍କର ଚରିତ୍ର ଉଦ୍‌ଘାଟନ କରିଅଛି । କବିଙ୍କ ଭାଷାରେ,

"କେବଳ ବେଭାର ସରି କେତେ ମାନେ ଅଛ ଦେଖି
ଏକ ଏକ ଯୁବତୀକି ଦୁହୁଇ ଭୁଆ
ନଜାଣିଲ ପ୍ରାଟଯ୍ୟ ହୋଇ କେତେ ହେଁ ପଚାର ତହିଁ
ସୁସ୍ୱାଦୁ ମଣିଛ ସତୀ ପତିଙ୍କ କଥା,
ଯାହାମନ ଯହିଁରେ ରତ,
କୋଟି ସ୍ୱର୍ଗ ଭୋଗ ତାକୁ କଣ୍ଟକ ମତ ।"

ଶ୍ରୀକୃଷ୍ଣଙ୍କର ଲୀଳାକାରିଣୀ ନାୟିକାମାନଙ୍କ ମଧ୍ୟରେ ଅଷ୍ଟପାଟବଂଶୀଙ୍କ ସ୍ଥାନ ସ୍ୱତନ୍ତ୍ର । ଲୀଳାବିଳାସକାରୀ ଶ୍ରୀକୃଷ୍ଣ ମଥୁରାରେ ମଧୁପୁର ନାରୀଙ୍କ ସହିତ,

ବୃନ୍ଦାବନରେ ଗୋପାଙ୍ଗନା ଓ ଦ୍ୱାରକାରେ ଅଷ୍ଟପାଟବଂଶୀଙ୍କ ସହିତ ଲୀଳା କରିଛନ୍ତି । ଶ୍ରୀକୃଷ୍ଣଙ୍କର ଏହି ନାୟିକାମାନେ ଭିନ୍ନ ଭିନ୍ନ ଭାବର ଅଧିକାରିଣୀ । ମଥୁରାର ନାରୀମାନେ ଆତ୍ମସୁଖ ପାଇଁ ଶ୍ରୀକୃଷ୍ଣଙ୍କ ସହିତ ମିଳନ ଅଭିଳାଷ ପୋଷଣ କରିଛନ୍ତି । ତେଣୁ ସେମାନଙ୍କୁ ସାଧାରଣୀ ବୋଲି କୁହାଯାଇଥାଏ । ବୃନ୍ଦାବନର ନାରୀଗଣ ନିଜ ସୁଖ ପ୍ରତି ଧ୍ୟାନ ନ ଦେଇ କେବଳ ଶ୍ରୀକୃଷ୍ଣଙ୍କ ସୁଖ ବିଧାନ ଲାଗି ମିଳିତ ହୁଅନ୍ତି । ସେମାନେ ସମର୍ଥା ରୂପେ ବିଦିତ । ଦ୍ୱାରକାର ଅଷ୍ଟପାଟବଂଶୀ ଓ ଅନ୍ୟାନ୍ୟ ନାରୀମାନେ ନିଜର ଓ ସ୍ୱାମୀଙ୍କର ଉଭୟଙ୍କ ସୁଖ ପ୍ରାର୍ଥିନୀ—ତେଣୁ ସେମାନେ ସାମଞ୍ଜସ୍ୟ ।

ଅଷ୍ଟପାଟବଂଶୀ ସ୍ୱକୀୟା ନାୟିକା । ସେମାନେ ଶାସ୍ତ୍ରମତରେ ପାଣି ଗ୍ରହଣ ବିଧି ଅନୁସାରେ ଶ୍ରୀକୃଷ୍ଣଙ୍କର ପତ୍ନୀ ରୂପେ ସ୍ୱୀକୃତି ଲାଭ କରିଛନ୍ତି । ସେମାନେ ଗୃହିଣୀ ଭାବରେ ଗୃହରେ ଅବସ୍ଥାନ କରି ଅବିରତ ସ୍ୱାମୀ ସେବାରେ ନିରତ । ଚିରାଚରିତ ପାତିବ୍ରତ୍ୟ ଧର୍ମ ପଥରେ ରହି ଗୁରୁଜନଙ୍କ ପ୍ରତି ସେମାନେ ଶ୍ରଦ୍ଧାଶୀଳା ଓ ପରିଜନବର୍ଗଙ୍କ ପ୍ରତି ସ୍ନେହଶୀଳା । ଏହିପରି ଆନନ୍ଦଦାୟିନୀ ସ୍ୱକୀୟା ରମଣୀଙ୍କ ସହିତ ଶ୍ରୀକୃଷ୍ଣ ଦ୍ୱାରକାରେ ରହି ବିହାର କରନ୍ତି ।

ଦ୍ୱାରକାରେ ଶ୍ରୀକୃଷ୍ଣଙ୍କର ସ୍ୱକୀୟା ମହିଷୀଙ୍କର ସଂଖ୍ୟା ଷୋଳହଜାର ଏକ ଶହ ଆଠ । ମହିଷୀମାନଙ୍କ ମଧ୍ୟରେ ପ୍ରଧାନ ଆଠଜଣ ଅଷ୍ଟପାଟବଂଶୀ ରୂପେ ସୁପ୍ରସିଦ୍ଧା । ଏହି ଆଠଜଣ ପ୍ରଧାନ ମହିଷୀଙ୍କ ମଧ୍ୟରେ ରୁକ୍ମିଣୀ ଓ ସତ୍ୟଭାମା ସର୍ବାଗ୍ରେ ବରଣୀୟା । ରୁକ୍ମିଣୀ ଐଶ୍ୱର୍ଯ୍ୟରେ ଶ୍ରେଷ୍ଠା ଏବଂ ସତ୍ୟଭାମା ଥିଲେ ମହିଷୀ ମାନଙ୍କ ମଧ୍ୟରେ ଉତ୍ତମା ଓ ପ୍ରେମ ପ୍ରୀତିରେ ପରମ ସୌଭାଗ୍ୟବତୀ । ସେ ସମସ୍ତଙ୍କ ଅପେକ୍ଷା ସୌଭାଗ୍ୟଶାଳିନୀ । ରହସ୍ୟମଞ୍ଜରୀରେ ଏହି ଅଷ୍ଟପାଟବଂଶୀଙ୍କ ବିଷୟ ବିଶେଷ ଭାବରେ ବର୍ଣ୍ଣିତ ହୋଇଅଛି । ଜାମ୍ବବତୀ ଜାତେର୍ଷା ଭାବ ମଣ୍ଡିତା । ରହସ୍ୟମଞ୍ଜରୀରେ ଜାମ୍ବବତୀ ଶ୍ରୀକୃଷ୍ଣଙ୍କୁ ଈର୍ଷା ଜର୍ଜରିତ ଅନ୍ତରରେ କଟୁ ଭର୍ତ୍ସନା କରିଛନ୍ତି ।

ଅଷ୍ଟପାଟବଂଶୀ ବ୍ରଜକୁମାରୀ ଶ୍ରୀରାଧାଙ୍କର ଅଙ୍ଗତେଜ ଓ ରୂପକାନ୍ତି ଦେଖି ମୂର୍ଚ୍ଛିତା ହୋଇପଡ଼ିଲେ । ଚେତନା ଲାଭ ପରେ ଅହଂକାର ବର୍ଜନ କରି ଦିବ୍ୟଚେତନା ପ୍ରାପ୍ତି ଓ ଦୃଢ଼ଚିତ୍ତ ହେବା ପାଇଁ ସେମାନେ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରିଛନ୍ତି । ଶ୍ରୀରାଧାଙ୍କୁ ମନରେ ଚିନ୍ତା କରି ଭୟଶୂନ୍ୟ ଚିତ୍ତରେ ସେମାନେ ଭିତରକୁ ପ୍ରବେଶ କଲେ । ରାଧାକୃଷ୍ଣଙ୍କର ରୂପ ଓ ଗୁଣକୁ ସେମାନେ ଶତମୁଖରେ ପ୍ରଶଂସା କଲେ ଓ ଶ୍ରୀରାଧାଙ୍କର "ଦାସୀପଣକୁ ନିଜ ନୋହି ଯୋଗ୍ୟ" ବୋଲି ମତ ବ୍ୟକ୍ତ

କଲେ । ଶ୍ରୀରାଧାଙ୍କର ରୁଚିର ରୂପଦର୍ଶନରେ ଅଷ୍ଟପାଟବଂଶୀ ଚନ୍ଦ୍ରକଳିତା, ମୁଗ୍‌ଧା ମାତ୍ର ଈର୍ଷାନ୍ୱିତା ନୁହନ୍ତି । ଅଷ୍ଟପାଟବଂଶୀ ପରାଜିତ ଆତ୍ମା ନୁହନ୍ତି, ବରଂ ଉଦାର ଚିତ୍ତବୃତ୍ତି ସଂପନ୍ନା ଶୁଦ୍ଧାତ୍ମା । ରଜୋଗୁଣବିଶିଷ୍ଟା ନାରୀ ଅହଂକାର ତ୍ୟାଗ କରି ସ୍ୱାମୀର ପ୍ରେୟସୀର ସେବିକା ହେବାର ମନୋଭାବ ପୋଷଣ କରିବା ମହତ୍ ଗୁଣର ପରିଚାୟକ ।

ଦେବଦୁର୍ଲଭ ଅଷ୍ଟପାଟବଂଶୀଙ୍କର ଗର୍ବ ଗଞ୍ଜନ ଉଦ୍ଦେଶ୍ୟରେ କାବ୍ୟ ରଚନା କରିଥିଲେ ହେଁ ସେମାନଙ୍କୁ ନିକୃଷ୍ଟ ରୂପରେ ଚିତ୍ରିତ କରି ନାହାନ୍ତି ।

**ଶ୍ରୀରାଧା :—**

ପ୍ରାଚୀନ ଓଡ଼ିଆ ସମାଜ ବା ସାହିତ୍ୟରେ ଶ୍ରୀରାଧାଙ୍କର ପ୍ରାଧାନ୍ୟ ବିଶେଷ ଭାବରେ ପରିଲକ୍ଷିତ ହୁଏ ନାହିଁ । ଓଡ଼ିଆ ସାହିତ୍ୟରେ ସମ୍ଭବତଃ ସାରଳା ଦାସଙ୍କ ମହାଭାରତର ସଭାପର୍ବରେ ଖଣ୍ଡିକାର ବୃତ୍ତାନ୍ତରେ ପରକୀୟା ପ୍ରୀତିର ପ୍ରସଙ୍ଗ ଅତ୍ୟନ୍ତ ନିନ୍ଦିତ ଭାବରେ ବର୍ଣ୍ଣିତ ହୋଇଅଛି । ପରକୀୟା ପ୍ରୀତି ପ୍ରତି ସେ ସମୟର ସମାଜର ଘୃଣାଭାବ ଥିଲା । ତେଣୁ ସାରଳା ଦାସ ତାଙ୍କ ରଚନାରେ ପରକୀୟା ପ୍ରୀତିର ନିନ୍ଦା କରି ଅଛନ୍ତି । ପ୍ରାଚୀନ କାଳରେ ରଚିତ କୃଷ୍ଣଲୀଳା ସମ୍ବନ୍ଧୀୟ କାବ୍ୟ କବିତାରେ ରାଧାଙ୍କର ନାମୋଲ୍ଲେଖ କେଉଁଠାରେ ଦେଖାଯାଇ ନାହିଁ ।

ଷୋଡ଼ଶ ଶତାବ୍ଦୀର ଆରମ୍ଭରେ ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ ପରେ ବୈଷ୍ଣବ ଧର୍ମଧାରାର ବିପୁଳ ପ୍ରବାହରେ ଶ୍ରୀରାଧା ଉତ୍କଳର ଧର୍ମ ଜଗତରେ ସ୍ଥାନ ଲାଭ କଲେ ଓ ତାପରେ ଓଡ଼ିଆ ସାହିତ୍ୟରେ, ବିଶେଷତଃ କାବ୍ୟ କବିତାରେ ଶ୍ରୀରାଧା କ୍ରମେ ଅଧିଷ୍ଠିତା ହେଲେ । ସେ ହେଲେ ଶ୍ରୀକୃଷ୍ଣଙ୍କର ହୃଦୟହାରିଣୀ, ସର୍ବେନ୍ଦ୍ରିୟ ଆହ୍ଲାଦକାରିଣୀ ଓ ମହାଭାବ ସ୍ୱରୂପିଣୀ । ଆନନ୍ଦ ଘନ ରତିରସ ଆସ୍ୱାଦନରେ ଯେଉଁ ଗୁଣାବଳୀ ନାୟିକାକୁ ପରିପୂର୍ଣ୍ଣ କରି ତୋଳେ, ଶ୍ରୀରାଧା ସେହି ଦିଗରୁ ଅତୁଳନୀୟା । ବୃନ୍ଦାବନ ଲୀଳାରେ ଶ୍ରୀରାଧାଙ୍କର ସମକକ୍ଷା ନାୟିକା ଆଉ ନାହାନ୍ତି । ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ପ୍ରିୟବଲ୍ଲଭା, ଶ୍ରେଷ୍ଠ ନାୟିକା ।

ରହସ୍ୟମଞ୍ଜରୀରେ ଶ୍ରୀରାଧାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କବିଙ୍କର ସମଗ୍ର ଅଭିଳାଷ । ଇଚ୍ଛାମୟ ଭଗବାନ ଶ୍ରୀକୃଷ୍ଣ ନିତ୍ୟ ବୃନ୍ଦାବନରେ ଏକାକୀ ଅବସ୍ଥାନ କରୁଥିଲେ । ତାଙ୍କର ସୃଷ୍ଟି ପାଇଁ ଇଚ୍ଛା ହେଲା । ସେ ଲୀଳା ପାଇଁ ଇଚ୍ଛୁକ ହୋଇ ନିଜେ ଦ୍ୱିଧାରୂପ ହେଲେ । ତାଙ୍କର ଦକ୍ଷିଣାଙ୍ଗ ହେଲା ଶ୍ରୀକୃଷ୍ଣ ଓ ବାମାଙ୍ଗ ହେଲା ଶ୍ରୀରାଧା । ତାଙ୍କ ଲୋମକୂପରୁ ଜାତ ହେଲେ ଗୋପାଙ୍ଗନା । ପରେ ଶ୍ରୀରାଧାଙ୍କ ଲୋମକୂପରୁ ମଧ୍ୟ ଗୋପୀମାନେ ଜାତ ହୋଇଛନ୍ତି ।

ଶ୍ରୀରାଧାଙ୍କ ବାମାଙ୍ଗରୁ ମହାଲକ୍ଷ୍ମୀ ସମ୍ଭୂତା । ମର୍ତ୍ତ୍ୟରେ ଦ୍ୱାରକାବାସୀ ଶ୍ରୀକୃଷ୍ଣଙ୍କର ପତ୍ନୀ ରୁକ୍ମିଣୀ ମଧ୍ୟ ଶ୍ରୀରାଧା ବା ମହାଲକ୍ଷ୍ମୀଙ୍କର ଅଂଶ ସମ୍ଭୂତା । ଶ୍ରୀରାଧା ଶକ୍ତି, ଶ୍ରୀକୃଷ୍ଣ ଶକ୍ତିମାନ । ଭଗବାନଙ୍କ ଶକ୍ତି ପ୍ରଧାନତଃ ଦ୍ୱିବିଧ :—ପରା, କ୍ଷେତ୍ରଜ୍ଞା ବା ଜୀବଶକ୍ତି; ଅପରା ବା ମାୟାଶକ୍ତି । ପରାଶକ୍ତି ପୁଣି ତିନି ଭାଗରେ ବିଭକ୍ତ—ହ୍ଲାଦିନୀ, ସନ୍ଧିନୀ, ସମ୍ବିତ୍ । ଭଗବାନ ନିଜେ ହ୍ଲାଦାତ୍ମା ଅର୍ଥାତ୍ ଆନନ୍ଦ-ମୟ । ଯେଉଁ ଶକ୍ତିଦ୍ୱାରା ସେ ଜୀବକୁ ଆନନ୍ଦ ପ୍ରଦାନ କରନ୍ତି ତାହା ହ୍ଲାଦିନୀ ଶକ୍ତି ନାମରେ ଖ୍ୟାତ । ସନ୍ଧିନୀ ଶକ୍ତି ଦ୍ୱାରା ଜୀବକୁ ସେ ସତ୍ତା ପ୍ରଦାନ କରନ୍ତି ଓ ସମ୍ବିତ୍ ଶକ୍ତିଦ୍ୱାରା ସେ ଜୀବକୁ ଜ୍ଞାନବାନ୍ କରନ୍ତି । ମାତ୍ର ହ୍ଲାଦିନୀ ଶକ୍ତିର ପ୍ରାଧାନ୍ୟ ହିଁ ସର୍ବତ୍ର ସୂଚିତ । ହ୍ଲାଦିନୀ ଶକ୍ତିର ସାର ପ୍ରେମ; ପ୍ରେମର ସାର ଭାବ, ଭାବର ନିର୍ଯ୍ୟାସ ମହାଭାବ । ମହାଭାବରେ ଦୁଇଟି ଅବସ୍ଥା ମାଦନ ଓ ମୋହନ । ଶ୍ରୀରାଧା ମହାଭାବ ସ୍ୱରୂପିଣୀ ମାଦନାଖ୍ୟା; ଗୋପାଙ୍ଗନାମାନେ ମୋହନାଖ୍ୟା । ମାଦନ ଅବସ୍ଥା ମୋହନ ଅବସ୍ଥାଠାରୁ ଶ୍ରେଷ୍ଠତର । ଶ୍ରୀରାଧା ହ୍ଲାଦିନୀ ଶକ୍ତି ଓ ଶ୍ରୀକୃଷ୍ଣ ଏହି ହ୍ଲାଦିନୀ ଶକ୍ତିର ଆନନ୍ଦ ରସଘନ ମୂର୍ତ୍ତି ।

ରହସ୍ୟମଞ୍ଜରୀ କାବ୍ୟରେ ଶ୍ରୀକୃଷ୍ଣଙ୍କୁ ଶ୍ରୁତି, ଶ୍ରୀରାଧାଙ୍କୁ ପ୍ରୀତି ଓ ରୁକ୍ମିଣୀଙ୍କୁ ରତି ରୂପେ ବର୍ଣ୍ଣନା କରାଯାଇଅଛି । ଶ୍ରୁତିରୁ ପ୍ରୀତିର ଉଦ୍‌ଭବ ଓ ପ୍ରୀତିରୁ ରତିର ଉତ୍ପତ୍ତି ବୋଲି ବର୍ଣ୍ଣିତ । ଶ୍ରୀକୃଷ୍ଣଙ୍କ ଅଙ୍ଗରୁ ଶ୍ରୀରାଧା ଜାତ ଓ ଶ୍ରୀରାଧାଙ୍କ ଅଂଶରୁ ରୁକ୍ମିଣୀଙ୍କର ସୃଷ୍ଟି । ଶ୍ରୀକୃଷ୍ଣ ପରମାତ୍ମା, ଶ୍ରୀରାଧା ଜୀବାତ୍ମା ଓ ରୁକ୍ମିଣୀ ଚିନ୍ମୟୀ ପ୍ରକୃତି ।

ଶ୍ରୀରାଧା କୃଷ୍ଣଗତ ପ୍ରାଣା । ଦେବଦୁର୍ଲ୍ଲଭ ଅତି ସତର୍କ ନିଷ୍ଠାର ସହିତ ଏହା ପ୍ରତିପାଦନ କରି କହିଛନ୍ତି—

"ମୋର ବେଦନା ସେ ଅଙ୍ଗେ ବାଜୁଇ
ମୋର ନିମନ୍ତେ ପ୍ରାଣ ମୂରୁଛଇ" (୫/୪୫) ।

ଶ୍ରୀକୃଷ୍ଣଙ୍କର ମଙ୍ଗଳ ପାଇଁ ସେ ସଦାତତ୍ପରା । ଶ୍ରୀକୃଷ୍ଣଙ୍କୁ ମୁହୂର୍ତ୍ତେ ନଦେଖିଲେ ସେ ବାଉଳୀ ପ୍ରାୟ ବନରେ ବୁଲୁଥାଆନ୍ତି । କେଳିସଦନରେ ଏକାନ୍ତରେ ସେ କୃଷ୍ଣ-ସ୍ମୃତି-ମୂର୍ଚ୍ଛିତା ।

ଶ୍ରୀକୃଷ୍ଣଙ୍କ ଚିନ୍ତାରେ ଭାବିନୀ ତନ୍ଦ୍ରାଚ୍ଛନ୍ନ ହୋଇ ପଡ଼ିଛନ୍ତି । ଏହି ସମୟରେ ବଂଶୀରେ ଆଳାପ ଶୁଣି ସ୍ୱପ୍ନ ପ୍ରାୟ ମଣି ଚମକି ପଡ଼ିଲେ ଓ ଚଳେ ପଡ଼ିଗଲେ । ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ବଂଶୀସ୍ୱନ ସହିତ ଅତି ପରିଚିତା । ଏପରି ମଧୁର ସ୍ୱନରେ କୌଣସି ବ୍ରଜକୁମାର ବଂଶୀ ବାଦନ କରିବା ଅସମ୍ଭବ । ଶ୍ରୀରାଧାଙ୍କର ଅନୁଚିନ୍ତନ

ମଧ୍ୟରେ ବଂଶୀ "ରାଧିକା" ନାମ ଧରି ଅହ୍ୱାନ କଲା । ଶ୍ରୀରାଧାଙ୍କର ପ୍ରାଣ ବୀଣାର ପ୍ରତ୍ୟେକ ତନ୍ତ୍ରୀ ଝଙ୍କୃତ ହୋଇ ଉଠିଲା । ସର୍ବେନ୍ଦ୍ରିୟକୁ ଉଦ୍ବେଳିତ କରି ଆବେଗର ସଞ୍ଚାର ହେଲା । ଅନିର୍ବଚନୀୟ ସୁଖରେ ଅବଶ ହୋଇ ଉଠିଲା ତାଙ୍କର ଶରୀର ଓ ମନ । ଜନ୍ମ ଜନ୍ମାନ୍ତରର ସୁହୃଦ୍, ଅନନ୍ତ କାଳର ପ୍ରାଣସଙ୍ଗୀଙ୍କ ଆହ୍ୱାନ ପାଇଁ ଶ୍ରୀରାଧାଙ୍କ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ପ୍ରତୀକ୍ଷାମାଣ । ନିଜକୁ ଅର୍ପଣ କରିବାର ଉଗ୍ର ସାଧନା ଓ ବ୍ୟଗ୍ର ବ୍ୟାକୁଳତା ତାଙ୍କଠାରେ ଲକ୍ଷ୍ୟଣୀୟ । ଶ୍ରୀରାଧା ଅସମ୍ଭାଳ ବେଶ ବାସରେ କଦମ୍ବ ମୂଳକୁ ହତଚେତନ ଅବସ୍ଥାରେ ଧାବିତ ହେଲେ । ମାତ୍ର ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବା ମାତ୍ରେ ସେ ବାହ୍ୟ ଚେତନା ଲାଭ କରି ଅଭିମାନରେ ସ୍ଫୁରିତା ହେଲେ । ବିଚ୍ଛେଦର ଗଭୀର ବେଦନାରେ କାତର ନିଜର ରୂପକାନ୍ତି ଦେଖାଇ ଶ୍ରୀରାଧାଙ୍କର ମନକୁ ଆକୃଷ୍ଟ କରିବାକୁ ଶ୍ରୀକୃଷ୍ଣ ପ୍ରୟାସୀ ହେଲେ ।

"ରାଧିକା ବୋଇଲେ ନାଗର ମାନଙ୍କ
ସାଗର ସାଗର ଏ ବୁଦ୍ଧି ।
ମାମୁ ମାରି ଦୋଷ ମେଣ୍ଟାଇ ପାରନ୍ତି
ମାଈଁଙ୍କ ଗଳା ଧରି କାନ୍ଦି
ନଗର
ସେହି ମାୟାଧର ନୃହଁକ,
କୋଟି ରାଜନେମା ଯାହାକୁ ଖଟନ୍ତି
ସେ ପୁଣି ଝୁରେ ନର୍ମୀଶୀକ ।"

ଶ୍ରୀରାଧାଙ୍କର ଏହି ଚାତୁର୍ଯ୍ୟୋକ୍ତିରେ ତାଙ୍କ ଚରିତ୍ରର ବୁଦ୍ଧିଦୀପ୍ତ ରୂପ ଉଦ୍ଭାସିତ । ଶ୍ରୀରାଧା ଲୀଳା କୌତୁକ ଓ ହାସପରିହାସ ପଟିୟସୀ । କୌତୁକ ଛଳରେ ଶ୍ରୀକୃଷ୍ଣଙ୍କ ସହିତ ଭାବବିନିମୟରେ ସେ ପାରଦର୍ଶିନୀ । ତେଣୁ ସେ ନର୍ମ ପଣ୍ଡିତା । ଶ୍ରୀରାଧାଙ୍କ ପକ୍ଷରେ ଶ୍ରୀକୃଷ୍ଣଙ୍କ ବିଚ୍ଛେଦ ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର । ଶ୍ରୀକୃଷ୍ଣଙ୍କ ଦର୍ଶନରେ ଜଳରେ ହଂସ ଭାସିଲା ପରି ତାଙ୍କ ମନ ମଧୁର ଭାବରେ ଉଚ୍ଛ୍ୱସିତ ହୋଇଉଠେ ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କର ନିଜ ଦେହୀ । ସ୍ୱହସ୍ତରେ ଶ୍ରୀକୃଷ୍ଣଙ୍କର ସେବାକରି ସେ ଆନନ୍ଦ ଲାଭ କରନ୍ତି । ଶ୍ରୀରାଧାଙ୍କର ପ୍ରତ୍ୟେକ ଅଙ୍ଗ ସୁନ୍ଦର । ସ୍ମିତ ହାସରେ ତାଙ୍କର ମୁଖଚନ୍ଦ୍ର ଉଦ୍ଭାସିତ; ଅମୃତମୟ ବାଣୀର ମାଧୁର୍ଯ୍ୟ କନ୍ଦର୍ପର ବୀଣାର ଝଙ୍କାରକୁ ପରାଜିତ କରେ । ବିଚ୍ଛେଦର କରୁଣ ଲଗ୍ନରେ ଶ୍ରୀରାଧାଙ୍କୁ ସାନ୍ତ୍ୱନା ପ୍ରଦାନ କରି ମୃତ୍ୟୁଟରେ ମିଳନର ସଙ୍କେତ ଦେଇଛନ୍ତି ଶ୍ରୀକୃଷ୍ଣ ।

"ଆଉ ଅଳପ ଦିନର କଥା
ମୃତ୍ୟୁ ପରେ କି ଥିବା ଦଶା
ଦନୁଜ ବିନାଶି ନିଜ ପୁରେ ଯିବା
ବେଗେ ଉଶ୍ୱାସି ଅବନୀ ବ୍ୟଥା, ଗୋ ସୁନ୍ଦରୀ" । (୧୦/୫)

ଅଭିଶାପଗ୍ରସ୍ତ ରାଧାକୃଷ୍ଣ ଦୁଷ୍ଟ ଦଳନ ପାଇଁ ମର୍ତ୍ତ୍ୟରେ ଅବତୀର୍ଣ୍ଣ ।

ଶ୍ରୀରାଧାଙ୍କର ଚରିତ୍ରର ମହତ୍ତ୍ୱ ପ୍ରକାଶ ପାଇଅଛି ଦ୍ୱାରକାନାଥଙ୍କ ସହିତ ମିଳନର ଅଭିଜାତ ମୁହୂର୍ତ୍ତରେ । ପ୍ରଥମେ ବିଷ୍ଣୁଭକ୍ତ ଗରୁଡ଼ ଶ୍ରୀରାଧାଙ୍କୁ ପ୍ରଣାମ କରିବାରୁ ସେ ମାତୃସ୍ନେହରେ ଗରୁଡ଼ଙ୍କୁ ଅଭିସିକ୍ତ କଲେ । ଅତ୍ୟନ୍ତ ଆଦରରେ ଗରୁଡ଼ଙ୍କୁ ତୋଳି ଧରିଥିଲେ ଓ ନିଜ ଜୀବନ ଧନ୍ୟ ହେଲା ବୋଲି କହିଲେ । ଏଠାରେ ଶ୍ରୀରାଧା ବନ୍ଦିତା । ଏହି ବିନୟ ଗୁଣରେ ମଧୁରରସ ପରିପୁଷ୍ଟ ହୁଏ ଓ ମନରେ ଆନନ୍ଦ ସଞ୍ଚାର କରେ । ତତ୍ପରେ ଶ୍ରୀରାଧା ପ୍ରଭୃତି ରାଜକୁମାରୀମାନଙ୍କୁ ମହାସମାଦରେ ଅଭ୍ୟର୍ଥନା ଜଣାଇଲେ । ଶ୍ରୀରାଧା ରମ୍ୟବାକ୍ । ତାଙ୍କର ଅମୃତମୟ ବାଣୀର ମାଧୁର୍ଯ୍ୟ ସୁଧାର ସ୍ୱାଦକୁ ପରାଜିତ କରେ । କବିଙ୍କ ଭାଷାରେ—

"ରାଧାବଚନ ଅମୃତ ଶୁଣି
ଅଙ୍ଗ ପୁଲକେ ସବ ତରୁଣୀ
ଭସ୍ମ ସବ ଗୁଡ଼ ଉଠି ଉଭାଶଲେ
ସର୍ବେ ଶିରେ ଦେଇ ବେଣିପାଣି ।" (୧୦/୧୪) ।

ଶ୍ରୀରାଧାଙ୍କର ମନରେ ତିଳେମାତ୍ର ଅହଂକାର ପ୍ରକାଶ ପାଇନାହିଁ । ସେ ଅତ୍ୟନ୍ତ ନମ୍ର ଶ୍ରଦ୍ଧାର ସହିତ ଅଷ୍ଟପାଟବଂଶୀଙ୍କୁ କହିଛନ୍ତି,

"ପ୍ରଭୁ ମନ ଜାଣି ସେବିଥିବ
ସର୍ବସଖୀ ହୋଇ ଏକ ଭାବ
ସଦା ଆନନ୍ଦେ ଦିନକାଳ ହରିବ
ପ୍ରଭୁ ଯେମନ୍ତେ କଷ୍ଟ ନୋହିବ, ଗୋ ମିତଣି ।" (୧୦/୧୮) ।

ଅନ୍ତରରେ ବେଦନା ଓ ବାହାରେ ଆନନ୍ଦ ଭରି ଶ୍ରୀରାଧା ଦ୍ୱାରକାନାଥଙ୍କ ହସ୍ତରେ ପ୍ରାଣସମ ଶ୍ରୀକୃଷ୍ଣଙ୍କୁ ସମର୍ପି ଦେଲେ । ଶ୍ରୀରାଧା ଧୈର୍ଯ୍ୟଶାଳିନୀ, ଶତ ଦୁଃଖରେ ସେ ବିଚଳିତା ନୁହନ୍ତି ।

ଅଶେଷ ଗୁଣର ଆଧାର ସ୍ୱରୂପିଣୀ ଶ୍ରୀରାଧା ଅପରୂପ ରୂପମାଧୁର୍ଯ୍ୟ ଓ ଅନୁପମ ଗୁଣାବଳୀରେ ବୈଷ୍ଣବ କାବ୍ୟ ସମୂହକୁ ରସୋତ୍ତୀର୍ଣ୍ଣ କରିଛନ୍ତି ।

**ଶ୍ରୀକୃଷ୍ଣ-ସଖା :—**

ପ୍ରଣୟକାଳରେ ନାୟକର ଉଦ୍ଦେଶ୍ୟ ପୂର୍ତ୍ତି କରିବା ପାଇଁ ଅନ୍ୟର ସହାୟ ଆବଶ୍ୟକ । ଏମାନେ ନାୟକର ସଖା । ବିଭିନ୍ନ ଅବସ୍ଥାରେ ଏମାନଙ୍କର ସାହଚର୍ଯ୍ୟ ନାୟକର ଲକ୍ଷ୍ୟ ସାଧନରେ ସାହାଯ୍ୟ କରେ । ସଖା ହେବାକୁ ହେଲେ କେତେ-ଗୁଡ଼ିଏ ଗୁଣର ଅଧିକାରୀ ହେବା ନିତାନ୍ତ ପ୍ରୟୋଜନ । ଏମାନେ ପରିହାସ ବାକ୍ୟରେ ନିପୁଣ ଓ ନାୟକ ପ୍ରତି ପ୍ରଗାଢ଼ ଅନୁରାଗଯୁକ୍ତ । ଦେଶ କାଳ ଓ ପାତ୍ର ବିଷୟରେ ଏମାନେ ଅଭିଜ୍ଞ । ବିଭିନ୍ନ ଶାସ୍ତ୍ରରେ ଏମାନେ ପାରଦର୍ଶୀ । ପ୍ରଣୟିନୀ ରୁଷ୍ଟ ହେଲେ ମଧୁର ବାକ୍ୟରେ ତାକୁ ପ୍ରସନ୍ନ କରି ମାନଭଞ୍ଜନ କରିବାର ପନ୍ଥା ଏମାନଙ୍କୁ ବେଶ୍ ଜଣା । ସଂକଟ କାଳରେ ଗୂଢ଼ ମନ୍ତ୍ରଣା ଦାନରେ ଏମାନେ ବିଶାରଦ । ଏହିସବୁ ଗୁଣର ଅଧିକାରୀ ନାୟକର ପ୍ରକୃତ ବନ୍ଧୁ ଓ ସହାୟକ ଭାବରେ ଏମାନେ ସଖା । ଏମାନଙ୍କ ସହାୟତା'ରେ ପ୍ରେମର ପଥ ସହଜ ଓ ସୁଗମ ହୁଏ ଏବଂ ପ୍ରଣୟଭଙ୍ଗର ଆଶଙ୍କା ଘଟେ ନାହିଁ ।

ଶ୍ରୀକୃଷ୍ଣଙ୍କର ବୟସ୍ୟ ବା ସଖାଗଣ ଚାରି ପ୍ରକାର :—ସୁହୃଦ, ସଖା, ପ୍ରିୟସଖା ଓ ପ୍ରିୟନର୍ମସଖା । ରହସ୍ୟମଞ୍ଜରୀରେ ରାଧାକୃଷ୍ଣଙ୍କର ପ୍ରେମର ସହାୟତା ପାଇଁ ସଖାମାନଙ୍କର ସୁଚତୁର କାର୍ଯ୍ୟକଳାପର ଆବଶ୍ୟକତା ଅନୁଭୂତ ହୋଇନାହିଁ । କେବଳ ପ୍ରସଙ୍ଗ କ୍ରମରେ କେତେକ ସ୍ଥଳରେ ସଖୀମାନଙ୍କର ନାମ ଉଚ୍ଚାରିତ ହୋଇଅଛି । ଉଲ୍ଲେଖିତ ନାମ ମଧ୍ୟରୁ କେହି ସୁହୃଦ୍ ଶ୍ରେଣୀୟ ନୁହନ୍ତି । ବିଶାଳ, ବୃଷଭ, ଦେବପ୍ରସ୍ଥ, ବରୂଥ, କୁମୁଦ ପ୍ରଭୃତିଙ୍କର ଉଲ୍ଲେଖ ରହିଛି । ଶ୍ରୀକୃଷ୍ଣଙ୍କଠାରୁ ବୟସରେ କନିଷ୍ଠ ଓ ତାଙ୍କ ସେବାରେ ସେମାନେ ନିରତ ।

ପ୍ରିୟସଖା ହେଉଛନ୍ତି କଙ୍କଣୀ, ସ୍ତୋକକୃଷ୍ଣ, ସୁଦାମ ଓ ବସୁଦାମ । ଏମାନେ ଶ୍ରୀକୃଷ୍ଣଙ୍କର କେଳିକଳାରେ ସାହାଯ୍ୟକାରୀ । ଏମାନଙ୍କର ସ୍ୱଭାବ ଶାନ୍ତ ଓ ଧୀର—ଏମାନେ ଶ୍ରୀକୃଷ୍ଣଙ୍କର ପ୍ରାଣତୁଲ୍ୟ । ପ୍ରିୟ ନର୍ମସଖା ଅର୍ଜୁନ ଓ ସୁବଳ । ଏମାନେ ଅତିଶୟ ରହସ୍ୟଜ୍ଞ, ସଖୀଭାବାଶ୍ରିତ ଲୀଳା ସହଚର ସଖାମାନଙ୍କ ମଧ୍ୟରେ ଏମାନେ ଅତିପ୍ରିୟ । ରହସ୍ୟମଞ୍ଜରୀରେ କେବଳ ସ୍ତୋକକୃଷ୍ଣଙ୍କଠାରୁ ଶ୍ରୀକୃଷ୍ଣ ତାଙ୍କର ମୋହନ ବଂଶୀ ଆଣିଛନ୍ତି ଓ ପିତାମାତାଙ୍କ ସେବା କରିବା ପାଇଁ ତାଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଶ୍ରୀକୃଷ୍ଣଙ୍କର ଷୋଳସହସ୍ର ସଙ୍ଗୀ ଶ୍ରୀକୃଷ୍ଣଙ୍କ ଭାବରେ ଭାବିତ । ଦାମ, ସୁଦାମ ପ୍ରଭୃତିଙ୍କୁ ଅଲୀବନ 'ବିଚ୍ଛେଦ ସହ୍ୟ କରିବାକୁ ବୁଝାଇ କହିବା ପାଇଁ ସ୍ତୋକକୃଷ୍ଣଙ୍କୁ ସେ କହିଛନ୍ତି—

"ଦନୁଜ ବଳ ସଂହାରି ଧରଣୀର ଭାର ହରି
ଫିରିବି ମୁଁ ନିତ୍ୟପୁରୀ ତୁମ୍ଭଙ୍କୁ ଘେନି ।" (୧୪/୧୮) ।

ବୈଷ୍ଣବ କାବ୍ୟରେ ସଖୀ ସଖାମାନଙ୍କର ଭୂମିକା ପ୍ରଧାନ ଓ ଗୁରୁତ୍ୱପୂର୍ଣ୍ଣ । ରହସ୍ୟମଞ୍ଜରୀରେ ସେମାନଙ୍କର ବୈଶିଷ୍ଟ୍ୟ ଆଦୌ ପ୍ରକାଶ ପାଇନାହିଁ, କେବଳ ନାମମାତ୍ର ଉଚ୍ଚାରିତ ହୋଇଅଛି ।

ଗୋକୁଳକୃଷ୍ଣଙ୍କୁ ବଶ୍ୟାସରେ ବଂଶୀଦେବା ଓ ସୁରମୋହନ ଗୋକୁଳକୃଷ୍ଣ ପ୍ରଭୁଙ୍କ ମନଜାଣି ଅତଶୀଘ୍ର ମିଳିତ ହେବା ଓ ବଂଶୀ ଆଣିଦେବା ଘଟଣାରେ କୌଣସି ବୈଶିଷ୍ଟ୍ୟ ବା ବୈଚିତ୍ର୍ୟ ନାହିଁ ।

**ସଖୀ**—ସଖୀମାନେ ରାଧାଅଂଶିନୀ ବା ଅବତାରଣୀ । ସେମାନେ ଲୀଳା ଉଦ୍ଦେଶ୍ୟରେ ରାଧାକୃଷ୍ଣଙ୍କ ସଦ୍ଗୁଣ ବହୁରୂପରେ ପ୍ରକାଶିତ ହୋଇଥିଲେ । ଗୋପୀମାନେ ତାଙ୍କର ସେହି ବହୁରୂପ । ଶ୍ରୀରାଧାଙ୍କର ବୟସ୍ୟା ବା ସଖୀମାନେ ରାଧାକୃଷ୍ଣଙ୍କ ମିଳନର କାରଣର ସ୍ୱରୂପିଣୀ । ଖଣ୍ଡିତା ଅବସ୍ଥାରେ ଶ୍ରୀରାଧା ବ୍ୟଥିତା ହେଲେ ପରମପ୍ରିୟ ସଖୀଗଣ ଶ୍ରୀରାଧାଙ୍କ ଦୁଃଖ ସମବେଦନା ଜ୍ଞାପନ କରି ଶ୍ରୀକୃଷ୍ଣଙ୍କ ଉପରେ ଦୋଷାରୋପ କରନ୍ତି । ପୁଣି, ମାନ ଅବସ୍ଥାରେ ଶ୍ରୀକୃଷ୍ଣଙ୍କୁ ଶ୍ରୀରାଧା ଅନାଦର କଲେ ଶ୍ରୀକୃଷ୍ଣଙ୍କ ପ୍ରତି ଅନୁରାଗ ପ୍ରକାଶ କରି ସେମାନେ ଶ୍ରୀମତୀଙ୍କୁ ଭର୍ତ୍ସନା କରନ୍ତି ।

ଶ୍ରୀରାଧାଙ୍କର ସଖୀଗଣ ପଞ୍ଚବିଧ—ସଖୀ, ନିତ୍ୟସଖୀ ଓ ପରମ ଶ୍ରେଷ୍ଠସଖୀ ।

ରହସ୍ୟମଞ୍ଜରୀରେ ସଖୀମାନଙ୍କର ନାମୋଲ୍ଲେଖ ରହିଛି । କାର୍ଯ୍ୟତଃ ଦୂତିକା ବିରହିଣୀ ଶ୍ରୀରାଧାଙ୍କର ଶୋକ ମୂହ୍ୟମାନ ଅବସ୍ଥାରେ ଅଦ୍ଭୁତ ଉପାୟ ପାଇଛି । ସେହି ଉପାୟ ଅବଲମ୍ବନରେ କାର୍ଯ୍ୟସିଦ୍ଧି ମଧ୍ୟ ହୋଇଅଛି ।

ଦେବଦୁର୍ଲ୍ଲଭ ଯେଉଁ ସଖୀମାନଙ୍କର ନାମର ଅବତାରଣା କରିଛନ୍ତି । ସେହି ନାମଗୁଡ଼ିକ ପୁରୁଷୋତ୍ତମ ତାପିନୀ, ରାଧାତନ୍ତ୍ର, ପଦ୍ମପୁରାଣ, ଉଜ୍ଜ୍ୱଳନୀଳମଣି ଓ ଶ୍ରୀରାଧାକୃଷ୍ଣ—ଗଣୋଦ୍ଦେଶଦୀପିକା ପ୍ରଭୃତି ବୈଷ୍ଣବ ଗ୍ରନ୍ଥରେ ପୂର୍ଣ୍ଣଭାବରେ ମିଳେ ନାହିଁ । ଲବଙ୍ଗ, ଶ୍ରୀରାଧାଙ୍କର ମଞ୍ଜରୀଶ୍ରେଣୀୟା ବୟସ୍ୟା । ମଦନା ଓ ମାଧବୀ ଶ୍ରୀରାଧାଙ୍କର ପ୍ରିୟସଖୀ, ଲଳିତା ପରମ ଶ୍ରେଷ୍ଠ ସଖୀ । ଲଳିତା ଓ ଲବଙ୍ଗଙ୍କର ନାମମାତ୍ର ଉଚ୍ଚାରିତ । କାର୍ଯ୍ୟତଃ ସେମାନେ ନିଷ୍କ୍ରିୟ । ଦୂତିକା ସମଗ୍ର କାବ୍ୟରେ ସକ୍ରିୟ ଚଞ୍ଚଳତାରେ ମୂର୍ତ୍ତିମତୀ ।

"ରାଧାଙ୍କୁ ଦେଖି ହସିଲୁ ସଖି
ବୋଇଲୁ ସକଳେ ହଂସ ଉସିଲୁ ନିକ ।
ଦୂତିକା ବାଣୀ ରାଧିକା ଶୁଣି
ହସି ମୁଖ ବିକଚକଲେ ନବ ତରୁଣୀ ।

ଏମନ୍ତ କହି ଦୂତିକା ଯାଇ
ଶ୍ରୀଚରଣ ପାଖାଳି ଉଦକପାବଇ ।" (୧୬/୨୦) ।

ପୁଣି,

"ରାଧାଙ୍କ ସଙ୍ଗେ ଦୂତିକା ରଙ୍ଗେ
କର୍ପୂର ଚନ୍ଦନ ଗୋଳି ବୋଳନ୍ତି ଅଙ୍ଗେ ।" (୧୬/୪୦) ।

ମୁଖ୍ୟତଃ ଦୂତିକା ଶ୍ରୀକୃଷ୍ଣଙ୍କୁ ନଟବର ବେଶରେ ସଜାଇଛନ୍ତି । ଦୂତିକା, ବିମଳା, ମାଧବୀ, ବୃନ୍ଦାବତୀ, ଲଳିତା, ଚନ୍ଦ୍ରାବଳୀ, ଉନ୍ମଦା, ସାଧବୀ, ପ୍ରସନ୍ନା, ବୀଣାକାରିଣୀ, ଶ୍ରୁତିସ୍ୱରୂପୀ, ମୁନିସିଦ୍ଧାଙ୍ଗୀ, ଚନ୍ଦ୍ରରେଖା, ମଦନାସୁନ୍ଦରୀ, ଶ୍ରୀପ୍ରିୟା, ଚନ୍ଦ୍ରାବତୀ, ମଧୁମତୀ, ଶଶିରେଖା, ହରିପ୍ରିୟା ପ୍ରଭୃତିଙ୍କୁ ସଖୀରୂପେ ବର୍ଣ୍ଣନା କରାଯାଇଅଛି ।

କବି ଯେଉଁମାନଙ୍କୁ ମୁନିସିଦ୍ଧାଙ୍ଗୀ ଭାବରେ ଅଭିହିତ କରିଛନ୍ତି ସେମାନେ ତ୍ରେତୟା ଯୁଗର ଉଗ୍ରତପା ମୁନି, ନବଦୁର୍ବାଦଳ ଶ୍ୟାମ ଅଭିରାମ ଶ୍ରୀରାମଙ୍କ ଅପରୂପ ରୂପଦର୍ଶନରେ ମୁଗ୍‌ଧ ହୋଇ ତାଙ୍କର ଅଙ୍ଗସଙ୍ଗ କାମନା କରିବାରୁ ଶ୍ରୀରାମଚନ୍ଦ୍ର ଦ୍ୱାପର ଯୁଗରେ ସେମାନଙ୍କ ବାଞ୍ଛାପୂର୍ଣ୍ଣ ହେବ ବୋଲି ବର ଦେଇଥିଲେ । ସେହି ଉଗ୍ରତପା ମୁନିମାନେ ମୁନିସିଦ୍ଧାଙ୍ଗୀ ଗୋପିକା ରୂପରେ ଜାତ ହୋଇଥିଲେ । କବି ଶ୍ରୁତିସ୍ୱରୂପୀ ବୋଲି ଯେଉଁମାନଙ୍କୁ କହିଛନ୍ତି ସେମାନେ ଗୋପାଙ୍ଗନାରୂପୀ ଉପନିଷଦ ମଣ୍ଡଳୀ । ଚନ୍ଦ୍ରାବଳୀ, ଚନ୍ଦ୍ରରେଖା ପ୍ରମୁଖ ମାୟାକୁମାରୀମାନଙ୍କୁ ଜାତ କରିଥିବା ସଖୀବୃନ୍ଦ ଶ୍ରୀରାଧାଙ୍କର ଆଜ୍ଞାନୁବର୍ତ୍ତିନୀ ସେବିକା । ଏମାନଙ୍କୁ ଶ୍ରୀରାଧାଙ୍କର ସପତ୍ନୀ ଭାବରେ କବି ସ୍ୱୀକୃତି ଦେଇଛନ୍ତି ।

ଲଳିତା ଶ୍ରୀରାଧାଙ୍କର ପରମପ୍ରିୟସଖୀ ଓ ସର୍ବଗୁଣ ସମନ୍ୱିତା । ସଖୀଗଣ ଶ୍ରୀରାଧାଙ୍କର ସୁଖ ସମ୍ପାଦନ ପାଇଁ ସର୍ବଦା ବ୍ୟସ୍ତ । ବିରହରେ ମୂର୍ଚ୍ଛିତା ହେଲେ ସେମାନେ ବ୍ୟାକୁଳ ଭାବରେ ଧାଇଁଆସି ଶ୍ରୀରାଧାଙ୍କୁ କୋଳାଗତ କରନ୍ତି ଓ ଦୁଃଖରେ ସମବ୍ୟଥା ଅନୁଭବ କରନ୍ତି । ଶ୍ରୀକୃଷ୍ଣଙ୍କ ବିରହରେ ରାଧା ବ୍ୟାକୁଳ ହୋଇ ଏଣେତେଣେ ପ୍ରାଣବଲ୍ଲଭଙ୍କୁ ଖୋଜି ବୁଲନ୍ତି ସଖୀର ସାହଚର୍ଯ୍ୟରେ । କବିଙ୍କ ଭାଷାରେ,

"ଚଇତ ମାସରେ ରାଧାମାଧବ ସୁମରି
ବୃନ୍ଦାବନେ ପଶିଣ ଲୋଡ଼ଇ ଅନୁସରି ।
ଦେଖଇ ପଲ୍ଲବଲତା ତରୁ ଫଳ ଫୁଲେ
ଦେବକହେ ସଖୀ କର ଧରି ଧରି ବୁଲେ ।" (୧୨/୮) ।

ଶ୍ରୀରାଧାଙ୍କର ଅଦର୍ଶନରେ ବିଚଳିତ ହୋଇ ସେମାନେ ତାଙ୍କୁ ଯମୁନାତୀର କେଳିସଦନ, କଦମ୍ବବନକୁଞ୍ଜରେ ଅନ୍ୱେଷଣ କରନ୍ତି । ଶ୍ରୀରାଧାଙ୍କ ଅଶ୍ରୁରେ ସେମାନେ ନିଜ ନିଜର ଅଶ୍ରୁ ମିଶାଇ ସମଦରଦୀ ହୁଅନ୍ତି ।

ସଖୀକୁ ଦୂତୀରୂପେ ଶ୍ରୀରାଧା କହ୍ନାଇଙ୍କ ପାଖକୁ ପ୍ରେରଣ କରିଛନ୍ତି । ସୁଖ ଦୁଃଖରେ ବିରହ ମିଳନରେ ଏକାନ୍ତ ସହାୟ ସଖୀର ଭୂମିକା ବୈଷ୍ଣବ କାବ୍ୟ ସମୂହରେ ଅତୀବ ଗୁରୁତ୍ୱପୂର୍ଣ୍ଣ ।

**ବଂଶୀ—**

ଭଗବାନ ଶ୍ରୀକୃଷ୍ଣ ଲୀଳାକରଣ ନିମନ୍ତେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଥିଲେ । ଗୋପୀମାନଙ୍କ ସହିତ ରାସକ୍ରୀଡ଼ା ଜୀବପରମର ମିଳନ ମହୋତ୍ସବର ପ୍ରକୃଷ୍ଟ ଦୃଷ୍ଟାନ୍ତ । ଗୋପୀମାନଙ୍କ ମନରୁ ମାୟାର ଆବରଣ ଉନ୍ମୋଚନ ପାଇଁ ଶ୍ରୀକୃଷ୍ଣ ମଧୁର ମୋହନ—ମନ୍ତ୍ରବିନାଦିନୀ ମୁରଲୀର ସ୍ୱନରେ ସେମାନଙ୍କୁ ଆହ୍ୱାନ କରିଥିଲେ । ଶ୍ରୀକୃଷ୍ଣଙ୍କର ବଂଶୀର ଏପରି ଶକ୍ତି ଥିଲା, ଯାହା ଉପେକ୍ଷାର ଅତୀତ । ବଂଶୀର ବ୍ୟାକୁଳ ଆହ୍ୱାନରେ ଶ୍ରୀରାଧାଙ୍କ ଅନ୍ତରରେ ସାତ୍ତ୍ୱିକ ଭାବର ଉଦ୍ରେକ ହୋଇଥିଲା, ଶରୀରରେ ରୋମାଞ୍ଚ ଓ ସ୍ୱେଦ ଉଦ୍‌ଗମ ହୋଇଥିଲା । ଏହି ସମ୍ପର୍କରେ ବୈଷ୍ଣବ ପଦାବଳୀରେ କୁହାଯାଇ ଅଛି,—

"ମାଧବ ବେଣୁ ଶୁନଲ ଯବ ରାଧା
ହୃଦୟେ ବଥାଇଲ ମନସିଜ ବାଧା ।"

ମୋହନ ବଂଶୀ ବାଦନ କରି ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ଆହ୍ୱାନ କଲେ ଶ୍ରୀରାଧା କୁଳ, ମାନ, ସମ୍ଭ୍ରମ ଲଜ୍ଜ୍ୟା ସବୁ ତ୍ୟାଗ କରି କନ୍ଦର୍ପ ପୀଡ଼ାରେ ସମ୍ମୋହିତ ହୋଇ ବଂଶୀଧ୍ୱନି ଦିଗରେ ପ୍ରଧାବିତ ହୁଅନ୍ତି । ତାଙ୍କର ସବୁ ମାନ ଅଭିମାନ ମୁହୂର୍ତ୍ତିକରେ ମିଳେଇଯାଏ ।

ବଂଶୀ ସ୍ୱୟଂଦୂତୀ । ଶ୍ରୀକୃଷ୍ଣ ବଂଶୀର ମୂର୍ଚ୍ଛନାରେ ଶ୍ରୀରାଧା ତଥା ଗୋପୀଙ୍କ ନାମ ଧରି ଆହ୍ୱାନ କରନ୍ତି । ବଂଶୀ ରାଧିକା ରାଧିକା ବୋଲି ଡାକଦେବା କଥା ରହସ୍ୟମଞ୍ଜରୀରେ ବର୍ଣ୍ଣିତ ।

"ଏତେବେଳେ ଆସି ହସିଙ୍କ ହୋଇଲା
ଯାହା କହିଥିଲେ ଅମ୍ବିକା,
ଏମନ୍ତ ବଚନୁ ବଂଶୀ ଡାକ ଦେଲା
ରାଧିକା, ରାଧିକା, ରାଧିକା

ସୁନ୍ଦରୀ
ଶୁଣିକରି କୋଡ଼ ହୋଇଲେ,
କେଶବାସ ଅସ- ମ୍ଭାଳ ହୋଇ ବାଳୀ
କଦମ୍ବ ମୂଳକୁ ଧାଇଁଲେ ।" (୧୬/୭) ।

ଶ୍ରୀରାଧାଙ୍କ ସହିତ ରାସୋତ୍ସବ ଶେଷରେ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ବିରହବଂଶୀ ଦେଇ ଶ୍ରୀକୃଷ୍ଣ ଶ୍ରୀରାଧାଙ୍କୁ ସାନ୍ତ୍ୱନା ଦେଇଛନ୍ତି । ବଂଶୀ ଶ୍ରୀକୃଷ୍ଣଙ୍କର ପ୍ରତିଭୂ—ଯେ ପର୍ଯ୍ୟନ୍ତ ଶ୍ରୀରାଧାଙ୍କ ହସ୍ତରେ ବଂଶୀ ରହିଛି, ସେପର୍ଯ୍ୟନ୍ତ ଶ୍ରୀକୃଷ୍ଣ ତାଙ୍କ ନିକଟରେ ଥିବାପରି ପ୍ରତୀତ ହେବ । ବଂଶୀ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ସଂଯୋଗ ସେତୁ । ବଂଶୀର ମୂର୍ଚ୍ଛନାରେ ପରସ୍ପର ମିଳିତ ହୁଅନ୍ତି ।

ବୈଷ୍ଣବ କାବ୍ୟରେ ରାଧା ସଖୀଙ୍କୁ ଅନୁରୋଧ କରିଛନ୍ତି, ତାଙ୍କର ମୃତ୍ୟୁପରେ ଶ୍ରୀକୃଷ୍ଣଙ୍କର ବଂଶୀଧ୍ୱନି ଯେଉଁ ତଟରୁ ଶୁଣାଯାଉଥିବ ସେହି ତଟକୁ ତାଙ୍କର ତାନ ତେଉ ରଖିଦେବାକୁ । ଏହି ପ୍ରସଙ୍ଗରେ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ବିଦଗ୍ଧ ଚନ୍ଦ୍ରାମଣିର ଅଂଶ ବିଶେଷ ଉଦ୍ଧାର ଯୋଗ୍ୟ :—

"ଜୀବନ ଗଲେ ଏତିକି କରିବ ।
ଶ୍ୟାମ ନାମ ମୋର ହୃଦେ ଲେଖିବ ।
ଶ୍ୟାମ ରୂପ ମୂର୍ତ୍ତି ହୃଦେ ଲଦାଇ ।
ଶ୍ୟାମ ବସନ ଅଙ୍ଗରେ ଘୋଡ଼ାଇ ।
ଶ୍ୟାମ ଗଡପଥେ ଗୋ ।
ମୋ ଶବ ପୋଡିବ ଆପଣା ହାଥେ ।
ଯେବେ ଏମନ୍ତ କରି ନ ପାରିବ ।
ତମାଳେ କୋଳ କରାଇ ଥୋଇବ ।
କୃଷ୍ଣ ବଂଶୀ ଶୁଭୁଥିବ ଯେଣିକି ।
କର୍ଣ୍ଣ କରିଦେଇଥିବ ତେଣିକି ।
ସବୁ ସଜନୀଙ୍କି ଗୋ ।
ହାତ ଧରି ମୁଁ ମାଗୁଛି ଏତିକି ।"
(ବିଦଗ୍ଧ ଚନ୍ଦ୍ରାମଣି—୮୬/୩୭-୩୭) ।

ବଂଶୀକୁ କେନ୍ଦ୍ର କରି ବହୁ ବୈଷ୍ଣବ କବି ପଦାବଳୀ ରଚନା କରି ଅଛନ୍ତି । ବଂଶୀର ଅଶେଷ ମାହାତ୍ମ୍ୟ ସେମାନଙ୍କର ରଚନାରେ ପ୍ରକାଶ ପାଇଅଛି । ରହସ୍ୟ-ମଞ୍ଜରୀରେ ବଂଶୀର ପ୍ରାଧାନ୍ୟ ଅନସ୍ୱୀକାର୍ଯ୍ୟ ।

ନିତ୍ୟ ରାସସ୍ଥଳୀ :—

ବୈଷ୍ଣବ କାବ୍ୟରେ ବର୍ଣ୍ଣିତ ନିତ୍ୟ ରାସସ୍ଥଳୀର ପ୍ରାଧାନ୍ୟ ଅତ୍ୟନ୍ତ ତାତ୍ପର୍ଯ୍ୟ-ପୂର୍ଣ୍ଣ । ମର୍ତ୍ତ୍ୟରେ ବୃନ୍ଦାବନ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ରାସ କ୍ରୀଡ଼ାର ପବିତ୍ର ସ୍ଥଳୀ । ଗୋଲକ ଧାମରେ ନିତ୍ୟରାଧା ନିତ୍ୟକୃଷ୍ଣଙ୍କ ସହ ନିରନ୍ତର ରାସ କେଳିରେ ପ୍ରମତ୍ତ । ଏହି ସ୍ଥାନ ଚଉଷଠୀ ଗୋପୀମାନଙ୍କର ପୁର । ନିତ୍ୟରାସସ୍ଥଳରେ ନିତ୍ୟ ଦ୍ୱାରର ପ୍ରକୃତ ରକ୍ଷକ ଶ୍ରୀପୁରୀ ସୁନ୍ଦରୀ । ନିତ୍ୟସ୍ଥଳ ଦର୍ଶନ ପାଇଁ ସବୁ ଦେବତା ଅଭିଳାଷୀ । ଏହି ଦିବ୍ୟସ୍ଥାନ ଅତ୍ୟନ୍ତ ଶୋଭାଯୁକ୍ତ ।

ନିତ୍ୟସ୍ଥଳୀକୁ ଆଦିକୃଷ୍ଣଙ୍କ ବ୍ୟତୀତ ଅନ୍ୟ ପୁରୁଷ ପକ୍ଷରେ ପ୍ରବେଶ ନିଷିଦ୍ଧ । ନାରଦ, ମାନବକୃଷ୍ଣ ନିତ୍ୟରାସ ଦେଖିବା ପାଇଁ ଇଚ୍ଛୁକ ହେବାରୁ ସେମାନଙ୍କୁ ନାରୀବେଶ ଧାରଣ କରିବାକୁ ପଡ଼ିଥିଲା । ସେହି ସ୍ଥାନରେ କୋଟିକଳ୍ପ ଅତୀତ ହୋଇଗଲେ ମଧ୍ୟ ମୁହୂର୍ତ୍ତିକ ପରି ମନେହୁଏ । ସିଦ୍ଧ ଅଙ୍ଗ ବ୍ୟତୀତ ଶ୍ରୀକୃଷ୍ଣଙ୍କର ଲାଭ ସମ୍ଭବ ନୁହେଁ । ସେଠାରେ ଶ୍ରୀକୃଷ୍ଣ ଏକମାତ୍ର ପୁରୁଷ । ଅନ୍ୟମାନେ ନାରୀ । ଗୋଲୋକର ରାଧାକୃଷ୍ଣ ଗୋପ୍ୟ ହୋଇ ରହିଛନ୍ତି । ସେହି ସ୍ଥାନକୁ ପୁରୁଷ ଅଙ୍ଗରେ କେହି ଯାଇ ପାରିବେ ନାହିଁ । କବିଙ୍କ ଭାଷ ରେ,

"ପୁରୁଷ ଅଙ୍ଗରେ କେହୁ ଦର୍ଶନ କରିବ
ମୁଣ୍ଡର ଉପରେ କେହୁ ମୁଣ୍ଡେକ ବହିବ ଗୋ ।
ମୋହିବନ୍ତୁ ନାହିଁ ତହିଁ ଦୋସର ପୁରୁଷ
ସ୍ତ୍ରୀବୃନ୍ଦ ବେଢ଼ି ମୋର ସେବନ୍ତି ପାରୁଶ ଗୋ ।"

(୭/୨୮-୨୯) ।

ଯେଉଁମାନେ ପ୍ରେମ-ସୂତ୍ର-ଭକ୍ତସ୍ଥା ସେହିମାନେ ସେ ସ୍ଥାନରେ ଅବସ୍ଥାନ କରନ୍ତି । ସେମାନେ ଶ୍ରୀକୃଷ୍ଣଙ୍କର ଷୋଡ଼ଶ ବିଭୂତି ମଧ୍ୟରୁ ଯେଉଁ ଯେଉଁ ବିଭୂତି ଲାଭ କରି ଥାଆନ୍ତି ସେହି ଅନୁସାରେ ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ହୁଅନ୍ତି ।

"ସେ ମହାରାସମଣ୍ଡଳୀ ନିତ୍ୟ ବୃନ୍ଦାବନେ
ତହିଁ ମୁଁ ବଞ୍ଚଇ ରାଧା ଅଙ୍ଗ ଆଲିଙ୍ଗନେ ଗୋ ।"

(୭/୩୫) ।

ଶ୍ରୀରାଧାଙ୍କର ଶୃଙ୍ଗାର ରସ ମାଧୁର୍ଯ୍ୟରେ ଅବଗାହନ କରି ଶ୍ରୀକୃଷ୍ଣ ସୁଖ ସାଗରେ ନିମଗ୍ନ । କୋଟି କୋଟି କଳ୍ପ ଅତିକ୍ରାନ୍ତ ହେଲେ ମଧ୍ୟ ସେ ଅନବହିତ । ସେହି ମୂଳ ସ୍ଥଳକୁ ଦେଖିବା ପାଇଁ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କଠାରେ ଏକାନ୍ତ ପ୍ରାର୍ଥନା ଜଣାଇ ଥିଲେ । ଶ୍ରୀକୃଷ୍ଣ ସେହି ଯୋଗୀଜନ ଦୁର୍ଲଭ ପରମ ମାର୍ଗରେ ରୁକ୍ମିଣୀଙ୍କ ସହ ଗରୁଡ଼ ପୃଷ୍ଠରେ ଅଗ୍ରସର ହେଲେ ।

ପ୍ରଥମେ 'ବ୍ରହ୍ମାଣ୍ଡ-ଅଣ୍ଡ-କଟାହ' ଅତିକ୍ରମ କରି ଜଳ ବୈକୁଣ୍ଠ ପୁରରେ ସେମାନେ ଉପନୀତ ହେଲେ । ସେ ପୁରରେ ରୁକ୍ମିଣୀ, ବାସୁଦେବଙ୍କ ଅବସ୍ଥାନ । ତାପରେ ପଡ଼ିଲା ଅନଳ ପୁର ।

"ଜଳନ୍ତା ଅନଳେ ଝାସି ଗରୁଡ଼ ଚଳି
ଅନେକ ଯୋଜନ ଅଗ୍ନି ଗଲା ନିକଳି ।"

(୨୨/୯୩) ।

ଅନଳପୁର ପରେ ପଡ଼ିଲା ଅନ୍ଧକାର ଭୁବନ । ସେଠାରେ ନିଜର ଅଙ୍ଗ ନିଜକୁ ଦିଶିବା କଷ୍ଟକର । ଶ୍ରୀକୃଷ୍ଣ ଜ୍ୟୋତିର୍ମୟ ସୁଦର୍ଶନ ଚକ୍ର ନିକ୍ଷେପ କରିବାରୁ ଗରୁଡ଼ ତାହାକୁ ଅନୁସରଣ କରି ପଥ ଅତିକ୍ରମ କଲେ । ମନୁଷ୍ୟ ପୁର, ଅହଙ୍କାର ମୟ ପୁର ପରେ ପଡ଼ିଲା ପ୍ରକୃତି ମଣ୍ଡଳ । ସେଠାରେ ଅର୍ଦ୍ଧମାତ୍ରା ପୁର । ଶଙ୍ଖ, ଚକ୍ର, ଗଦା, ଓ ପଦ୍ମଧାରିଣୀ ଦୁର୍ଗା ସେଠାରେ ବିରାଜିତା । ସେ ପ୍ରକୃତି-କାରିଣୀ ଜଗନ୍ମାତା । ସେହି ଅନାଦି ନାରୀଙ୍କ ଅଂଶରେ ରୁକ୍ମିଣୀ ଜାତ । ବେଦମାତାଙ୍କ ପୁରୀରେ ବିରାଟ ପ୍ରକୃତି ସ୍ୱରୂପିଣୀ ବିରଜାଙ୍କ ସ୍ଥିତି । ବ୍ରହ୍ମାଙ୍କ ବେଦ ଏହିଠାରେ ସୃଷ୍ଟି ହୋଇଥିବାରୁ ବିରଜା ବେଦମାତା ନାମରେ ଖ୍ୟାତ । ଏହି ସ୍ଥାନରେ ନିଗମ ନିତ୍ୟ ଅଗମ୍ୟ ସ୍ଥାନର ଆରମ୍ଭ । ଶିବ ପୁରରେ ଶିବ ଅଧିଷ୍ଠିତ । ପଥରେ ବ୍ରହ୍ମରୂପୀ କୃଷ୍ଣମୂର୍ତ୍ତି ଦର୍ଶନ କରି ସେମାନେ ବିଭୂତି ମଣ୍ଡଳରେ ପ୍ରବେଶ କଲେ । ଷଣିକେଶର ଭୁବନ, ଅନନ୍ତ ଭୁବନ ଦେଇ ଗରୁଡ଼ ଭୁବନରେ ପହଞ୍ଚିଲେ । ଗରୁଡ଼ ଭୁବନ ବୈକୁଣ୍ଠ ନାମରେ ସୁପ୍ରସିଦ୍ଧ । ସେଠାରେ ଚଣ୍ଡ, ପ୍ରଚଣ୍ଡ ପ୍ରଭୃତି ଦ୍ୱାରପାଳ, ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ବିଷ୍ଣୁଙ୍କୁ ଜଗିଛନ୍ତି । ବିବିଧ ଦଳରେ ବିବିଧ ଅବତାର । ଦଶପତ୍ରରେ ପାର୍ଶ୍ୱଦେବତା ଅଛନ୍ତି । ଏହା ଉଦ୍ଧବ ଓ ଅକ୍ରୂରଙ୍କର ମୂଳସ୍ଥାନ । ଆଦି ଦ୍ୱାରକା, ଅଷ୍ଟପାଟବଂଶୀ ପୂର୍ବରେ ବାସୁଦେବଙ୍କ ପୁର, ଦକ୍ଷିଣରେ ସଙ୍କର୍ଷଣଙ୍କ ପୁର, ପଶ୍ଚିମରେ ପ୍ରଦ୍ୟୁମ୍ନପୁର ଓ ଉତ୍ତରରେ ଅନିରୁଦ୍ଧ ପୁର । ବିଭିନ୍ନ ଦଳରେ ବୃନ୍ଦାବନ ଓ ଗୋପପୁରର ଅବସ୍ଥାନ, ବିପ୍ରଲବ୍ଧ, ଖଣ୍ଡିତା, ଉତ୍କଣ୍ଠିତା, ବାସକ-ସଜ୍ଜା, କଳହାନ୍ତରିତା, ସ୍ୱାଧୀନଭର୍ତ୍ତୃକା, ଅଭିସାରିକା ପ୍ରଭୃତି ନାୟିକା ଲକ୍ଷଣ ପ୍ରତିଷ୍ଠିତ । ରୁକ୍ମିଣୀ ଅନନ୍ତମାୟାରଅନ୍ତ ନପାଇ ବିସ୍ମୟାଭିଭୂତା ହେଲେ ।

"ଠାବେ ଠାବେ ଲକ୍ଷ୍ମୀନାରାୟଣ ସରୂପୀ
ବିବିଧ ବିଭୂତିମନ୍ତେ ଆନନ୍ଦ ରୂପୀ ।"

(୨୨/୭୩) ।

ଏ ସମସ୍ତ ନିତ୍ୟ ସ୍ଥଳର ଆବରଣ । ଏସବୁ ପରେ କାଳିନ୍ଦୀ ପୁଳିନରେ ପ୍ରବେଶ କରି କାଳମାୟାଙ୍କର ପ୍ରକାଶ ଦେଖିଲେ । ଶ୍ରୀକୃଷ୍ଣଙ୍କୁ ଚହ୍ନିପାରି କାଳମାୟା

ବୈଷ୍ଣବୀ ମୂର୍ତ୍ତି ଧରି ପଥ ଛାଡ଼ିଦେଲେ । ଅଷ୍ଟବଟ ନିକଟରେ ପଶ୍ଚିମ ଦ୍ୱାରର ପାରିଜାତ ବୃକ୍ଷତଳେ ଆଦି ଦ୍ୱାରକା ଅବସ୍ଥିତ । ନିତ୍ୟରାଧା, ନିତ୍ୟଗୋପୀ, ନିତ୍ୟ-କିଶୋର କୃଷ୍ଣଙ୍କର ଏହା ନିତ୍ୟ ବିହାର ସ୍ଥଳୀ ।

ନିତ୍ୟସ୍ଥଳ ସହିତ ରାଧାକୃଷ୍ଣଙ୍କର ସମ୍ବନ୍ଧ ଅବିଚ୍ଛେଦ୍ୟ । ମର୍ତ୍ତ୍ୟରେ ଆବିର୍ଭୂତ ରାଧାକୃଷ୍ଣ ଯେଉଁସ୍ଥାନରେ ଲୀଳା ବିଳାସ ପ୍ରକାଶ କରିଛନ୍ତି ସେହି ବୃନ୍ଦାବନ ନିତ୍ୟ-ସ୍ଥଳର ଅଂଶ ବିଶେଷ ।

"ତୁମ୍ଭେ ଗଲେକି ଆମ୍ଭେ ଥିବୁ ରହି
ଆମ୍ଭେ ଗଲେହେଁ ନିତ୍ୟସ୍ଥଳ ନାହିଁ ।
ଏଥିର ଅଂଶ ଆଗ ହୋଇ ଯାଉ
ଗୋପ ଯମୁନା ଗୋ, ନୀପବନ ହୋଇଥାଉ ସେ ।"

(୮।୨୭)

ଗୋଲୋକ ମଣ୍ଡଳ ପରେ ଶିବୁରଙ୍କର ଦ୍ୱାରଦେଶ । ନିତ୍ୟ ସ୍ଥଳରେ ପ୍ରେମ ପଲଙ୍କରେ ଶ୍ରୀରାଧାଙ୍କ ସହିତ ଶ୍ରୀକୃଷ୍ଣ ବିହାର କରନ୍ତି । ଶିବୁରଙ୍କ ସେବାରେ ସନ୍ତୁଷ୍ଟ କରିପାରିଲେ ସେ ସ୍ଥଳକୁ ଯିବାପାଇଁ କେହି ସମର୍ଥ ହୋଇ ପାରେ । ପୁଣି,

"ସ୍ତ୍ରୀ ଅଙ୍ଗଧରି ଯେନ୍ତୁ ଯାଇ
ସେ ନିତ୍ୟସ୍ଥଳ ହୋ ଦେଖଇ ।"

ସେହି ଅଲୌକିକ ରାସଲୀଳା ଦର୍ଶନରେ ମନରେ ଚୈତନ୍ୟ ଉଦୟ ହୁଏ, ମନର ଅନ୍ଧକାର ଦୂର ହୁଏ ଓ ସାତ୍ତ୍ୱିକଭାବର ଉଦ୍ରେକ ହୁଏ ।

"ସପତ ମଣ୍ଡଳୀପରେ ଦିବ୍ୟ ଯେ ରହାସ
ସତ୍ୟ ମଣ୍ଡଳୀରେ ରାଧାକୃଷ୍ଣ ଏକବେଶ ।"

(ନାମରତ୍ନ ଗୀତାର-୨୪ ଅଧ୍ୟାୟ)

କମଳ କେଶର ଉପରେ ପରସ୍ପର ଆଲିଙ୍ଗନ ପାଶରେ ଆବଦ୍ଧ ରାଧାକୃଷ୍ଣ କ୍ରୀଡ଼ାରତ । ଶୂନ୍ୟ ସଂହିତାରେ ବର୍ଣ୍ଣନା କରାଯାଇଅଛି ଯେ ପ୍ରଥମ୍ ଦ୍ୱାରରେ ରାଜସିକ କନ୍ୟାଗଣ ଜଗିଛନ୍ତି । ସେଠାରେ ସବୁ ଐଶ୍ୱର୍ଯ୍ୟମଣ୍ଡିତ । ଦ୍ୱିତୀୟ ଦ୍ୱାରରେ ଦେବକନ୍ୟା ଦ୍ୱାର ରକ୍ଷକ । ତୃତୀୟ ଦ୍ୱାରରେ ଋଷିକନ୍ୟା ଦ୍ୱାର ପାଳିକା, ଚତୁର୍ଥ ଦ୍ୱାରରେ ଗୋପକନ୍ୟା ।

ଦୁଇ ଯୋଜନ ଦୂରରୁ କୋଟି କୋଟି ସୂର୍ଯ୍ୟ ତେଜରେ ଚତୁର୍ଦ୍ଦିଗ ଉଦ୍‌ଭାସିତ । ରାହାସ ମଣ୍ଡଳରେ ଶରତଚନ୍ଦ୍ରର ଶୀତଳ କିରଣରେ ସ୍ଥାନ ରମଣୀୟ ।

ସେଠାରେ ଉଚ୍ଚା ନୀଚର ପ୍ରଭେଦ ନାହିଁ । ନିତ୍ୟକୃଷ୍ଣ ଓ ପ୍ରେମରାଧା ସର୍ବଦା ପ୍ରଗାଢ଼ ପ୍ରେମରେ ନିମଗ୍ନ । ଷୋଳସହସ୍ର ଗୋପକନ୍ୟାଙ୍କ ମଣ୍ଡଳୀରେ ମୂରଲୀଧାରୀ ଶ୍ରୀକୃଷ୍ଣ ରାସକ୍ରୀଡ଼ାରେ ନିମଜ୍ଜିତ । ସର୍ବ ସୁନ୍ଦର ସ୍ଥଳୀ ନିତ୍ୟସ୍ଥଳୀ ସର୍ବଲୋକର ଆରାଧ୍ୟ ଭୂମି ।

ବାସୁଦେବ ଶ୍ରୀକୃଷ୍ଣ ଓ ରୁକ୍ମିଣୀ ନିତ୍ୟରାସସ୍ଥଳୀ ଦର୍ଶନ ଉଦ୍ଦେଶ୍ୟରେ ଗୋଲୋକ ମଣ୍ଡଳ ଯାତ୍ରା ଆପାତ ଦୃଷ୍ଟିରୁ ଅଯୌକ୍ତିକ ଓ ଅସଂଗତ ବୋଧ ହୋଇ ପାରେ, ମାତ୍ର ବାହ୍ୟ ଦୃଷ୍ଟିରୁ ଏହି ଯାତ୍ରା ପଥର ଦୁର୍ଗମ ସଙ୍କୁଳତ ଓ ମହାଘୋର ଭୟାବହତାର ଯେଉଁ ଆଲୋକଚିତ୍ର ଅଙ୍କିତ ତାହାର ଏକ ଆଧ୍ୟାତ୍ମିକ ବ୍ୟାଖ୍ୟା କରିଛନ୍ତି ଅଧ୍ୟାପକ ଆର୍ତ୍ତିବଲ୍ଲଭ ମହାନ୍ତି ବିଭିନ୍ନ ବୈଷ୍ଣବ ଶାସ୍ତ୍ର ଓ ତନ୍ତ୍ରର ଅନୁଶୀଳନରେ ।

ନିତ୍ୟ ସ୍ଥଳୀକୁ ଯିବା ପଥରେ ଜଳମଯ୍ପୁର, ଅନଳପୁର, ଭୂମିରପୁର ଓ ପ୍ରତ୍ୟେକ ପୁରରେ ଦେବତା ବା ଅବତାର ବିରାଜମାନ । ଦର୍ଶନ ଶାସ୍ତ୍ର ଆଲୋଡ଼ନ କଲେ ଜଣାଯାଏ ମହାଭୂତମାନଙ୍କର ପଞ୍ଚୀକରଣରେ ଜଗତର ଉତ୍ପତ୍ତି । ସେହି ଜଗତକୁ ଅତିକ୍ରମ କରି ପଞ୍ଚଭୂତ (ଜଳ, ଅନଳର ଉଲ୍ଲେଖ ରହିଛି, ଅନ୍ୟଗୁଡ଼ିକ ତହିଁରୁ ସୂଚିତ) ମଧ୍ୟଦେଇ ଶ୍ରୀକୃଷ୍ଣ ରୁକ୍ମଣୀଙ୍କ ସହ ତମଃ ପ୍ରଧାନା ପ୍ରକୃତି ବା ତାମସ ଅହଂକାରରେ ପ୍ରବେଶ କଲେ, ଯାହା ସ୍ଥୂଳଶରୀରର ଆଧି- ଭୌତିକ ପ୍ରକୃତିର ମୂଳକାରଣ । ତତ୍ପରେ ରାଜସ ଅହଂକାରର ବିକୃତି—କ୍ରିୟା- ଶକ୍ତି ପ୍ରାଣ, ଦଶଇନ୍ଦ୍ରିୟ (ଦେବ ଦୁର୍ଲଭ ଉଲ୍ଲେଖ କରି ନାହାନ୍ତି) ଓ ଜ୍ଞାନଶକ୍ତି ବୁଦ୍ଧି—ଏହି ସବୁକୁ ଅତିକ୍ରମ କରି ସାତ୍ତ୍ୱିକ ଅହଂକାରର ବିକୃତି ମନ ମଧ୍ୟଦେଇ ଅବିକୃତ ମୂଳ ଅହଂକାର ଅତିକ୍ରମ କଲେ (ଭାଗବତ ଦ୍ୱିତୀୟ ସ୍କନ୍ଧ ପଞ୍ଚମ ଅଧ୍ୟାୟରେ ଏହାର ଉଲ୍ଲେଖ ଅଛି) । ତାପରେ ସେହି ପ୍ରକୃତିର ଆଦି ଜନନୀ ବିଷ୍ଣୁଙ୍କର ମାୟା ବୈଷ୍ଣବୀ ଶଙ୍ଖ ଚକ୍ର ଗଦା ପଦ୍ମ ଧାରିଣୀ ଦୁର୍ଗା । ତାଙ୍କର ଅବସ୍ଥିତି ଅର୍ଦ୍ଧମାତ୍ରା ନିକଟରେ । ତାପରେ ସତ୍ତ୍ୱ ପ୍ରଧାନ ବିରାଟ ପ୍ରକୃତି— ମହତତ୍ତ୍ୱ ବା ପ୍ରଥମ ବୁଦ୍ଧିଶକ୍ତି ଅର୍ଥାତ୍ ଜ୍ଞାନଶକ୍ତି ଦଶାଙ୍ଗୁଳ ମାତ୍ର ଅବୟବା ଅଥଚ ଦଶଦିଗରେ ବ୍ୟାପ୍ତ ବିରଜା ଏହି ସତ୍ତ୍ୱପ୍ରକୃତିଙ୍କର ଶକ୍ତି । ସହସ୍ର ଶୀର୍ଷା ବେଦ ପୁରୁଷ ବିରାଟଙ୍କର ଏହା ଅଧିଷ୍ଠାନସ୍ଥଳ । ଏହିଠାରୁ ବ୍ରହ୍ମାଙ୍କ ବେଦର ପ୍ରସୂତି । ବ୍ରହ୍ମା ଏହି ବିରାଟ ପୁରୁଷଙ୍କର ନାଭି କମଳରୁ ଜାତ ହୋଇଛନ୍ତି । ଏହି ବ୍ରହ୍ମ- ଲୋକର ଊର୍ଦ୍ଧ୍ୱଭାଗରେ ଯେଉଁ ସକଳପୁର ବିଦ୍ୟମାନ ସେହି ମଣ୍ଡଳମାନ ଭଗବାନଙ୍କର ଚିତ୍ତଶକ୍ତିର ଆଶ୍ରିତ । କବିଙ୍କ ମତରେ ସେ ସ୍ଥଳ "ନିଗମ, ନିତ୍ୟ ଅଗମ୍ୟ" ।

ଏ ସବୁ ଅତିକ୍ରମ କଲେ ଶିବଙ୍କ ପୁର । ଶିବ ଏଠାରେ ସତ୍ତ୍ୱମୟ । ଏହାଙ୍କ ଚକ୍ଷୁରୁ ସୂର୍ଯ୍ୟ ଚନ୍ଦ୍ର ଜ୍ୟୋତିଷ୍କଙ୍କର ସୃଷ୍ଟି । ଏଠାରେ ଶିବ ରଜତମୋ ରହିତ ହୋଇଥିବାରୁ ସଂହାରକର୍ତ୍ତା ନୁହନ୍ତି । ତାପରେ ନିର୍ଗୁଣ ବ୍ରହ୍ମରୂପୀ କୃଷ୍ଣମୂର୍ତ୍ତିଙ୍କୁ ସେମାନେ ଦର୍ଶନ କଲେ । ଯେଉଁ ବ୍ରହ୍ମ ଭଗବାନ ଶ୍ରୀକୃଷ୍ଣଙ୍କର ପ୍ରଭା, ସେହି ବ୍ରହ୍ମ ଏଠାରେ ଅବସ୍ଥିତ । ଏହାପରେ ଅନେକ ପୁର ଅତିକ୍ରମ କରି ମହା-ବୈକୁଣ୍ଠର ସପ୍ତ ଆବରଣସ୍ଥ ବିଭୂତି ମଣ୍ଡଳରେ ଉପନୀତ ହେଲେ । ବିଭୂତି ସତ୍ତ୍ୱମୟୀ ଓ ଚିନ୍ମୟୀ । ଏହି ବିଭୂତି ବା ଐଶ୍ୱର୍ଯ୍ୟର ଷୋଡ଼ଶ କଳା ବା ମହିମାର ପ୍ରସ୍ତର ଅଛି, ଯଥା—ଶ୍ରୀ, ଭୂ, କୀର୍ତ୍ତି, ଇଳା, ଲୀଳା, କାନ୍ତି, ବିଦ୍ୟା, ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା, ଅନୁଗ୍ରହା । ବିଭୂତି ମଣ୍ଡଳ ପରେ ଗଣମଣ୍ଡଳ । ବିଶ୍ୱକ୍ସେନ, ଅନନ୍ତ ଭବନ ଲଙ୍ଘି ସେମାନେ ଗରୁଡ଼ ଭବନରେ ଉପସ୍ଥିତ ହେଲେ । ଏହିସ୍ଥାନ ଚଣ୍ଡ, ପ୍ରଚଣ୍ଡ, ଭଦ୍ର, ସୁଭଦ୍ର, ଜୟ, ବିଜୟ, ଧାତା, ବିଧାତା ନାମକ ଅଷ୍ଟ ଦ୍ୱାରପାଳଙ୍କ ଦ୍ୱାରା ସୁରକ୍ଷିତ ।

ବାସୁଦେବ କୃଷ୍ଣଙ୍କଠାରେ ଶଙ୍ଖ ଚକ୍ର ଗଦା ପଦ୍ମାଦି ବୈଷ୍ଣବ ଚିହ୍ନ ଦେଖି ଦ୍ୱାରପାଳମାନେ ତାଙ୍କୁ ପଥ ଛାଡ଼ିଦେଲେ । ବୈକୁଣ୍ଠ ବିଂଶ ଦଳ ବିଶିଷ୍ଟ । ଏହି ବିଂଶ ଦଳରେ ଭଗବାନଙ୍କର ବିଂଶ ଅବତାର ବିଦ୍ୟମାନ; ଯଥା :—ଚତୁଃସନ, ବରାହ, ନାରଦ, ନର, ନାରାୟଣ, କପିଳ, ଦତ୍ତାତ୍ରେୟ, ଯଜ୍ଞ, ଋଷଭ, ପୃଥୁ, ମତ୍ସ୍ୟ, କୂର୍ମ, ଧନ୍ୱନ୍ତରୀ, ମୋହିନୀ, ନରସିଂହ, ବାମନ, ପରଶୁରାମ, ବ୍ୟାସ, ରାମଚନ୍ଦ୍ର, ବଳରାମ, କୃଷ୍ଣ, ବୁଦ୍ଧ, କଳ୍କି, ହଂସ, ଧ୍ରୁବପ୍ରିୟ, ହୟଶୀର୍ଷ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ବ୍ରହ୍ମା, ବିଷ୍ଣୁ, ଶିବ । ଦଶଦଳରେ ଦଶଦିଗପାଳ—ବ୍ରହ୍ମା, ଅନନ୍ତ, ଇନ୍ଦ୍ର, ବରୁଣ, ଯମ, କୁବେର, ଅଗ୍ନି, ବାୟୁ, ଈଶାନ, ନୈଋତ ଓ ଅନ୍ୟାନ୍ୟ ପାର୍ଶ୍ୱଦେବତାମାନେ ଅଛନ୍ତି । ଏହା ଦ୍ୱାରକା—ଉଦ୍ଧବ ଓ ଅକ୍ରୂରଙ୍କର ମୂଳପୀଠ । ଏହିଠାରେ ଅଷ୍ଟପାଟବଂଶୀ ଅଛନ୍ତି । ଏହାର ଚତୁର୍ଦ୍ଦିଗରେ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧଙ୍କ ଅଧିଷ୍ଠାନ । ଏଠାରୁ ଗୋଲୋକର ପ୍ରାରମ୍ଭ-ନବଆବରଣ ଉପକ୍ରମ ପ୍ରଥମରେ ବିଂଶ ଉପବନ ବିଶିଷ୍ଟ ବିଂଶ ଦଳ । କଦମ୍ବ, ଖଣ୍ଡିକ, କନ୍ଦ, ପଳାଶ, ଅଶୋକ ପ୍ରଭୃତି ବିଂଶ ଉପବନ । ପ୍ରତ୍ୟେକ ଦଳ ଭଗବାନଙ୍କର ବିଂଶ ବିଶେଷ ଲୀଳା ଆବରଣରେ ଆବୃତ । ଇତି ମଧ୍ୟରେ ଷୋଡ଼ଶ ବନ ବିଶିଷ୍ଟ ଷୋଡ଼ଶ ଦଳ । ତାପରେ ଅଷ୍ଟ ଦଳରେ ଲୀଳାକରଣ । ଏହି ଅଷ୍ଟ ଦଳର ରାସ ଦ୍ୱାରରେ ଗୋପୀଶ୍ୱର ମହାଦେବ ଦ୍ୱାର ରକ୍ଷକ । ଏଠାରେ ସମସ୍ତେ ବିଷ୍ଣୁମୂର୍ତ୍ତି—ବାସୁଦେବ, ରୁକ୍ମିଣୀ, ଲକ୍ଷ୍ମୀନାରାୟଣ, ରାଧାମାଧବଙ୍କ ଅବସ୍ଥାନ । ଏହା ମୂଳ ନିତ୍ୟସ୍ଥଳ ନୁହେଁ । ନିତ୍ୟ ଧାମକୁ ଯିବା କ୍ରମରେ ଶ୍ରୀକୃଷ୍ଣ କାଳିନ୍ଦୀ

ପୁଳନରେ ପ୍ରବେଶ କଲେ । କାଳନ୍ଦୀ କାଳମାୟା । ନିତ୍ୟଧାମକୁ ବେଷ୍ଟନ କରି ତାହାଙ୍କର ସ୍ଥିତି । ବାସୁଦେବ କୃଷ୍ଣଙ୍କୁ ଦେଖି ବୈଷ୍ଣବମୂର୍ତ୍ତି ଧାରଣ କରି କାଳମାୟା ପଥ ଛାଡ଼ିଦେଲେ । ଶୂନ୍ୟ ସଂହିତାର ବର୍ଣ୍ଣନା ସହିତ ଏହାର ସାମଞ୍ଜସ୍ୟ ଲକ୍ଷିତ । ତାପରେ ଅଷ୍ଟଦଳ ନିକଟରେ ସେମାନେ ପହଞ୍ଚିଲେ । ଏହି ଆବରଣରେ ପଶ୍ଚିମ ଦ୍ୱାରରେ ପାରିଜାତ ବୃକ୍ଷମୂଳରେ ଆଦିମୂର୍ତ୍ତି ବାସୁଦେବ, ଉତ୍ତର ଦ୍ୱାରରେ ଆଦି ସଙ୍କର୍ଷଣ, ପୂର୍ବ ଦ୍ୱାରରେ ଆଦି ପ୍ରଦ୍ୟୁମ୍ନ, ଦକ୍ଷିଣ ଦ୍ୱାରରେ ଆଦି ଅନିରୁଦ୍ଧ । ଗୋଲୋକ ମଣ୍ଡଳର ନିତ୍ୟସ୍ଥଳରେ କେବଳ ମାଧୁର୍ଯ୍ୟମୟ ରାଧାକୃଷ୍ଣ ଗୋପୀମାନଙ୍କ ସହ ଅବସ୍ଥାନ କରୁଅଛନ୍ତି । ଗୋଲୋକଧାମର ସୁବର୍ଣ୍ଣମୟ ପ୍ରାଚୀରର ଦ୍ୱାରଦେଶରେ ନିତ୍ୟ ତତ୍ତ୍ୱକାରିଣୀ ତ୍ରିପୁରେଶ୍ୱରୀ ପ୍ରଧାନ ଦ୍ୱାରପାଳିକା । ସେ ରୁକ୍ମିଣୀ ଓ ବାସୁଦେବଙ୍କୁ ପ୍ରବେଶ କରିବାକୁ ନିଷେଧ କଲେ । ବାସୁଦେବ ଶ୍ରୀକୃଷ୍ଣଙ୍କ ଅନୁରୋଧରେ ପ୍ରସନ୍ନ ହୋଇ ତ୍ରିପୁରା ତାଙ୍କୁ ମନ୍ତ୍ରଦାନ କଲେ ଏବଂ ମର୍ତ୍ତ୍ୟରାଧାଙ୍କ ଦର୍ଶନ ଜନିତ ପୁଣ୍ୟବଳରେ ରୁକ୍ମିଣୀ ମନ୍ତ୍ରସିଦ୍ଧା ହେବେ ବୋଲି କହି ଅନ୍ତର୍ଦ୍ଧାନ ହେଲେ । ସେହିସ୍ଥାନରୁ ରୁକ୍ମିଣୀ ବାସୁଦେବ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କଲେ ।

ପୁରୁଷୋତ୍ତମ ତାପିନୀରେ ବର୍ଣ୍ଣିତ ନିତ୍ୟସ୍ଥଳୀର ମହିମା ବୈଷ୍ଣବ କବିଗଣଙ୍କ କାବ୍ୟରେ ପ୍ରତିପାଦିତ । ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତା, ଦୀନକୃଷ୍ଣଙ୍କ ନାମରତ୍ନ ଗୀତା, ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣି ଓ ରହସ୍ୟମଞ୍ଜରୀରେ ନିତ୍ୟସ୍ଥଳର ସମ୍ପୂର୍ଣ୍ଣ ବିବରଣ ଦିଆ ନଯାଇ ସଂକ୍ଷେପରେ ଦିଆଯାଇଅଛି । ସେହି ସ୍ୱଳ୍ପ ବର୍ଣ୍ଣନାରେ ପାଠକର ପ୍ରାଣ ପଲ୍ଲବିତ ଓ ଦିବ୍ୟ ଜ୍ଞାନରେ ଚିତ୍ତ ଉଦ୍ଭାସିତ ହୋଇଉଠେ ।

ତ୍ରିପୁରା —

ଚଉଷଠୀ ଗୋପୀମାତାଙ୍କ ପୁର ନିତ୍ୟସ୍ଥଳୀରେ ତ୍ରିପୁରାସୁନ୍ଦରୀଙ୍କର ଅବସ୍ଥାନ । କବିଙ୍କ ଭାଷାରେ,

"ସବୁର ଉପରେ ଶ୍ରେଷ୍ଠ ତ୍ରିପୁରାସୁନ୍ଦରୀ
ନିତ୍ୟସ୍ଥଳ ନିତ୍ୟଦ୍ୱାର ଥାଇ ସେ ଆବୋରି ।"

(ନାମରତ୍ନ ଗୀତା—୨୪ ଅଧ୍ୟାୟ) ।

ଅନ୍ୟ ଦ୍ୱାରମାନଙ୍କରେ ମଧ୍ୟ ସେ ବିହାର କରନ୍ତି । ନିତ୍ୟଦ୍ୱାର ମହାଘୋର । ସେ ଦ୍ୱାରରେ ସମସ୍ତଙ୍କର ପ୍ରବେଶ ନିଷିଦ୍ଧ । ସେ ଦ୍ୱାରକୁ ଅତିକ୍ରମ କରିବାର ଶକ୍ତି କାହାର ନାହିଁ । ତେତିଶ କୋଟି ଦେବତା ସେବା କରି ମଧ୍ୟ

ଝିପୁରିଙ୍କୁ ସନ୍ତୁଷ୍ଟ କରିପାରିଲେ ନାହିଁ । ଲକ୍ଷେ ଯୁଗ ପ୍ରତୀକ୍ଷା କରି ମଧ୍ୟ ବ୍ରହ୍ମା, ଶିବ ସେଠାରୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ଝିପୁରି ରାହାସମଣ୍ଡଳ ଦ୍ୱାର ଅବରୁଦ୍ଧ କରିଥାଆନ୍ତି । ଝିପୁରିଙ୍କୁ ସନ୍ତୁଷ୍ଟ କରିବାର କ୍ଷମତା କାହାର ନାହିଁ । ବିଷ୍ଣୁଙ୍କ ସେବାରେ ସନ୍ତୁଷ୍ଟ ହୋଇ ସେ ତାଙ୍କୁ ବରପ୍ରଦାନ କରିଥିଲେ । ବିଷ୍ଣୁ ନିତ୍ୟରାସ ଦେଖିବାକୁ ଚାହିଁଲେ । ଝିପୁରି ବୁଝିଲେ ତାଙ୍କୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିବ । ତଥାପି ସେ ସତ୍ୟ ରକ୍ଷା କରିବାକୁ କୃତସଂକଳ୍ପ ହେଲେ ।

ଦୁଃସାହସିକ ପଦକ୍ଷେପ ନେଇ ଝିପୁରି ଶ୍ରୀକୃଷ୍ଣଙ୍କୁ ନାରୀବେଶରେ ନେଇଗଲେ, ମାତ୍ର ନିରାକାର ହରି ଜାଣିପାରି ତାଙ୍କୁ ଅଭିଶାପ ଦେଲେ । ସେ ତୁଳସୀ ରୂପରେ ମର୍ତ୍ତ୍ୟରେ ଜନ୍ମଗ୍ରହଣ କଲେ ।

ନାମରତ୍ନ ଗୀତାରେ ଝିପୁରି ନିତ୍ୟରାସସ୍ଥଳର ବିଶ୍ୱସ୍ତ ଦ୍ୱାରପାଳିକା । ମାନବ ବିଷ୍ଣୁଙ୍କୁ ନିତ୍ୟରାସସ୍ଥଳୀକୁ ଗୋପନରେ ପ୍ରବେଶାଧିକାର ଦେବାରୁ ନିରାକାର ହରିଙ୍କ ଦ୍ୱାରା ଶାପଗ୍ରସ୍ତ ହୋଇ ମର୍ତ୍ତ୍ୟରେ ତୁଳସୀ ରୂପେ ଜନ୍ମଗ୍ରହଣ କଲେ ।

"ଶ୍ରୀରାଧା ବୋଇଲେ ତୁ ଯେ ହୋଇଲୁ ତୁଳସୀ
ତେଣୁ କରି ଶ୍ରୀକୃଷ୍ଣ ମଥାରେ ଥିବୁ ବସି ।"

ରହସ୍ୟମଞ୍ଜରୀରେ ଝିପୁରି ନିତ୍ୟରାସସ୍ଥଳରେ ପ୍ରଧାନ ଦ୍ୱାରପାଳିକା । ଆଦିରାଧା ଆଦିକୃଷ୍ଣଙ୍କୁ ଦର୍ଶନ କରାଇବା ପାଇଁ ବାସୁଦେବ ଶ୍ରୀକୃଷ୍ଣ ଓ ରୁକ୍ମଣୀ ଯାଉଥିବା ସମୟରେ ଝିପୁରେଶ୍ୱରୀ ସେମାନଙ୍କ ପଥ ଅବରୋଧ କଲେ ଓ ବଳଭଦ୍ରଙ୍କୁ ମନ୍ତ୍ରବଳରେ ନାରୀ ଅଙ୍ଗରେ ପରିବର୍ତ୍ତିତ କରିସୁଦ୍ଧା କପରି ଚହ୍ଲା ପଡ଼ିଗଲେ ସେ ବୃତ୍ତାନ୍ତ ବର୍ଣ୍ଣନା କଲେ ।

"କେବଳ କଥାଏ ଅଛୁ ଅତି ଗୁପତ
ଜଗତେ ଅଗମ୍ୟ ଗୁରୁମୁଖେ ବ୍ୟକତ
ଶ୍ରୀଗୁରୁ ଚରଣେ ଯେତେବେ ପାରଇ ସେବି
ତାହାଙ୍କ ପ୍ରସନ୍ନେ ବସ୍ତୁ ଏ ସୁଖ ଲଭି ।"

(୨୩/୩୦-୩୧)

ବାସୁଦେବ ଶ୍ରୀକୃଷ୍ଣଙ୍କର ଅନୁନୟରେ ପରିତୁଷ୍ଟ ହୋଇ ଶ୍ରୀକୃଷ୍ଣଙ୍କୁ ମନ୍ତ୍ର ପ୍ରଦାନ କଲେ । ସେ ଶ୍ରୀକୃଷ୍ଣଙ୍କୁ ଆଦେଶ ଦେଲେ ରୁକ୍ମଣୀଙ୍କୁ ସେହି ମନ୍ତ୍ର ଦାନ କରିବା ପାଇଁ । ପୁଣି, ରୁକ୍ମଣୀ ଦ୍ୱାରକାର ନାରୀଙ୍କୁ ମନ୍ତ୍ରଦାନ କରି ସେମାନଙ୍କର ଗୁରୁ ହେବେ ବୋଲି କହି ଅନ୍ତର୍ଦ୍ଧାନ ହେଲେ । ମର୍ତ୍ତ୍ୟଗୋପୀଙ୍କଦର୍ଶନ ଲି...

କରିଥିବାରୁ ରୁକ୍ମଣୀ ମନ୍ତ୍ରସିଦ୍ଧା ହେଲେ ଓ ତାଙ୍କର ଅନ୍ତର ଜ୍ଞାନାଲୋକରେ ଉଦ୍‌ଭାସିତ ହେଲା, ମନର ଅନ୍ଧକାର ଅପସରିଗଲା । ତ୍ରିପୁରା ନିତ୍ୟଚୈତନ୍ୟକାରିଣୀ । ସମସ୍ତଙ୍କର ଅନ୍ତରର ଭାବ ସେ ଜାଣି ପାରନ୍ତି । ସେ ଅଖିଳ ମାତା, ତ୍ରିପୁରର ଗୁରୁ, ସର୍ବ ପୂଜିତା । ସେ ପ୍ରସନ୍ନ ହେଲେ ମନ୍ତ୍ର, ଯନ୍ତ୍ର, ତନ୍ତ୍ର ଭେଦ କରିବା ପ୍ରତିକାର କରିପାରନ୍ତି ।

ତ୍ରିପୁରାଙ୍କ ସହାୟତାରେ ରୁକ୍ମଣୀ ମନ୍ତ୍ରସିଦ୍ଧା ହେଲେ । ତ୍ରିପୁରା କୃପାକଟାକ୍ଷରେ ଚାହିଁଲେ ଅଘଟନକୁ ଘଟନ କରିବାରେ ସମର୍ଥ । ଅନ୍ତରର କଥା ଜାଣିବାରେ ସେ ଅନ୍ତର୍ଯାମୀ ସ୍ୱରୂପିଣୀ ।

**କବିଙ୍କର ଶାସ୍ତ୍ରଦର୍ଶିତା :—**

କବି ଦେବଦୁର୍ଲଭ ଦାସ ଷୋଡ଼ଶ ଶତାବ୍ଦୀରେ ରହସ୍ୟମଞ୍ଜରୀ କାବ୍ୟ ରଚନା କରି ତାଙ୍କର ଅପୂର୍ବ କବିତ୍ୱ ଶକ୍ତିର ପରିଚୟ ଦେଇ ଅଛନ୍ତି । ଉତ୍କଳରେ ଜ୍ଞାନମିଶ୍ରା ଭକ୍ତି ଓ ଶୁଦ୍ଧା ଭକ୍ତିର ସମନ୍ୱୟ ସମ୍ପାଦନ କାଳରେ ସମନ୍ୱୟ ଲାଗି ଶାସ୍ତ୍ରାନୁମୋଦିତ ମାର୍ଗ ଅନୁସନ୍ଧାନରେ ବ୍ରତୀ ହୋଇ ସେ ଏହି କାବ୍ୟର ପରିକଳ୍ପନା କରିଥିଲେ । ତାଙ୍କର ଶାସ୍ତ୍ରଜ୍ଞାନ ଓ ପ୍ରତିଭା ତାଙ୍କୁ ଏହି କର୍ମରେ ଯଶସ୍ୱୀ କରିଥିବାର ପରିଲକ୍ଷିତ ହୁଏ । ତାଙ୍କର ଏହି କାବ୍ୟ ଓଡ଼ିଆ ବୈଷ୍ଣବ ସାହିତ୍ୟ ଭାବରେ ତତ୍ତ୍ୱଗର୍ଭିକ ହେବା ସଙ୍ଗେ ସଙ୍ଗେ ଅଗାମୀ ଯୁଗର କାବ୍ୟ ସାହିତ୍ୟ ଲାଗି ଏକ ମୂଳଶାଳା ଭାବରେ ପ୍ରତିଭାତ ।

କବି କେଉଁ କେଉଁ ଶାସ୍ତ୍ର ପାଠ କରିଥିଲେ ତାହାର ବିଶଦ ବିବରଣ ଦେଇ ନଥିଲେ ହେଁ ତାଙ୍କ ରଚନାରୁ କିଛି ମାତ୍ର ସୂଚନା ମିଳିଥାଏ । ସେ ପ୍ରକାଶ କରିଛନ୍ତି ଯେ ରହସ୍ୟମଞ୍ଜରୀର କଥାବସ୍ତୁ ତାଙ୍କ ସମୟ ପର୍ଯ୍ୟନ୍ତ କୌଣସି କବିଙ୍କ କୃତିରେ ପ୍ରକାଶ ପାଇ ନଥିଲା । ମାତ୍ର ଅଚ୍ୟୁତାନନ୍ଦଙ୍କର ଶୂନ୍ୟ ସଂହିତା ସେତେବେଳକୁ ରଚିତ ହୋଇ ସାରିଥିବାର ଜଣାଯାଏ । କବି ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତାଠାରେ କଥାବସ୍ତୁର ପରିକଳ୍ପନା ଲାଗି ଋଣୀ । ତାଙ୍କର ପରବର୍ତ୍ତୀ କାଳରେ ରଚିତ ନାମ ରତ୍ନ ଗୀତା ବା ତାଙ୍କର ସମସାମୟିକ କାଳରେ ରଚିତ ଗୋପୀ ଚନ୍ଦନର କଥାବସ୍ତୁ ସହିତ ରହସ୍ୟମଞ୍ଜରୀର କଥାବସ୍ତୁର ସଂଯୋଗ ନାହିଁ । କବି ତାଙ୍କ ରଚନା ମଧ୍ୟରେ ଆଦିପୁରାଣର ଗୋପୀପ୍ରେମ ମାହାତ୍ମ୍ୟ, କୃଷ୍ଣଯାମଳ, ବିଷ୍ଣୁଯାମଳ, ଅଥର୍ବବେଦ ଆଦିରୁ ତଥ୍ୟ ଗ୍ରହଣ କରିଥିବାର ସ୍ୱୀକାର କରିଛନ୍ତି ।

୧ । "କୃଷ୍ଣ ଯାମଳେ ଏହା କହିଅଛି
କୃଷ୍ଣ ପ୍ରାପ୍ତେ ମଣି ରାଧା ମୂଳାଛି ।
ରାଧା ପ୍ରସାଦୁ ଲଭେ କୃଷ୍ଣ ଭାବ,
ଫେଡ଼ି ତୁମ୍ଭଙ୍କୁ 'ଗୋ' କହିଲୁ ପରମ ଲାଭ ସ୍ୱେ ।" (୮/୫) ।
୨ । "ବିଷ୍ଣୁ ଯାମଳେ ବ୍ରହ୍ମା ନାରଦଙ୍କୁ ।
କବିତ୍ୱ ସୁଖ କହିଲେ ତାହାଙ୍କୁ ।" (୮/୩୮) ।
୩ । "ରାଧା ସାତୁକା ରାଜସୀ ରୁକ୍ମିଣୀ
ଯାହା କହିଛି ବେଦ ଅଥର୍ବାଣୀ ।" (୫/୯) ।
୪ । "ଗୋପୀ ପ୍ରେମ ମାହାତ୍ମ୍ୟ ନାମେ ପାଠ
ଆଦିପୁରାଣ ବାଣୀ ମଧ୍ୟେ ଶ୍ରେଷ୍ଠ ।" (୫/୧୭) ।

କବିଙ୍କର ବହୁ ଶାସ୍ତ୍ରଦର୍ଶିତା ବିଷୟରେ ମତ ପ୍ରକାଶ କରି ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି, "ପୁରାଣ, ଦର୍ଶନ, ସ୍ମୃତି, ଯୋଗ, ଛନ୍ଦ ଓ ସଙ୍ଗୀତ ପ୍ରଭୃତି ବିଦ୍ୟାରେ କବିଙ୍କର ପ୍ରାବୀଣ୍ୟ ଥିଲା । ଏହି ଶାସ୍ତ୍ରମାନଙ୍କର ତତ୍ତ୍ୱୋପଲବ୍ଧି କବିଙ୍କ ବୁଦ୍ଧିର ଓ ଲବ୍ଧ ତତ୍ତ୍ୱମାନଙ୍କର ସ୍ୱକାବ୍ୟରେ ସମୀଚୀନ ସଂଯୋଜନ କବିଙ୍କ ପ୍ରତିଭାର ନିଦର୍ଶନ ।"

କବିଙ୍କର ଶାସ୍ତ୍ରଜ୍ଞାନ ବିଷୟରେ ତାଙ୍କ ରଚିତ କାବ୍ୟ ଯଥେଷ୍ଟ ପରିଚୟ ଦେଇଥାଏ । ବୈଷ୍ଣବ ଦର୍ଶନକୁ ସେ ଅତ୍ୟନ୍ତ ଲୋକପ୍ରିୟ ରୀତିରେ ଯେପରି ଭାବରେ ପ୍ରକାଶ କରିଛନ୍ତି । ତାହା ମଧ୍ୟ ତାଙ୍କର ଉପଯୁକ୍ତ ଶାସ୍ତ୍ରଜ୍ଞାନର ପରିଚୟ ଦେଇଥାଏ ।

**କବିଙ୍କର ବର୍ଣ୍ଣନା ଚାତୁରୀ :—**

ରହସ୍ୟମଞ୍ଜରୀ କାବ୍ୟରେ କବି ଦେବଦୁର୍ଲ୍ଲଭ ଦାସ ଯେଉଁ ରୀତିରେ ବର୍ଣ୍ଣନା ଚାତୁରୀ ପ୍ରଦର୍ଶନ କରିଛନ୍ତି ତାହା ସେ ସମୟର ପରିପ୍ରେକ୍ଷୀରେ ଅତ୍ୟନ୍ତ ଉଲ୍ଲେଖ ଯୋଗ୍ୟ । ଷୋଡ଼ଶ ଶତାବ୍ଦୀରେ ଓଡ଼ିଆ କାବ୍ୟର ପୂର୍ଣ୍ଣ ବିକଶିତ ରୂପର ସ୍ୱାଚ୍ଛନ୍ଦ୍ୟ ପରିଲକ୍ଷିତ ହେବା ସହଜ ନ ହେଲେହେଁ ରହସ୍ୟମଞ୍ଜରୀ ତାର କାବ୍ୟ ରୂପରେ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସମ୍ପାଦନ କରିଅଛି ବୋଲି କୁହାଯାଇପାରେ ।

ପଞ୍ଚଦଶ ଶତାବ୍ଦୀର ସାହିତ୍ୟ ଭାବରେ ସାରଳା ମହାଭାରତର ସୃଷ୍ଟି ଓଡ଼ିଆ ସାହିତ୍ୟ ସୃଷ୍ଟିର ଆଦିପର୍ବ । ସାରଳା ସାହିତ୍ୟର ଦାର୍ଢ୍ୟ ତାହାର ପ୍ରାଚୀନତାର ଅନ୍ୟ ଏକ ଲକ୍ଷଣ । ସାରଳା ସାହିତ୍ୟରେ ବ୍ୟବହୃତ ବହୁ ଶବ୍ଦର ପ୍ରାଚୀନତା ଏବେ ମଧ୍ୟ ଦୁର୍ବୋଧ । ସେହି ପ୍ରକାର ଶବ୍ଦ

କେତେକ ସ୍ଥଳମାନେରେ ରହସ୍ୟମଞ୍ଜୁଷାରେ ବ୍ୟବହୃତ ହେବାର ଦେଖାଯାଏ । ରହସ୍ୟମଞ୍ଜୁଷା କାବ୍ୟ ପରମ୍ପରାରେ ରଚିତ ହୋଇଥିବା ଦୃଷ୍ଟିରୁ ତାର ସାହିତ୍ୟିକ ବିଶ୍ଳେଷ ବହୁ ଭାବରେ ବିସ୍ତୃତ ।

କାବ୍ୟର ଆରମ୍ଭରେ କବି ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରି ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ଓ ଶ୍ରୀଜଗନ୍ନାଥଙ୍କର ମାହାତ୍ମ୍ୟ ବ୍ୟାଖ୍ୟାନ କରିଛନ୍ତି । ଶ୍ରୀଜଗନ୍ନାଥଙ୍କର କରୁଣା ଭିକ୍ଷା କରିଛନ୍ତି ରହସ୍ୟମଞ୍ଜୁଷା କାବ୍ୟ ରଚନା ପାଇଁ, ପୁଣି, ସରସ୍ୱତୀଙ୍କର କୃପାମଧ୍ୟ ସେ ଏଥିପାଇଁ ଭିକ୍ଷା କରିଛନ୍ତି । କାବ୍ୟ ରଚନାର ଏହା ଏକ ସାଧାରଣ ରୀତି । ଶ୍ରୀଜଗନ୍ନାଥଙ୍କର ସେବା ଉପଚାର କବିଙ୍କ ରଚନାରେ ଅତ୍ୟନ୍ତ ମନୋରମ ତଥା ହୃଦୟସ୍ପର୍ଶୀ ହୋଇଅଛି । କବିଙ୍କ ଭାଷାରେ,

"ସିଦ୍ଧ ରୁଦ୍ରଗଣ ବିଦ୍ୟାଧର,
ସେବା କରୁଛନ୍ତି ଯୋଗେ ଯେ ଯାହାର । ଶ୍ରୀଜଗନ୍ନାଥ ।
ଛତ୍ରାଲମ୍ବ ଜଳଦାଡ଼ମ୍ବର,
କୋଟି କୋଟି ସିନ୍ଧୁ-ଲହରୀ ଚାମର । ଶ୍ରୀଜଗନ୍ନାଥ ।
ଭେରୀ ଶଙ୍ଖ ଉପାଙ୍ଗ କାହାଳ,
ବେଣୁ ବୀଣା ତାଳ ମୃଦଙ୍ଗ ଚହଳ । ଶ୍ରୀଜଗନ୍ନାଥ ।
ଗାବନ୍ତି ଗନ୍ଧର୍ବେ ମିଳି ସଙ୍ଗେ,
ମଧ୍ୟେ ନାଚନ୍ତି କନ୍ନରୀ ନାନାରଙ୍ଗେ । ଶ୍ରୀଜଗନ୍ନାଥ ।
ନୃତ୍ୟ, ଗୀତ, ବାଦ୍ୟ, ରସରଙ୍ଗ,
ନାନାଗତି ଭ୍ରାନ୍ତି ସ୍ତୁତିରୀ ତରଙ୍ଗ । ଶ୍ରୀଜଗନ୍ନାଥ ।
(୧/୨୨-୨୬) ।

କବି ଯେତେବେଳେ ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରିଛନ୍ତି ସେତେବେଳେ ଶ୍ରୀଜଗନ୍ନାଥ ତାଙ୍କ ଚକ୍ଷୁରେ ଗୋଲୋକ ବିହାରୀ ବିଷ୍ଣୁରୂପରେ ପ୍ରତିଭାତ ହୋଇଛନ୍ତି । କବିଙ୍କର ଦିବ୍ୟ ଦୃଷ୍ଟି ନୀଳାଚଳ ଧାମରେ, ମର୍ତ୍ତ୍ୟ ବୈକୁଣ୍ଠରେ, ଆଦି-ବୈକୁଣ୍ଠର ସନ୍ଧାନ ପାଇଅଛି ।

ଚତୁର୍ଥ ଛାନ୍ଦରେ ଶ୍ରୀକୃଷ୍ଣଙ୍କର ଦ୍ୱାରକାନାରୀମାନେ ତାଙ୍କର ମନଦୁଃଖର କାରଣ ଜିଜ୍ଞାସା କରିବା ସମୟରେ ଶ୍ରୀକୃଷ୍ଣଙ୍କ ନିକଟରେ ପ୍ରାର୍ଥନା କରିଛନ୍ତି । ଛାନ୍ଦର ଆରମ୍ଭରୁ ୨୬ ପଦ ପର୍ଯ୍ୟନ୍ତ ପ୍ରାର୍ଥନାର ଭାଷା ବିସ୍ତୃତ । ଏ ପ୍ରକାର ବନ୍ଦନା ବା ପ୍ରାର୍ଥନାର ବର୍ଣ୍ଣନା ସାରଳା ସାହିତ୍ୟରେ ବହୁସ୍ଥଳରେ ଦେଖାଯାଏ । ସାରଳା ଦାସ ଯେତେବେଳେ ପ୍ରସଙ୍ଗ କ୍ରମରେ କୌଣସି ଦେବଦେବୀଙ୍କ ବିଷୟ ଉତ୍ଥାପନ

କରିଛନ୍ତି ସେତେବେଳେ ଦୀର୍ଘ ବର୍ଣ୍ଣନାରେ ତାଙ୍କର ବନ୍ଦନା ଓ ମହିମାଗାନ କରି ଅଛନ୍ତି । ଠିକ୍ ସେହିପରି ରୁଦ୍ରସୁଧାନିଧିରେ ଶିବଙ୍କ ବନ୍ଦନା ବର୍ଣ୍ଣିତ । ପ୍ରାଚୀନ ସାହିତ୍ୟର ଏହା ଏକ ଗୀତଭାବରେ ଗୃହୀତ । କବି ଦେବଦୁର୍ଲଭ ଦାସ ପ୍ରାଚୀନ ପୁରାଣ ସାହିତ୍ୟର ପ୍ରଭାବରୁ ଏହି ଦୃଷ୍ଟିରୁ ମୁକ୍ତ ନୁହନ୍ତି ।

କାବ୍ୟରଚନାରେ କବିଙ୍କର କଳ୍ପନାପ୍ରବଣତା ସହିତ ଶୃଙ୍ଗାରିକତାର ମିଶ୍ରଣ କାବ୍ୟକୁ ରସୋତ୍ତୀର୍ଣ୍ଣ କରିବାରେ ସାହାଯ୍ୟ କରିଅଛି । ଶ୍ରୀକୃଷ୍ଣ ଅଷ୍ଟପାଟ-ବଂଶୀଙ୍କ ସମ୍ମୁଖରେ ତାଙ୍କର ଦୁଃଖର କାରଣ ବ୍ୟକ୍ତକଲେ ଯେ, ଶ୍ରୀରାଧା ଓ ଗୋପୀମାନଙ୍କର ବିଚ୍ଛେଦ ହେତୁ ସେ ଅତିଶୟ ଦୁଃଖିତ । ସେମାନଙ୍କର ବିରହ ତାଙ୍କ ପକ୍ଷରେ ଅସହ୍ୟ ହୋଇପଡ଼ିଛି । ଅଷ୍ଟପାଟବଂଶୀମାନେ ନିଜ ପତିଙ୍କ ମୁଖରେ ଅନ୍ୟ ନାରୀମାନଙ୍କ ପ୍ରତି ଅନୁରକ୍ତିବାଣୀ ଶୁଣି ଈର୍ଷାନ୍ୱିତା ହେବାର କଥା । ଅଭିମାନିନୀ ଜାମ୍ବବତୀ ନାରୀସୁଲଭ ଈର୍ଷାପରାୟଣ ହୋଇ ସତ୍ୟଭାମାଙ୍କ ଆଗରେ ଶ୍ରୀକୃଷ୍ଣଙ୍କ ପ୍ରତି ଅଭିମାନ ମିଶ୍ରିତ ବାଣୀ ପ୍ରକାଶ କରିଛନ୍ତି । ଏହି ବାଣୀର ଶୃଙ୍ଗାର-ରସର ଆଧିକ୍ୟ ସୂଚିତ ।

"ବଦନ୍ତି ଜମ୍ବେବ କେମା ଶୁଣ ତୁମ୍ଭେ ସତ୍ୟଭାମା
ବଡ଼ ଠାକୁରାଣୀଙ୍କର ଗ୍ରାମୁରେ ସୂଚ,
ପ୍ରଭୁଙ୍କ କଥାରେ ସହି ଏ ସୃଷ୍ଟିରେ ବଡ଼ ନାହିଁ
ଏକା ତାଙ୍କ ଗୋପୀମାନେ ସବୁରୁଁ ଉଚ,
ମେଘଯାଏ କବରୀ ଭାର
ଏହାଙ୍କ ମନର ମୋହ ବନ୍ଦୀ ମନ୍ଦର ।
କୁଚ ଉଚ ଗିରିବର ବର୍ତ୍ତୁଳ ଘଞ୍ଚ ରୁଚିର
ମନ୍ଦରଧର ବିସ୍ତାର କରକୁ ଲାଗି,
ଆରମ୍ଭ ଫଗୁଆ ଉର ସେ କାହୁଁ ଲାଗିବ କର,
ତେଣୁକରି ସଖି ଆମ୍ଭେ ତାଙ୍କୁ ଅଲଗି,
ଏବେ ତାଙ୍କ ଗ୍ରାମୁରେ ପୂଛ,
ଗୋପକନ୍ୟାମାନେ ଯେବେ ତାଙ୍କ ସାରିଛି ।" (୭/୨-୩)

ଜାମ୍ବବତୀଙ୍କର ଏପ୍ରକାର ଆକ୍ଷେପୋକ୍ତି ଶ୍ରୀକୃଷ୍ଣ ଶୁଣି ତାର ଉତ୍ତର ଦେଇଛନ୍ତି । ରସିକ କବି ଶ୍ରୀକୃଷ୍ଣଙ୍କ ମୁଖରେ ଏହି ଆକ୍ଷେପୋକ୍ତିର ଉତ୍ତର ମନୋରମ ଭଙ୍ଗୀରେ ପ୍ରକାଶ କରିଛନ୍ତି । ମନ୍ଦରଗିରିକୁ ଶ୍ରୀକୃଷ୍ଣ ନିଜ ହସ୍ତରେ କପରି ଧାରଣ କରିଥିଲେ ତାହା ଏଠାରେ ବର୍ଣ୍ଣିତ । ଇନ୍ଦ୍ରଙ୍କର ବଜ୍ରକୁ ମନ୍ଦର ପର୍ବତ ଭୟକଲା । ତେଣୁ ଶ୍ରୀକୃଷ୍ଣ ନିଜ କରକୁ ବିସ୍ତାର କରି ମୁଠାଭିତରେ ମନ୍ଦର ପର୍ବତକୁ ଧରି

ରଖିଲେ । ମନ୍ଦର ପର୍ବତ ସହିତ ତୁଳନା କରି ଜାମ୍ବବତୀ ଗୋପୀମାନଙ୍କର କୁଚର ବର୍ଣ୍ଣନା କରିଥିବାରୁ ତାର ଉତ୍ତରରେ ଶ୍ରୀକୃଷ୍ଣ କହିଲେ;

"ଦ୍ୱାଦଶ ଯୋଜନ ଯେବଣ ଗିରି,
ଏହି ହସ୍ତ ପଦ୍ମ ମଧ୍ୟ ନପୂରି,
ସେ ହସ୍ତ ଗୋପୀଙ୍କ ଉଚ୍ଚ କୁଚରେ,
ଅର୍ଦ୍ଧମାତ୍ରକୁ 'ଗୋ' ନ ଅଣ୍ଟି ଯାଇ ବସ୍ତ୍ରାରେ ସେ ।
ଗୋପୀଙ୍କ ଯୌବନ ଅଟେ ଯେମନ୍ତ,
ରାଧିକା ଯୌବନ ଏଥୁଁ ଯେମନ୍ତ,
ଗିରିବର ସ୍ଥିର କେତେ ମାତର,
କୋଟି ବ୍ରହ୍ମାଣ୍ଡେ 'ଗୋ' କେବଳ୍ହୁଁ ତଥିସ୍ଥିତର ସେ ।
ଶତେ ଯୋଜନ ଉଚ୍ଚ ଯହୁବନ,
ବସ୍ତ୍ରାରହିଁ ଗୋ ଶତେ ଶତେ ଯୋଜନ,
ମର୍କତଲିଙ୍ଗ ହେମଗିରି ସ୍ଥିତି,
ଲିଙ୍ଗ ଉପ୍ପର୍ଣ୍ଣ 'ଗୋ' କ୍ଷଂଶକୋଶ ପ୍ରତି ସେ ।" (୮/୯-୧୧) ।

ଶ୍ରୀରାଧା ଓ ଗୋପୀମାନେ ନିଜ ଅଙ୍ଗରୁ ମାୟାକୁମାରୀ ଜାତକରି ସେମାନଙ୍କୁ ଦୂତୀଙ୍କ ରୂପେ ଦ୍ୱାରକାକୁ ପଠାଇ ଶ୍ରୀକୃଷ୍ଣଙ୍କୁ ଗୋପୀମାନଙ୍କର ବିରହ ଅବସ୍ଥା ଓ ଗୋପପୁରର ଶୋଚନୀୟ ଅବସ୍ଥା ବିଷୟରେ ଅବହିତ କରାଇବା ପାଇଁ କବି ଯେଉଁ କାଳ୍ପନିକତାର ଆଶ୍ରୟ ନେଇ ବର୍ଣ୍ଣନା କରିଛନ୍ତି ତାହା ତାଙ୍କର କଳ୍ପନାପ୍ରବଣତାର ଯଥାର୍ଥ ପରିଚୟ । କବିଙ୍କର ସଙ୍ଗୀତ ଓ ନୃତ୍ୟ ବିଷୟରେ ଜ୍ଞାନ ଥିବାର ଏଥିରୁ ସୂଚିତ ।

ରହସ୍ୟମଞ୍ଜରୀର ଦ୍ୱାଦଶଛାନ୍ଦରେ କବି ପ୍ରକୃତିର ମନୋରମ ବର୍ଣ୍ଣନା କରିଛନ୍ତି । ବୈଶାଖ ମାସଠାରୁ ଆରମ୍ଭକରି ଚୈତ୍ରମାସର ଶେଷ ପର୍ଯ୍ୟନ୍ତ ଗୋଟିଏ ବର୍ଷର ଋତୁସମୂହ କବିଙ୍କ ଗ୍ରନ୍ଥରେ ବର୍ଣ୍ଣିତ । ଏହି ପ୍ରକୃତି ବର୍ଣ୍ଣନା ନାୟକ ନାୟିକାଙ୍କର ବିରହ ଅବସ୍ଥାର ସ୍ପଷ୍ଟରୂପ ପ୍ରକାଶ କରିବା ପାଇଁ ଉଦ୍ଦିଷ୍ଟ । ପ୍ରକୃତିର ସମାରୋହରେ ନାୟକ ନାୟିକାଙ୍କର ମନୋଗତ ଭାବନା ଓ ଚାଲିଚଳନ ବର୍ଣ୍ଣିତ ହୋଇଅଛି । ବର୍ଷାଋତୁର ବର୍ଣ୍ଣନା କବିଙ୍କ କଳ୍ପନାରେ କିପରି ହୃଦୟସ୍ପର୍ଶୀ ହୋଇ-ଅଛି ତାହା ଏଠାରେ ପରୀକ୍ଷା କରାଯାଇପାରେ ।

"ବୃଷଭ ସଙ୍କ୍ରାନ୍ତେ ସଖି ଆଷାଢ଼ର ଅନ୍ତେ,
ଶ୍ରାବଣ ପ୍ରବେଶ ଗୋ ଜଳରିତୁ ହୋନ୍ତେ,

ଗାଜିଲେ ଗଗନେ ମେଘ ସାଜିଲେ ବରଷା,
ନିଜାନ୍ତି ନିବିଡ଼ ଘୋର ଅନ୍ଧକାର ନିଶା ।
ଘଡ଼ଘଡ଼ି ଉପରେ ପଡ଼ଇ ଚଡ଼ଚଡ଼ି,
ଚଡ଼ଚଡ଼ି ଉପରେ ନିର୍ଘାତ ପଡ଼େ ମାଡ଼ି,
ବିଜୁଳି ଝଲକେ ଗୋ ଚମକି ଉଠେ ହିଆ,
କେସନେ ବଞ୍ଚିବି ମୋର କୋଳେ ନାହିଁ ନାହା ।
ଜମଳନି ଶଙ୍ଘସିଲେ, ଅବନୀ ଉଲ୍ଲସି,
ମାତିଲେ ମଣ୍ଡୂକେ ଯେ ଡାହୁକ ଡାକେ ମିଶି,
ନଦୀଯୋଡ଼ ଭରିଲେ, ଜଡ଼ିଲେ ସୁନାଗଣ,
ସୁଦେଶ ସୁବତୀ କାନ୍ତ ପଥ ଅନୁସର ।
ପ୍ରବାସୀ ପୁରୁଷମାନେ ସବକାର୍ଯ୍ୟ ଛାଡ଼ି,
ଘରକୁ ଅଇଲେ ପ୍ରିୟା ଗୁଣ ମନେପଡ଼ି,
ଏକମାତ୍ର ମୋର କାନ୍ତ ନଇଲେ ମୋ ପାଶ,
ନିଶ୍ଚେ ଜାଣିଲି ମୋର ତେଜିଲେ ମୁହଁ ଆଶ ।" (୧୨/୪-୭) ।

ବସନ୍ତ ଋତୁରେ ଶ୍ରୀରାଧା ବନଭିତରେ ବାଉଳୀନୀ ପ୍ରାୟ ବୁଲି ବୁଲି ଶ୍ରୀକୃଷ୍ଣଙ୍କୁ ଅନ୍ୱେଷଣ କରିଛନ୍ତି । ସେହି ପ୍ରସଙ୍ଗରେ କବି ଗନ୍ଧପୁଷ୍କରିଣୀ ତୀରର ଶୋଭା ବର୍ଣ୍ଣନା କରିଅଛନ୍ତି । ଏହି ବର୍ଣ୍ଣନା କାବ୍ୟିକ ଦୃଷ୍ଟିରେ ଅତ୍ୟନ୍ତ ମନୋରମ ହୋଇଅଛି । ଶ୍ରୀକୃଷ୍ଣ ଗୋପପୁରକୁ ଯାଇ କଦମ୍ବ ମୂଳରେ ରାସକ୍ରୀଡ଼ା ରଚନା କରିବା ପାଇଁ ସଜ୍ଜିତ ହୋଇଛନ୍ତି । ତାଙ୍କର ଶୋଭା ବର୍ଣ୍ଣନା କବିଙ୍କ କଳ୍ପନାରେ ଅତୀବ ହୃଦୟସ୍ପର୍ଶୀ ହୋଇଅଛି । ସେହି ବର୍ଣ୍ଣନାର ଅଂଶବିଶେଷ ଏଠାରେ ଉଦ୍ଧାର କରାଯାଇପାରେ ।

"ନିରୂପମ ନାସାପୁଟ,    ସିନ୍ଧୁ ଫଳ ଝଟଝଟ
ସୁରଙ୍ଗ ଅଧର ତଟ,    ପରେ ବିରାଜେ,
ଲୋଚନ ଅନଙ୍ଗ ଧନୁ,    ତରଙ୍ଗେ ତରଳେ ତନୁ,
ଅଳକାବଳି ଯେସନ    ଭୃଙ୍ଗ ପଙ୍କଜେ ।
କପାଳେ ଚନ୍ଦନ ବିନ୍ଦୁ    ନିନ୍ଦିତ ଶରଦଇନ୍ଦୁ,
ସକୋରେ କୁମୁଦବନ୍ଧୁ    ବଳିତ ଭାଏ,
ମଉଳି-ମଣ୍ଡିତ-ଚୂଳ,    ମାଳତୀ ବେଢ଼ି ଉତ୍କୁଳ
ଶିଖୀ ଶିଖଣ୍ଡ ଚଞ୍ଚଳ    ମଳୟବାଏ ।" (୧୪/୧୫-୧୬) ।

ଗରୁଡ଼ ପୃଷ୍ଠରେ ଦ୍ୱାରକାନାରୀମାନେ ଅବସ୍ଥାନ କଲେ କଦମ୍ବମୂଳରେ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କର ରାସକ୍ରୀଡ଼ା ଦେଖିବା ପାଇଁ । ଗରୁଡ଼ଙ୍କର ପକ୍ଷ ମଧ୍ୟରେ ଥିବା ଫାଙ୍କ ବାଟଦେଇ ସେମାନେ ରାସକ୍ରୀଡ଼ା ଅବଲୋକନ କଲେ । ଶ୍ରୀକୃଷ୍ଣ ଯେତେବେଳେ ଶ୍ରୀରାଧାଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରି ତାଙ୍କ ମୁଖରେ ଚୁମ୍ବନଦାନ କଲେ ସେତେବେଳେ ଗରୁଡ଼ ପଛକୁ ମୁଖକରି ଦ୍ୱାରକାନାରୀମାନଙ୍କର ଦୃଷ୍ଟିପଥକୁ ଉହ୍ଲାଡ଼ କରିଦେଲା । କବିଙ୍କର ଔଚିତ୍ୟଜ୍ଞାନ ଏହି ବର୍ଣ୍ଣନରେ ପ୍ରକାଶିତ ।

"ଶୁଣି ସୁନ୍ଦରୀ ହୃଦୟ ଉଲ୍ଲସିତ
ଯୌବନୁଁ ବସନ ଖସିଲା,
ମୁଖେ ମୁଖ ଚୁମ୍ବି ଭୁଜେ ଭିଡ଼ି ବାଳୀ
ଲମ୍ବି ପଡ଼ି ତଳେ ବସିଲା,
ଗରୁଡ଼
ଦେଖି ମୁଖକଲା ପିଠିକି,
ପୃଷ୍ଠରେ କୃଷ୍ଣ ରାଣୀ ସ୍ତନ୍ଧହୁଁ ଥିଲେ
ପକ୍ଷୀ ଉହ୍ଲାଡ଼ିଲା ଦୃଷ୍ଟିକି ।"

(୧୫/୧୭)

କାବ୍ୟର ପ୍ରସଙ୍ଗ ଅନୁସାରେ ନାୟକ ନାୟିକାଙ୍କର ସମ୍ଭୋଗ ବର୍ଣ୍ଣନା ରୀତି ଯୁଗର କାବ୍ୟରେ ଅତ୍ୟନ୍ତ ଦୀର୍ଘ ହୋଇଥିବାର ଦେଖାଯାଏ । ମାତ୍ର ଷୋଡ଼ଶ ଶତାବ୍ଦୀରେ ରଚିତ ଏହି କାବ୍ୟର ପ୍ରସଙ୍ଗ କ୍ରମରେ ରାସକ୍ରୀଡ଼ାର ବର୍ଣ୍ଣନାରେ ସମ୍ଭୋଗ ଶୃଙ୍ଗାର ସୂଚିତ ।

"ରାଧାକୃଷ୍ଣ ପ୍ରୀତି ସୁରତି ପ୍ରବନ୍ଧ
ଚୁମ୍ବନ, ଆଲିଙ୍ଗନ ଖେଳା,
କାମ ସମୁଦ୍ରେ ବେନିଜଣ ବୁଡ଼ିଲେ
ଲୁଷିଣ ଗଲା ଗ୍ୟାନ-ଭେଳା,
ସୁଜନେ,
ଚେତନାବଳେ ପହଁରିଲେ,
ଜଳ ପ୍ରବଳେ ଉରୁଣ ନପାରନ୍ତି
ଯୋଗେ ଭେଳାପାଇ ତରିଲେ ।"

(୧୫/୧୭)

କାବ୍ୟର ରୀତି ଅନୁସାରେ ନାୟକ ନାୟିକାଙ୍କର ଉପବନ ବିହାର ବର୍ଣ୍ଣିତ ହୋଇଥାଏ । ରହସ୍ୟମଞ୍ଜରୀରେ ରାସକ୍ରୀଡ଼ା ପରେ ଗୋପୀମାନେ ଉପବନରେ

ଋୂଲ ପୁଷ୍ପ ଚୟନ କରିବା ବର୍ଣ୍ଣିତ । ପୁଷ୍ପଚୟନ ପୂର୍ବରୁ ସପ୍ତଦଶ ଛାନ୍ଦରେ ଉପବନର ଶୋଭା ବର୍ଣ୍ଣିତ ।

"କାଳିନ୍ଦୀ ଜଳ ଶୀତଳ ସୁଗନ୍ଧ,
ଘେନି ପବନ ବହେ ମନ୍ଦ ମନ୍ଦ ।
ତରୁଣ ତମାଳ ଦଳ ତରଳେ,
କସ୍ତୁରୀ ଗନ୍ଧ କି ମର୍କତ ଦଳେ ।
ସହେ ଗୋ, ସର୍ବ ପୁଷ୍ପଙ୍କ ବାସ,
ବନ ଉଛୁଳି ବହେ ଦଶଦଶ ।
ପୁଷ୍ପ-ତରୁବର-ପଲ୍ଲବ ଖସେ,
କି ଏ ସ୍ଥଳେର ଅବର ବରଷେ ।
ପଞ୍ଚ ବର୍ଣ୍ଣେର ସଞ୍ଚ ବୃକ୍ଷ ସାଜେ,
ଲତା ଲଙ୍ଗିତ କାନ୍ତ କାନ୍ତା ବଜେ ।
ସହେ ଗୋ, ଧନ୍ୟ ଧନ୍ୟ ଏବନ,
ତହୁଁ ଶୃଙ୍ଗାର ଯାଏ ଅଛୁ ସ୍ଥାନ ।"
(୧୭/୧୦-୧୧)

ଅଷ୍ଟବିଂଶ ଛାନ୍ଦରେ ଗୋପୀମାନଙ୍କର ପୁଷ୍ପ ଚୟନ ଓ ଶ୍ରୀରାଧା, ଶ୍ରୀକୃଷ୍ଣଙ୍କୁ ପୁଷ୍ପ ମଣ୍ଡନ କରିବା ବର୍ଣ୍ଣିତ । ଏହି ବର୍ଣ୍ଣନାରେ କବିଙ୍କର ସୌନ୍ଦର୍ଯ୍ୟପ୍ରେମୀ ଦୃଷ୍ଟି-କୋଣ ବିଶେଷ ଭାବରେ ପ୍ରକାଶ ପାଇଅଛି ।

ବୃନ୍ଦାବଣୀଙ୍କର ମାନଭଞ୍ଜନ କରିବା ପାଇଁ ଶ୍ରୀକୃଷ୍ଣ ତାଙ୍କୁ ଶ୍ରୀରାଧାଙ୍କର ସ୍ୱରୂପ ବିଷୟରେ ଅବହିତ କରାଇବା ପାଇଁ ନିଜର ଓ ବୃନ୍ଦାବଣୀଙ୍କର ଯଥାର୍ଥ ପରିଚୟ ଜ୍ଞାପନ କରି ଅଛନ୍ତି । ଏହି ପରିଚୟବାଣୀ ଅତ୍ୟନ୍ତ ସଂକ୍ଷିପ୍ତ ଓ ଭାବଦ୍ୟୋତକ । କବିଙ୍କ ଭାଷାରେ,

"ତୁମ୍ଭ ଆମ୍ଭ ରାଧା ତିନି ଭିନ୍ନା ଭିନ୍ନ ନାହିଁ ଗୋ
ରତି ପ୍ରୀତି ଶ୍ରୁତି ଏକା ଦେହ ।
ତୁମ୍ଭେ ରତି ରାଧା ପ୍ରୀତି ଆମ୍ଭେ ଶ୍ରୁତିଜାଣ ଗୋ
ଏଣେ କାହିଁ ଅଛଇ ସନ୍ଦେହ । କି ସଖି ଗୋ ।
ତିନିସୁଖ ଆତ୍ମାକୁ ପ୍ରବେଶ,
ଶ୍ରୁତିରୁ ଜନମ ପ୍ରୀତି ପୀରତିରୁ ରତିଗୋ
ରତିଠାରେ ଠୁଳ ସର୍ବରସ ।" (୨୮।୯)

ଅଷ୍ଟପାଟବଂଶୀଙ୍କୁ ସଙ୍ଗରେ ନେଇ ଶ୍ରୀକୃଷ୍ଣ ନିତ୍ୟ ରାସସ୍ଥଳୀଁକୁ ଯାତ୍ରା କରିବାର ବର୍ଣ୍ଣନା ଓ ନିତ୍ୟରାସ ସ୍ଥଳୀର ବର୍ଣ୍ଣନା କବିଙ୍କର ଉଚ୍ଚ କଳ୍ପନାପ୍ରବଣତାର ପରିଚାୟକ । ଏହି ବର୍ଣ୍ଣନା ପାଇଁ କବି ବିଭିନ୍ନ ସୂତ୍ରରୁ ତଥ୍ୟ ଆହରଣ କରିଥିଲେ ହେଁ ନିଜର କଳ୍ପନା ବଳରେ ଓ ବର୍ଣ୍ଣନା ଚାତୁରୀ ବଳରେ ଏହାକୁ ଅତ୍ୟନ୍ତ ହୃଦୟଗ୍ରାହୀ କରି ପାରିଛନ୍ତି । ରହସ୍ୟମଞ୍ଜରୀରେ ଚତୁର୍ବିଂଶ ଗ୍ରନ୍ଥରେ କବି କାବ୍ୟର ପରିସମାପ୍ତି କରି ଅଛନ୍ତି । ସେହି ଗ୍ରନ୍ଥରେ ପ୍ରସଙ୍ଗ କ୍ରମରେ କବି ସନ୍ଥଜନଙ୍କର ବୈଶିଷ୍ଟ୍ୟ ପ୍ରକାଶ କରିଅଛନ୍ତି ।

କବି ସନ୍ଥଜନମାନଙ୍କୁ କୁଲା ସହିତ ତୁଳନା କରି ଅସନ୍ଥଙ୍କୁ ଚାଲୁଣି ସହିତ ତୁଳନା କରିଛନ୍ତି । କୁଲାରେ କୌଣସି ଦ୍ରବ୍ୟ ପାଛୁଡ଼ିବାକୁ ହେଲେ କୁଲା ଅସାର ବସ୍ତୁକୁ ତଳକୁ ଭିଙ୍ଗି ଦେଇ ସାର ବସ୍ତୁକୁ ତାର ଗର୍ଭରେ ରଖେ । ସେହିପରି ସନ୍ଥ ଜନମାନେ ସଂସାରର ସାରବସ୍ତୁକୁ ନିଜ ମଧ୍ୟରେ ରଖି ଅସାର ବସ୍ତୁକୁ ତ୍ୟାଗ କରନ୍ତି । ଚାଲୁଣିରେ କୌଣସି ଦ୍ରବ୍ୟକୁ ଚଳାଇଲେ ସାରବସ୍ତୁ ତଳକୁ ଖସିପଡ଼େ ଓ ଚାଲୁଣି ଗର୍ଭରେ ଅସାର ବସ୍ତୁ ରହିଯାଏ । ସେହିପରି ଅସନ୍ଥଜନ ସାରବସ୍ତୁକୁ ତ୍ୟାଗ କରି ଅସାର ବସ୍ତୁକୁ ନିଜ ମଧ୍ୟରେ ରଖେ ।

ସନ୍ଥଜନ ଅନ୍ୟର ଗୁଣକୁ ଦେଖେ, ମାତ୍ର ଅସନ୍ଥ ଜନ ଅନ୍ୟର ଗୁଣକୁ ଛାଡ଼ି ଦୋଷକୁ ଦେଖେ । କୋଟିଏ ଲୋକ ମଧ୍ୟରେ ଜଣେ ଉତ୍ତମଲୋକ ମିଳନ୍ତି, କୋଟିଏ ଉତ୍ତମ ଲୋକ ମଧ୍ୟରେ ଜଣେ ସାଧୁ ମିଳନ୍ତି, କୋଟିଏ ସାଧୁଙ୍କ ମଧ୍ୟରେ ଜଣେ ବୈଷ୍ଣବ ମିଳନ୍ତି, ଏବଂ କୋଟିଏ ବୈଷ୍ଣବଙ୍କ ମଧ୍ୟରେ ଜଣେ ସନ୍ଥ ମିଳନ୍ତି । କବିଙ୍କ ଦୃଷ୍ଟିରେ ସନ୍ଥ ଚରିତର ମହନୀୟତା ଉତ୍ତମରୂପେ ପ୍ରକାଶିତ ।

ପୁଣି, କୋଟିଏ ସନ୍ଥଙ୍କ ମଧ୍ୟରେ ଜଣେ ମହନ୍ତ, କୋଟିଏ ମହନ୍ତଙ୍କ ମଧ୍ୟରେ ଜଣେ ମହାତ୍ମା ମିଳନ୍ତି । ଯେ ମହାତ୍ମା ସେ ନିଜେ ଜଗନ୍ନାଥ ସ୍ୱାମୀ । ତାଙ୍କଠାରେ ସମସ୍ତ ଆତ୍ମାଠୁଳ ଓ ସେ ଆତ୍ମା-ଅନ୍ତର୍ଯାମୀ । ସନ୍ଥଙ୍କର ପ୍ରକୃତ ବିଷୟରେ କବି ଲେଖିଛନ୍ତି,

"ଏତେକ ପ୍ରକାରେ ସନ୍ଥ ମହାତ୍ମା ମହିମା
ସନ୍ଥ ହୋଇ ନ ଲଙ୍ଘଇ ଅହଙ୍କାର ସୀମା ।
ପରଦୁଃଖେ ଦୁଃଖୀ ସନ୍ଥ ପରସୁଖେ ସୁଖୀ,
ପରମ କାରଣେ ସନ୍ଥ ନୋହେ ମନଦୁଃଖୀ ।
ହାନି ଲଭ ବସ୍ତୁର ସବୁତେ ଗରୁ ଖରି,
କାହାରି ଠାବରେ ସନ୍ଥ ନୋହେ ଅବେକ୍ଷସ୍ଥ ।

ସର୍ବ ସୁଖ ମିଳଇ ପ୍ରାପତ ସନ୍ଥ ସଙ୍ଗ,
ସକଳ କଳଙ୍କ ଜନ୍ମା ଅସାଧୁ ପ୍ରସଙ୍ଗ ।"

(୨୪।୩୫-୩୬) ।

ରହସ୍ୟମଞ୍ଜରୀର କଳେବର ମଧ୍ୟରେ କବିଙ୍କର ଭାବ ପ୍ରକାଶ ନିମନ୍ତେ ଉପଯୁକ୍ତ ଭାବରେ ଭାଷାର ଅନାଡ଼ମ୍ବର ସରଳ ପ୍ରକାଶ ଘଟିଅଛି । କବିଙ୍କର ଚିନ୍ତାଧାରାର ସ୍ୱଚ୍ଛତା ଉତ୍ତମ ଭାବରେ ପରିଲକ୍ଷିତ । କବିଙ୍କର ବୈଷ୍ଣବୀୟ ଦୈନ୍ୟ କାବ୍ୟର କଳେବର ମଧ୍ୟରେ ପ୍ରସଙ୍ଗ କ୍ରମରେ ଉତ୍ତମ ଭାବରେ ପ୍ରକାଶ ପାଇଅଛି । କାବ୍ୟର ଶେଷାଂଶରେ କବି ଶ୍ରୀଜଗନ୍ନାଥଙ୍କର ଶରଣାପନ୍ନ ହୋଇ ପ୍ରାର୍ଥନା କରିଛନ୍ତି,

"ତୁମ୍ଭବିନୁ ଜଗନ୍ନାଥେ କେହି ମୋର ନାହିଁ,
ଗଣ୍ଡି ମାରୁ ଅଛି କେତେ ଦୋଷ ମୋ ଗୋସାଇଁ ।
କେଶ ଧରି ରଖ ନେଇ ଶ୍ରୀଚରଣ ତଳେ ।
ଅନାଥ ଦେବିର ଫେଡ଼ ଦୁଃସହ ଆକୁଳେ ।"

(୨୪/୪୫)

କବିଙ୍କର ବୈଷ୍ଣବପ୍ରାଣତା ଓ ବିନମ୍ରଭାବ ସମସ୍ତଙ୍କର ଶିକ୍ଷଣୀୟ । କବିଙ୍କର ଆଦର୍ଶ ସାଧାରଣ ମାନବର ଜୀବନାଦର୍ଶ ହେବା ବିଧେୟ ।

## ଗୋପୀଭକ୍ତି :—

ରହସ୍ୟମଞ୍ଜରୀରେ କବି ଦେବଦୁର୍ଲ୍ଲଭ ଦାସ ଗୋପୀଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିବା ନିମନ୍ତେ କଥାବସ୍ତୁର ପରିକଳ୍ପନା କରି ଅଛନ୍ତି । ଶ୍ରୀକୃଷ୍ଣ ଦ୍ୱାରକାପୁରରେ ଅଷ୍ଟପାଟବଂଶୀଙ୍କ ଗହଣରେ ସର୍ବ ସୁଖରେ ରହି ମଧ୍ୟ ତାଙ୍କ ମନରେ କୌଣସି ସୁଖ ନ ଥିଲା । ସେ ପ୍ରତ୍ୟେକ ବିଷୟରେ ଅନାସକ୍ତ ରହି ଦିନକୁ ଦିନ କ୍ଷୀଣ ତନୁ ହେଲେ । ଦ୍ୱାରକାର ନାରୀମାନେ ଶ୍ରୀକୃଷ୍ଣଙ୍କୁ ଏହାର କାରଣ ଜିଜ୍ଞାସା କରିବାକୁ ସାହସ କଲେ ନାହିଁ । ଅଷ୍ଟପାଟବଂଶୀଙ୍କ ମଧ୍ୟରେ ଶ୍ରେଷ୍ଠା ରୁକ୍ମିଣୀ ସାହସ ସଞ୍ଚୟ କରି ଶ୍ରୀକୃଷ୍ଣଙ୍କୁ ଏ ବିଷୟରେ ପ୍ରଶ୍ନ କଲେ । ଶ୍ରୀକୃଷ୍ଣ ତାଙ୍କର ପ୍ରଶ୍ନର ଉତ୍ତରରେ ଶ୍ରୀରାଧା ଓ ଗୋପୀମାନଙ୍କ ବିରହରେ ସେ ବ୍ୟଥିତ ବୋଲି ଉତ୍ତର ଦେଲେ । ଏହି ପ୍ରସଙ୍ଗରେ କବି ଶ୍ରୀକୃଷ୍ଣଙ୍କ ମୁଖରେ ଗୋପୀ ଓ ଗୋପୀମାନଙ୍କର ପ୍ରେମର ଶ୍ରେଷ୍ଠତା ପ୍ରକାଶ କରିଛନ୍ତି ।

ଗୋପୀଭକ୍ତି ବିଷୟ ଏପରି ମହିମାମଣ୍ଡିତ ଯେ ତାହାର ଶ୍ରବଣରେ ସିଂହ ଶୃଗାଳରେ ପରିଣତ ହୁଏ ଓ ଶୃଗାଳ ସିଂହରେ ପରିଣତ ହୁଏ । ଏହାର ମହିମା

କେବଳ ପ୍ରେମଭକ୍ତ ମାର୍ଗର ପଥିକମାନେ ଜାଣନ୍ତି । ଅନ୍ୟ କାହା ପକ୍ଷରେ ଏହା ଜାଣିବା ସମ୍ଭବ ନୁହେଁ । ଆଦିପୁରାଣର ବାଣୀ ମଧ୍ୟରେ ଗୋପୀପ୍ରେମ ମାହାତ୍ମ୍ୟ ଶ୍ରେଷ୍ଠ । ବ୍ରହ୍ମା, ରୁଦ୍ର, ଇନ୍ଦ୍ର, ଯତି କେହି ଶ୍ରୀକୃଷ୍ଣଙ୍କର ପ୍ରୀତିର ସ୍ୱରୂପ ଜାଣନ୍ତି ନାହିଁ । ଏପରିକି ସ୍ୱୟଂ ଲକ୍ଷ୍ମୀ ମଧ୍ୟ ଜାଣନ୍ତି ନାହିଁ । ବୈକୁଣ୍ଠପୁର ବା ସ୍ୱର୍ଗପୁରରେ ଶ୍ରୀକୃଷ୍ଣ ସନ୍ତୁଷ୍ଟ ହୋଇ ରହିପାରନ୍ତି ନାହିଁ । ତେଣୁ ଶ୍ରୀକୃଷ୍ଣ କହିଛନ୍ତି,

"ଗୋପୀ ବିହାରସ୍ଥଳୀ ଯେଉଁ ସ୍ଥାନ,
କୋଟି ବୈକୁଣ୍ଠ ନୁହଇ ସମାନ ।
ସେହି ସ୍ଥାନ ସୁମରି ମୋର ମନ,
ନିରନ୍ତର ହେଉଥାଇ ଉଛନ୍ନ ।" (୫/୨୫-୨୭) ।

ଗୋପୀମାନଙ୍କର ବିହାରସ୍ଥଳୀ ଶ୍ରୀକୃଷ୍ଣଙ୍କ ପକ୍ଷରେ ଅତ୍ୟନ୍ତ ପ୍ରିୟସ୍ଥାନ । ତେଣୁ ଶ୍ରୀକୃଷ୍ଣଙ୍କର ଜୀବନରେ ଗୋପୀମାନଙ୍କର ଭୂମିକା ଯେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏକଥା ନିଃସନ୍ଦେହରେ ଗ୍ରହଣ କରି ନିଆଯାଇପାରେ । ଗୋପୀମାନଙ୍କର ମହତ୍ତ୍ୱ ପ୍ରତିଷ୍ଠା କରିବାକୁ ଯାଇ ଶ୍ରୀକୃଷ୍ଣ କହିଛନ୍ତି,

"ଗୋପୀବୃନ୍ଦ ଜୀବନ ଏତେ ସାର,
ଫେଡ଼ି କହିଲୁ ଶୁଣ ସର୍ବନାଶ ।
ଯମ, ନିୟମ, ଆସନ, ପ୍ରାଣାମ,
ପ୍ରତ୍ୟାହାର, ଧ୍ୟାନକ, ଧାରଣ ।
ଏହୁ ସମାଧି ଆଦି ଅଷ୍ଟଯୋଗ,
ଯିଙ୍କ ଯୋଗୀମାନଙ୍କ ଆତ୍ମାଭୋଗ ।
ଯୋଗସାଧି କୋଟିକଲ୍ପ ଜୀଅନ୍ତି
ଗୋପୀଗ୍ରହକୁ ଏସରି ନୁହନ୍ତି ।
ଗୋପୀବୃନ୍ଦ କେ ଜାଣେ ମୋର ମନ
ସେହା ଧର୍ମ ଆସ୍ତିର କୁଳକର୍ମ ।" (୫/୨୭-୩୨) ।

କବି ଏଠାରେ ଧ୍ୟାନ, ଧାରଣା ଆଦି ଯୋଗମାର୍ଗର ସାଧନାକୁ ନିକୃଷ୍ଟସ୍ଥାନ ଦେଇ ଗୋପୀଭକ୍ତିକୁ ଉତ୍କୃଷ୍ଟ ସ୍ଥାନ ଦେଇଅଛନ୍ତି ।

ଯେଉଁମାନେ ଭଗବାନଙ୍କୁ ପାଇବା ପାଇଁ ଯଜ୍ଞ, ଦାନ, ତପ ଆଦି କର୍ମକରି ତୀର୍ଥବ୍ରତ ବା ଉପବାସାଦି କରନ୍ତି ସେମାନେ ଭଗବାନଙ୍କୁ ପାଇପାରନ୍ତି ନାହିଁ । ସେମାନେ କେବଳ ଶ୍ରମ କରନ୍ତି ମାତ୍ର ଫଳଲାଭ କରିପାରନ୍ତି ନାହିଁ । ବେଦ ଶାସ୍ତ୍ରାଦିରେ ମଧ୍ୟ ତାଙ୍କର ମନ ରହେ ନାହିଁ । ଗୋପୀମାନଙ୍କର ଉଚ୍ଛିଷ୍ଟ ନାବାକ୍ୟ

ଶ୍ରୀକୃଷ୍ଣଙ୍କ ମନ ଓ ଜୀବନକୁ ଆନନ୍ଦ ଦାନ କରେ । ଗୋପୀମାନଙ୍କର ଭର୍ତ୍ସନା ବାଣୀରେ ଯେତେ ଭାବ ପୂରିରହିଛି, ତାହା ବେଦରେ ମଧ୍ୟ ବ୍ରହ୍ମା ନିରୂପଣ କରିପାରି ନାହାନ୍ତି । ତେଣୁ ଶ୍ରୀକୃଷ୍ଣ କହିଛନ୍ତି,

"ମୋର ମାୟାରେ ମୋହିତ ଜଗତ,
ଗୋପୀମାୟାରେ ମୁହିଁ ମୋହମତ ।
ଯେହ୍ନେ ଜଗତଜନଙ୍କ ବନଧ,
ମୋର ଅନୁଗ୍ରହ ବାଞ୍ଛା କରନ୍ତି ।
ଗୋପିପ୍ରେମ ଅନୁଗ୍ରହ ଆକାଂକ୍ଷା,
ମୋହମତ ମୋ କଟକ୍ଷରେ ବାଞ୍ଛା ।" (୫/୩୮-୪୦) ।

ଗୋପୀମାନଙ୍କର ଭକ୍ତିଭାବରେ ଶ୍ରୀକୃଷ୍ଣ ଏତେଦୂର ମୋହିତ ଯେ ସେ ଜଗତରେ ଅନ୍ୟ କୌଣସି ଜ୍ଞାନକୁ ବା ଭକ୍ତିକୁ ତାହାର ସମୁତୁଲ୍ୟ ବୋଲି ଜ୍ଞାନ କରିନାହାନ୍ତି । ଶ୍ରୀରାଧାଙ୍କର ପ୍ରୀତିରେ ସେ ଏତେଦୂର ମୁଗ୍ଧ ଯେ ଶ୍ରୀରାଧାଙ୍କର ମହିମା ବର୍ଣ୍ଣନାରେ ସେ ଶତମୁଖ ।

"କୋଟି ବ୍ରହ୍ମାଙ୍କୁ ଜିଣି ଯାର ବୁଦ୍ଧି,
କୋଟି ଦୁର୍ଗା ଯାହାଙ୍କୁ ସେବି ସିଦ୍ଧି ।
କୋଟି ରମ୍ଭା ଉର୍ବଶୀ ରୂପେ ଗର୍ଜ୍ଜେ,
ଯାକୁ ସେବନ୍ତି ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟେ ।
କୋଟି ବ୍ରହ୍ମାଣ୍ଡେ ଯେହ୍ନୁ ଅଧିକାରୀ
ତାର ମହିମା କେହ୍ନୁ କହିପାରି ।" (୫/୪୭-୪୯) ।

ଏହିପରି ଭାବରେ କବି ଶ୍ରୀକୃଷ୍ଣଙ୍କ ମୁଖରେ ଗୋପ, ଗୋପୀ ଓ ଶ୍ରୀରାଧାଙ୍କର ମହତ୍ତ୍ୱ ବର୍ଣ୍ଣନା କରି ତାଙ୍କର ଗୋପୀଭକ୍ତି ପ୍ରତି ମନୋଭାବ ପ୍ରକାଶ କରିଛନ୍ତି । ପୁଣି, ଶ୍ରୀକୃଷ୍ଣ କହିଛନ୍ତି, ଗୋପୀଭକ୍ତି ବିନା ଅନ୍ୟ ଭକ୍ତିରେ ସେ କେବେହେଲେ ମିଳନ୍ତି ନାହିଁ । ଅନ୍ୟ ମାର୍ଗରେ ଭଜନା କଲେ ସେ କୋଟିମୁକ୍ତି ପ୍ରଦାନ କରନ୍ତି ମାତ୍ର ଭକ୍ତି ଦେଇପାରନ୍ତି ନାହିଁ । କେବଳ ଗୋପୀଭକ୍ତି ଦ୍ୱାରା ଭକ୍ତି ମିଳିବା ସମ୍ଭବ । ଭକ୍ତମାନେ ବିଶ୍ୱାସ କରନ୍ତି ଯେ, ଭଗବାନ ମୁକ୍ତିଦାନ କରି ଭକ୍ତକୁ ଭଣ୍ଡାଇ ଦିଅନ୍ତି । ଭଗବାନ୍ ମୁକ୍ତିଦାନ ନକରି ଭକ୍ତ ପାଖରେ ଧରାଦେବା ପାଇଁ ଭକ୍ତର କାମନା ଯଥାର୍ଥ । ଶ୍ରୀକୃଷ୍ଣ ସ୍ୱରଭକ୍ତି ମଧ୍ୟରେ ଗୋପୀଭକ୍ତିର ଉତ୍କର୍ଷ ପ୍ରତିପାଦନ କରି କହିଛନ୍ତି,

ସ୍ୱରଭକ୍ତି ମଧ୍ୟେ ଗୋପୀଭକ୍ତି ଅଟେ ସାର,
ସେଭକ୍ତି ଅଟଇ କୋଠ ଗୋପୀମାନଙ୍କର ଗୋ ।

ଗୋପୀଙ୍କି ଭଜନା ଭକ୍ତି ପ୍ରେମଭକ୍ତି ପାଇ
ବିନା ପ୍ରେମଭକ୍ତିରେ ଦର୍ଶନ ମୋତେ ନାହିଁ ଗୋ ।"

(୬।୨୪-୨୫) ।

ସଂସାରରେ ମାୟାମୋହ ତ୍ୟାଗକରି ନିଜକୁ ସମ୍ପୂର୍ଣ୍ଣ ଭାବରେ ଭଗବାନଙ୍କ ନିକଟରେ ତାଙ୍କର ପ୍ରେମିକା ଭାବରେ ଗୋପୀମାନେ ସମର୍ପଣ କରିଥିଲେ । ସେମାନଙ୍କର ପ୍ରେମଭକ୍ତିକୁ ବୈଷ୍ଣବ ଶାସ୍ତ୍ରରେ ଶ୍ରେଷ୍ଠ ଭକ୍ତି ଭାବରେ ଆଖ୍ୟାୟିତ କରାଯାଇ ଅଛି । ଶ୍ରୀକୃଷ୍ଣଙ୍କୁ ପାଇବାକୁ ହେଲେ ଗୋପୀମାନଙ୍କର କୃପା ମଧ୍ୟ ଭକ୍ତଜନ ପକ୍ଷରେ ଆବଶ୍ୟକ ।

ଗୋପୀମାନଙ୍କ ସ୍ୱରୂପ ବିଷୟରେ ଓ ଗୋପୀପ୍ରେମର ମାହାତ୍ମ୍ୟ ବିଷୟରେ ଅଷ୍ଟପାଟବଂଶୀ ଶ୍ରୀକୃଷ୍ଣଙ୍କ ମୁଖରୁ ଶୁଣିବାରେ ସେମାନଙ୍କୁ ଦର୍ଶନ କରିବାକୁ ଇଚ୍ଛା ପ୍ରକାଶ କଲେ । ଶ୍ରୀକୃଷ୍ଣ ସେମାନଙ୍କୁ ଗୋପପୁରକୁ ନେଇ ସେଠାରେ ରାସକ୍ରୀଡ଼ା ଦର୍ଶନ କରାଇଲେ । ତାପରେ ସେମାନେ ନିତ୍ୟରାସସ୍ଥଳୀ ଦର୍ଶନ ପାଇଁ ଇଚ୍ଛା ପ୍ରକାଶ କରିବାରୁ ଶ୍ରୀକୃଷ୍ଣ ସେମାନଙ୍କୁ ନିତ୍ୟରାସସ୍ଥଳୀକୁ ନେଲେ । ମାତ୍ର କେବଳ ରୁକ୍ମଣୀ ନିତ୍ୟରାସସ୍ଥଳୀ ପର୍ଯ୍ୟନ୍ତ ଯାଇପାରିଲେ ଅନ୍ୟମାନେ ମନ୍ତ୍ରଦାନ ବଳରେ । ଶ୍ରୀପୁର ସେଠାରେ ରୁକ୍ମଣୀଙ୍କୁ କହିଲେ ଯେ ରୁକ୍ମଣୀଙ୍କର ମନ୍ତ୍ରସିଦ୍ଧ ହେବାର କାରଣ ହେଉଛି, ସେ ମର୍ତ୍ତ୍ୟ ଗୋପୀମାନଙ୍କର ରାସକ୍ରୀଡ଼ା ଦର୍ଶନ କରିଥିବା ହେତୁ ପୁଣ୍ୟ ଅର୍ଜନ କରିଛନ୍ତି । ସେହି ପୁଣ୍ୟ ଫଳରେ ସେ ମନ୍ତ୍ରରେ ସିଦ୍ଧିଲାଭ କରି ନିତ୍ୟ ରାସସ୍ଥଳୀକୁ ଯାଇପାରିବେ ।

ଶୁଦ୍ଧାଭକ୍ତି ବା ପ୍ରେମଭକ୍ତି ମାର୍ଗର ମହତ୍ତ୍ୱ ପ୍ରତିଷ୍ଠା କରିବାପାଇଁ କବି ଶାସ୍ତ୍ରାନୁମୋଦିତ ପନ୍ଥା ସହିତ ତାଙ୍କର କାଳ୍ପନିକତାର ସଂଯୋଜନ କରି ଯେପରି ଭାବରେ ଗୋପୀଭକ୍ତିକୁ ଶ୍ରେଷ୍ଠସ୍ଥାନ ଦେଇଛନ୍ତି ତାହା ତାଙ୍କର ଭକ୍ତିଭାବ ପ୍ରକାଶ କରେ । କବି ଶୁଦ୍ଧାଭକ୍ତିମାର୍ଗରେ ଜଣେ ପ୍ରକୃଷ୍ଟ ଭକ୍ତ ଭାବରେ ଲକ୍ଷ୍ୟ କରାଯାଇ ପାରେ ।

## ରହସ୍ୟମଞ୍ଜରୀର ଭାଷା :—

ଷୋଡ଼ଶ ଶତାବ୍ଦୀରେ ରଚିତ କାବ୍ୟ ରହସ୍ୟମଞ୍ଜରୀର ଭାଷାରେ ସାରଲ୍ୟ ପରିଲକ୍ଷିତ ହେଲେ ହେଁ ସ୍ଥଳ ବିଶେଷରେ ଭାବ ହୃଦୟଙ୍ଗମ କରିବାରେ ଭାଷାର ଦୁର୍ବୋଧତା ପ୍ରତିବନ୍ଧକ ସୃଷ୍ଟିକରେ । ଷୋଡ଼ଶ ଶତାବ୍ଦୀର ଓଡ଼ିଆ ଭାଷା ଭାବରେ

ବିଗ୍ଭର କଲେ ରହସ୍ୟମଞ୍ଜରୀର ଭାଷା ଯେ ସାଧାରଣ ପାଠକର ବୁଝିବା ଭଳି ଭାଷା ନୁହେଁ, ଏକଥା କୁହାଯାଇ ପାରିବ ନାହିଁ । ତାଙ୍କର ବର୍ଣ୍ଣନାରେ ସୌନ୍ଦର୍ଯ୍ୟ କାବ୍ୟର ମହତ୍ତ୍ୱ ବୃଦ୍ଧିରେ ସହାୟକ ହୋଇଅଛି ।

କାବ୍ୟର ଆରମ୍ଭରେ କବି ଶ୍ରୀଜଗନ୍ନାଥଙ୍କୁ ଯେପରି ଭାବରେ ବନ୍ଦନା କରିଛନ୍ତି ତାହାକୁ ସ୍ୱତନ୍ତ୍ର ଭାବରେ ଏକ ଜଗନ୍ନାଥ ଜଣାଣ ରୂପରେ ଗ୍ରହଣ କରାଯାଇପାରେ । ସେହିପରି ଚତୁର୍ଥ ଛାନ୍ଦରେ ମଧ୍ୟ ଶ୍ରୀକୃଷ୍ଣଙ୍କ ଜଣାଣ ଭାବରେ ପ୍ରାର୍ଥନା ଅଂଶଟିକୁ ଗ୍ରହଣ କରାଯାଇ ପାରେ । ଜନସାଧାରଣଙ୍କ ମନକୁ ପରମାର୍ଥୀ ତତ୍ତ୍ୱ ଦିଗକୁ ଆକୃଷ୍ଟ କରିବା ପାଇଁ ଏ ପ୍ରକାର ଜଣାଣର ପରିକଳ୍ପନା । ଏଥିରେ ସାଧାରଣ ପାଠକ ବା ଶ୍ରୋତା ବୁଝି ପାରିବା ଭଳି ଭାଷା ସଂଯୋଜିତ ହୋଇଅଛି ।

ବିଂଶ ଶତାବ୍ଦୀର ଓଡ଼ିଆ ଭାଷାର ସ୍ୱରୂପ ସହିତ ଷୋଡ଼ଶ ଶତାବ୍ଦୀର ଓଡ଼ିଆ ଭାଷାର ସ୍ୱରୂପକୁ ତୁଳନା କଲେ ଭାଷାର ସ୍ୱଚ୍ଛନ୍ଦତାରେ କିଛିଟା କଠିନତା ପରିଲକ୍ଷିତ ହେବା ସ୍ୱାଭାବିକ । ତେଣୁ ରହସ୍ୟମଞ୍ଜରୀରେ ବ୍ୟବହୃତ ହୋଇଥିବା କେତେକ ପ୍ରାଚୀନ ଶବ୍ଦ ଏହି ଦୃଷ୍ଟିରୁ ବିଚାର୍ଯ୍ୟ । ଏଥିରେ ବ୍ୟବହୃତ ହୋଇଥିବା କେତେକ ପ୍ରାଚୀନ ଶବ୍ଦ ଏଠାରେ ଉଦ୍ଧାର କରାଯାଇ ପାରେ—ସଙ୍କମଣେ, ତେହ୍ନେ, ପଣ୍ଟୁ, ଗୋପ୍ୟ, ଆନ, ତଥି, ଖୀନ, ଦମ୍ଭେଣା, ଏକଲ, ମୋହୋର, ଶକ୍ୟ, ସବୁରଙ୍କ, ସୁଜାଣ, ଅଇଲ, କେହ୍ନସି, କେବଣ, ପାଦାନ୍ତ, ଖେଡ଼, ହୋଡ଼, ଗାବନ୍ତ, ବେସନ, ଲେଉଟାଇ ଲୋଡ଼ନ୍ତେ, ହେଠମାଥ, ଜକ, ସେରନ୍ତା, ଗୁଆଳୀ, ଭର୍ତ୍ସିନ୍ତ, ଅଣିମା, କାଣିମା ପ୍ରଭୃତି ।

ଷୋଡ଼ଶ ଶତାବ୍ଦୀର ଭାଷାଭାବରେ ରହସ୍ୟମଞ୍ଜରୀରେ ବ୍ୟବହୃତ ପ୍ରାଚୀନ ଶବ୍ଦ ସମୂହ ବର୍ତ୍ତମାନକାଳରେ ବହୁ ଅଂଶରେ ଅବ୍ୟବହୃତ । ତଥାପି ଭାଷାର ସ୍ୱାଭାବିକତା ରକ୍ଷା କରିବାରେ ଏହି ଶବ୍ଦଗୁଡ଼ିକ ଯଥେଷ୍ଟ ସହାୟକ । କବି ଦେବଦୁର୍ଲଭ ଦାସଙ୍କର ଭାଷାଜ୍ଞାନ ଓ ଭାଷା ପ୍ରୟୋଗରୀତି ସବୁଦିଗରୁ ଆକର୍ଷଣୀୟ । ସେ ଯେପରି କେତେକ ସଂସ୍କୃତ ଶବ୍ଦ ବ୍ୟବହାର କରିଛନ୍ତି ସେହିପରି ବହୁ ପ୍ରାକୃତ ଶବ୍ଦ ମଧ୍ୟ ବ୍ୟବହାର କରିଛନ୍ତି । ଭାବ ପ୍ରକାଶର ସ୍ୱଚ୍ଛଳତା ପାଇଁ କାବ୍ୟରେ କେତେକ ସ୍ଥଳରେ ଦୀର୍ଘ ସମାସ ଯୁକ୍ତ ପଦ ବ୍ୟବହୃତ ହୋଇଅଛି । ଏସବୁ ଦିଗରୁ ବିଗ୍ଭର କଲେ, ରହସ୍ୟମଞ୍ଜରୀର ଭାଷା କବିଙ୍କ କୃତିତ୍ୱର ଅନ୍ୟ ଏକ ନିଦର୍ଶନ ।

## ରହସ୍ୟ ମଞ୍ଜରୀର ନାମକରଣ—

ଷୋଡ଼ଶ ଶତାବ୍ଦୀର ଏକ ମନୋଜ୍ଞ ରଚନା ଭାବରେ ରହସ୍ୟ ମଞ୍ଜରୀ ଗୃହୀତ । ଏହାର ବିଷୟବସ୍ତୁ ଅନୁସାରେ ନାମକରଣର ଯାଥାର୍ଥ୍ୟ ପ୍ରତିପାଦିତ ହୋଇଅଛି ବୋଲି କୁହାଯାଇ ପାରେ । ଏହି କାବ୍ୟରେ ଗୋପୀପ୍ରେମର ଉତ୍କର୍ଷ ପ୍ରତିପାଦନ କରିବା କବିଙ୍କର ଉଦ୍ଦେଶ୍ୟ । ଷୋଡ଼ଶ ଶତାବ୍ଦୀରେ ଯେତେବେଳେ ଓଡ଼ିଆ ବୈଷ୍ଣବ କବିଗଣ ପାରମାର୍ଥିକ ତତ୍ତ୍ୱକୁ କେନ୍ଦ୍ରକରି ବହୁ ଆଖ୍ୟାନ ସୃଷ୍ଟି କରି ଜନସାଧାରଣଙ୍କ ମଧ୍ୟରେ ଧର୍ମଭାବର ପ୍ରଚାର ତଥା ପ୍ରସାର ପାଇଁ ଉଦ୍ୟତ ହୋଇଥିଲେ ସେତେବେଳେ ସେହି ଧାରାରେ ରହସ୍ୟମଞ୍ଜରୀ ରଚିତ ହୋଇ ପାରି-ଥାଆନ୍ତା । ମାତ୍ର ରହସ୍ୟମଞ୍ଜରୀର ତତ୍ତ୍ୱ ବିନ୍ୟାସ ସେହି ଧାରାର ଏକ ବ୍ୟତିକ୍ରମ ଭାବରେ ପରିଲକ୍ଷିତ । ବଳରାମ ଦାସ, ଜଗନ୍ନାଥ ଦାସ ଆଦି ଉତ୍କଳୀୟ ବୈଷ୍ଣବ ପଞ୍ଚସଖା ବହୁ ପ୍ରକାର କାଳ୍ପନିକ ଆଖ୍ୟାୟିକା ଗ୍ରହଣ କରି ଧର୍ମରବାଣୀ ପ୍ରଚାର କରିଛନ୍ତି । ସେମାନେ ଶ୍ରୀକୃଷ୍ଣଙ୍କର ଲୀଳାମୃତ ପରିବେଷଣ କରିଛନ୍ତି । ମାତ୍ର ସେମାନେ ଯେତେ ପ୍ରକାର ସତର୍କତା ଅବଲମ୍ବନ କଲେହେଁ ରାଗାନୁଗା ଭକ୍ତି ମାର୍ଗକୁ ଜନସାଧାରଣଙ୍କ ନିକଟରେ ଠିକ୍ ଭାବରେ ପହଞ୍ଚାଇ ଦେବାପାଇଁ ତତ୍ପର ହୋଇ ପଡ଼ିଛନ୍ତି । ସେମାନଙ୍କର ଧୀର ମନ୍ଥର ଉଦ୍ୟମ ଯେ ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟରେ ରାଗାନୁଗା ଭକ୍ତି ମାର୍ଗର ପ୍ଳାବନ ସୃଷ୍ଟି କରିଅଛି, ଏକଥା ଆମକୁ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ । ଗୋପୀମାନଙ୍କ ବିଷୟ ଓଡ଼ିଆ ସାହିତ୍ୟକୁ ପ୍ରବେଶ କରିଛି ପଞ୍ଚସଖାଙ୍କର ଉଦ୍ୟମ ଫଳରେ ଓ ପରବର୍ତ୍ତୀ କାଳରେ ଶ୍ରୀକୃଷ୍ଣ ଗୋପୀ ଓ ରାଧାଙ୍କର ପ୍ରେମଲୀଳା ବର୍ଣ୍ଣନାରେ ଓଡ଼ିଆ ସାହିତ୍ୟ ଭରପୂର ହୋଇଯାଇଛି ।

ଶ୍ରୀ ଚୈତନ୍ୟଙ୍କର ଉତ୍କଳ ଆଗମନ ପରେ ଉତ୍କଳୀୟ ବୈଷ୍ଣବ ଧର୍ମର ମତବାଦ କ୍ରମେ ତାର ପ୍ରସାର ପଥରେ ସଙ୍କୁଚିତ ହୋଇ ପଡ଼ିଲା ଓ ଶୁଦ୍ଧାଭକ୍ତି ମାର୍ଗ ପ୍ରସାରିତ ହେବାର ସୁଯୋଗ ଲାଭ କଲା । ଉତ୍କଳର ଗଜପତିଙ୍କଠାରୁ ଆରମ୍ଭ କରି ସାଧାରଣ ପ୍ରଜା ପର୍ଯ୍ୟନ୍ତ ରାଗାନୁଗା ପଥର ପଥିକ ହେଲେ । ଉତ୍କଳୀୟ ବୈଷ୍ଣବଗଣ ରାଗାନୁଗା ମାର୍ଗକୁ ବହୁ ବିରୋଧ ସତ୍ତ୍ୱେ ଆଂଶିକ ଭାବରେ ଗ୍ରହଣ କଲେ । ମାତ୍ର ସେମାନେ ଯେତେବେଳେ ଏହାର ବିରୋଧ କରିଥିଲେ, ସେତେ-ବେଳେ ଦୁଇମତ ମଧ୍ୟରେ ସଂଘର୍ଷର ସୂତ୍ରପାତ ହୋଇଥିଲା । ଏପ୍ରକାର ସଂଘର୍ଷମୟ ପରିସ୍ଥିତି କିଛିକାଳ ଧରି ରହିଥିଲା । ଏହି ପ୍ରକାର ସଂଘର୍ଷମୟ ପରିସ୍ଥିତିରେ ଯେଉଁ ବୈଷ୍ଣବ କବିଗଣ ଦୁଇମତବାଦର ସମନ୍ୱୟ ନାମରେ ରାଗାନୁଗା ଭକ୍ତିମାର୍ଗକୁ ଓଡ଼ିଶାର ସମାଜ ଓ ସାହିତ୍ୟରେ ପ୍ରବେଶ କରାଇ ପ୍ରତିଷ୍ଠିତ କରାଇବାକୁ ଚେଷ୍ଟିତ

ହୋଇଥିଲେ, କବି ଦେବଦୁର୍ଲଭ ଦାସ ସେମାନଙ୍କ ମଧ୍ୟରେ ଅନ୍ୟତମ । କବି ତାଙ୍କ ଜୀବନକାଳରେ ରାଗାନୁଗା ଭକ୍ତି ପ୍ରତି ବିଦ୍ୱେଷଭାବ ଦେଖିଛନ୍ତି ଓ ତାର ନିରାକରଣ ପାଇଁ ରହସ୍ୟମଞ୍ଜରୀ କାବ୍ୟଗଠନର ପରିକଳ୍ପନା କରିଛନ୍ତି ।

କବିଙ୍କର ଏପ୍ରକାର ପରିକଳ୍ପନା ପାଇଁ ବହୁ କାରଣ ମଧ୍ୟରେ ଏକ କାରଣ ହେଉଛି ଚୈତନ୍ୟ-ପ୍ରବର୍ତ୍ତିତ ରାଗାନୁଗା ଭକ୍ତିରେ ପରକୀୟା ପ୍ରୀତି ପ୍ରତି ଉତ୍କଳୀୟ ମାନଙ୍କର ନ୍ୟୂନଦୃଷ୍ଟି । କବି ଅଷ୍ଟପାଟବଂଶୀଙ୍କ ମୁହଁରେ ପରକୀୟା ପ୍ରୀତି ବିରୁଦ୍ଧରେ ଯେଉଁ ସ୍ୱରଉତ୍ତୋଳନ କରିଛନ୍ତି ତାହା ଯଥାର୍ଥରେ କବିଙ୍କର ସମସାମୟିକ ସମାଜର ସ୍ୱର । ରହସ୍ୟମଞ୍ଜରୀର ସେହି ଅଂଶ ଏଠାରେ ଉଦ୍ଧାର କରାଯାଇ ପାରେ ।

"ସେ ଯେବେ ନିତ୍ୟ ବିଳାସୀ ତାଙ୍କ ଆଜ୍ଞାପାଇ ଆସି
ଜନମ ଲଭିଲେ ଗୋପନଗର ଯାଇଁ,
ତେବେ କମ୍ପା ବ୍ରଜକାନ୍ତା ନବୀନ ଜନ ବନିତା
ହୋଇଣ ଉଚ୍ଛିଷ୍ଟ ଅଙ୍ଗ ପ୍ରଭୁରେ ଦେଇ,
ଆଜ୍ଞାଦେଲେ ଶ୍ରୀମୁଖେ ଯାହା
ରାଧାଠାକୁରାଣୀ ତାଙ୍କ ଅର୍ଦ୍ଧାଙ୍ଗ ପ୍ରିୟା।
ଚନ୍ଦ୍ରଶେଖର ନାମେ ମୂର୍ଖ ଅଛି ଏକ ଗଉଡ଼େକ
ସେହୁପରି ସେ କନ୍ୟାକୁ ବିଭା ହୋଇଛି,
ଦେଖିବାର କାଳିଯାଉ ଭଣ୍ଡି ଭଳି ଜଣେ କହି
ମାତୁଳଙ୍କ ବନିତାକୁ ଭଗ୍ନୀ ଜାଣିଛି,
ମୁଖ ତାଙ୍କ ଟିକ ଦର୍ପଣ
ଏହାଙ୍କର ମୁଖ ଚାହିଁ ଦେଖେ ଚକ୍ଷୁଜଣ ।" (୭/୪-୫) ।

ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ପରକୀୟା ପ୍ରୀତି ସେକାଳରେ ଏହିପରି ଭାବରେ ସମାଲୋଚିତ ହୋଇଥିଲା । ସେତେବେଳେ ଶ୍ରୀକ୍ଷେତ୍ରରେ ବାସ କରୁଥିବା ବହୁ ସିଦ୍ଧ ସାଧକ ଉତ୍କଳୀୟ ବୈଷ୍ଣବ ଗୌଡ଼ୀୟ ବୈଷ୍ଣବ ଧର୍ମର ଏହି ପ୍ରକାର ମତବାଦ ସହିତ ଏକମତ ହୋଇ ନପାରି ଶ୍ରୀକ୍ଷେତ୍ର ତ୍ୟାଗକରି ଉତ୍କଳର ପୁରପଲ୍ଲୀକୁ ପଳାଇ ଯାଇଥିଲେ । ଗୌଡ଼ୀୟ ବୈଷ୍ଣବ ଧର୍ମର ପରକୀୟା ପ୍ରୀତିରେ ସେମାନେ ଦେବତ୍ୱ ଅପେକ୍ଷା ମାନବତ୍ୱ ଅଧିକ ଭାବରେ ଉପଲବ୍ଧି କରିଥିଲେ । ତେଣୁ ସେମାନେ ଉପଦେଶ ବାଣୀ ଶୁଣାଇ ଥିଲେ,—ମଣିଷକୁ ଦେବତା କର, ଦେବତାକୁ ମଣିଷ ସ୍ତରକୁ ଆଣ ନାହିଁ । ସେମାନଙ୍କର ଏହି ବାଣୀ ସେ ସମୟରେ କୌଣସି ପ୍ରକାର ମୂଲ୍ୟ ପାଇ ନ ଥିଲା । ଉତ୍କଳର ପୁରପଲ୍ଲୀରେ ମଧ୍ୟ ମାଈଁ ଶ୍ରୀରାଧା ଓ ଭଣଜା

ଶ୍ରୀକୃଷ୍ଣଙ୍କର ପ୍ରେମଲୀଳାର ବର୍ଣ୍ଣନା ବ୍ୟାପିଗଲା । ପରନାରୀ ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ସହିତ ପ୍ରେମଭାବ ମଧ୍ୟ ବହୁ ଭାବରେ ପ୍ରଶଂସିତ ତଥା ସମାଲୋଚିତ ହୋଇଥିଲା । ଦେବଦୁର୍ଲଭ ଦାସଙ୍କ ପରି ବୈଷ୍ଣବ କବିମାନେ ଚିନ୍ତା କଲେ, ଏହି ପ୍ରେମ ଚରିକୁ ମାନବିକ ସ୍ତରରୁ ଊର୍ଦ୍ଧ୍ୱକୁ ନେଇ ଦେବତ୍ୱସ୍ତରରେ ପ୍ରକାଶ କରିବାକୁ ପଡ଼ିବ । ତେଣୁ ସେ କାଳର କବି ଦେବଦୁର୍ଲଭଙ୍କର ଚିନ୍ତାରେ ବିଭିନ୍ନ ପୌରାଣିକ କଥାବସ୍ତୁକୁ ପରିବର୍ତ୍ତିତ କରି ରହସ୍ୟମଞ୍ଜରୀର କଥାବସ୍ତୁ ଗଢ଼ି ଉଠିଛି । ଶ୍ରୀକୃଷ୍ଣଙ୍କର ଶ୍ରୀରାଧାଙ୍କ ସହିତ ଓ ଗୋପୀମାନଙ୍କ ସହିତ ପ୍ରେମଭାବର ରହସ୍ୟ ଏହି ଦୃଷ୍ଟିରୁ ଏହି ଗ୍ରନ୍ଥରେ ପ୍ରକାଶ ପାଇଅଛି । ସେଥିପାଇଁ କବି କହିଛନ୍ତି,

"ରହସ୍ୟମଞ୍ଜରୀ ଏ ବିଚିତ୍ରମୟ ରସ,
ଏ ସୁଖ ଜାଣିବ ଯେତୁ ବିବେକ ପୁରୁଷ ।
ଅବିବେକ ବୋଲିବ ଏ କେଉଁ ପାଠେ ଥିଲା,
ଥିଲା ଯେବେ କବି କିମ୍ପା ଆଗହୁଁ ନକଲା ।
ବିବେକୀ ବୋଲିବ ଏ ଗୁପତେ ଥିଲା ରହି,
ସରସ୍ୱତୀ ଭଣ୍ଡାରେ ଗୁପତେ ଥିଲା ଥୋଇ ।
ଯହିଁ ପ୍ରଭୁ ବଢ଼ାଇଲା ତାହାକୁ କଲେ ଦୟେ,
ମହିମା ଅନନ୍ତ କେତେ କରିବା ନିର୍ଣ୍ଣୟେ ।"

(୨୪/୨୪-୨୫) ।

କବି ତାଙ୍କର ଉକ୍ତିରେ ପ୍ରକାଶ କରିଛନ୍ତି ଯେ, କେବଳ ବିବେକୀ ପୁରୁଷ ଏହାକୁ ଉପଲବ୍ଧି କରିପାରିବ, ମାତ୍ର ଅବିବେକୀ ଏହା ବିଷୟରେ ଆପତ୍ତି କରିବ ! କବିଙ୍କ ଦୃଷ୍ଟିରେ ରାଗାନୁଗା ଭକ୍ତି ମାର୍ଗର ବୈଷ୍ଣବ ବା ବ୍ୟକ୍ତି ବିଶେଷ ହେଉଛନ୍ତି ବିବେକୀ ଓ ରାଗାନୁଗାଭକ୍ତି ମାର୍ଗର ବିରୁଦ୍ଧାଚରଣ କରୁଥିବା ବୈଷ୍ଣବ ବା ବ୍ୟକ୍ତି ବିଶେଷ ହେଉଛନ୍ତି ଅବିବେକୀ । ବୈଷ୍ଣବ କବିମାନଙ୍କର ପରମ୍ପରାରେ ଅନ୍ୟକୁ ନିନ୍ଦା ବା ପ୍ରଶଂସା କରିବାର ରୀତି ଏହି ପ୍ରକାରର ଦୃଷ୍ଟିଗୋଚର ହୋଇଥାଏ । ତେଣୁ ରହସ୍ୟମଞ୍ଜରୀର କଥାବସ୍ତୁ ପରିକଳ୍ପନାର ଅନ୍ତରାଳରେ ଷୋଡ଼ଶ ଶତାବ୍ଦୀର ସମସ୍ୟାଗତ ପ୍ରାଣ ସ୍ପନ୍ଦନକୁ ବିସ୍ମୃତ ହେବାର ନୁହେଁ ।

କଥାବସ୍ତୁର ପରିକଳ୍ପନାରେ ଶ୍ରୀରାଧା, ଗୋପାଙ୍ଗନା ଓ ଶ୍ରୀକୃଷ୍ଣଙ୍କର ମର୍ତ୍ତ୍ୟରେ ଜନ୍ମ ଗ୍ରହଣର ବୃତ୍ତାନ୍ତ, ଗୋପୀ ପ୍ରେମର ପରାକାଷ୍ଠା, ଅଷ୍ଟପାଟବଂଶୀଙ୍କର ଚିତ୍ତରଞ୍ଜନ ଆଦି ଅତ୍ୟନ୍ତ ମନୋରମ ରୀତିରେ ସ୍ଥାନ ପାଇଅଛି । ଅଷ୍ଟପାଟବଂଶୀ ମହିଷୀମାନଙ୍କୁ ନେଇ ଶ୍ରୀକୃଷ୍ଣ ବୃନ୍ଦାବନରେ ଓ ରୁକ୍ମଣୀଙ୍କୁ ନେଇ ନିତ୍ୟ ସ୍ଥଳୀରେ

ଚାତୁର୍ଯ୍ୟ ପ୍ରଦର୍ଶନ କରାଇବା ନିଶ୍ଚିତ ଭାବରେ କବିକଳ୍ପନାରେ ଏକ ରହସ୍ୟମୟ ବୃତ୍ତାନ୍ତ । ଏହି ରହସ୍ୟମୟ ବୃତ୍ତାନ୍ତର ଯେଉଁମାନେ ନାୟକ ନାୟିକା ସେମାନଙ୍କର ନିଜ ରହସ୍ୟ ସେମାନଙ୍କ ନିକଟରେ ଉତ୍ତମ ଭାବରେ ବ୍ୟକ୍ତ । ସମଗ୍ର କାବ୍ୟର କଳେବର ମଧ୍ୟରେ ଶ୍ରୀରାଧାଙ୍କର ଶ୍ରେଷ୍ଠତ୍ୱ ଯେପରି ଭାବରେ ପ୍ରକାଶିତ ତାହାର ପଟାନ୍ତର ନାହିଁ । କବି ଚରିତ୍ର ଗୁଡ଼ିକୁ ଚିତ୍ରଣ କରିବା ସମୟରେ ଅତ୍ୟନ୍ତ ଦକ୍ଷତାର ପରିଚୟ ଦେଇଅଛନ୍ତି । ତେଣୁ ରହସ୍ୟର ଉଦ୍‌ଘାଟନ ସହଜସାଧ୍ୟ ହୋଇଅଛି ।

ଅଷ୍ଟଆଟବଂଶୀଙ୍କର ସନ୍ଦେହ ମୋଚନ ଲାଗି ଗୋଟିକ ପରେ ଗୋଟିଏ ରହସ୍ୟର ଦ୍ୱାର ଉନ୍ମୋଚିତ ହୋଇ ଯାଇଛି । କବି ରହସ୍ୟମଞ୍ଜରୀର ନାମକରଣ ବିଷୟରେ ଅତିମାତ୍ରାରେ ସତର୍କ ଥିଲେ ବୋଲି ଜଣାପଡ଼େ । ତାଙ୍କର ପରିକଳ୍ପିତ କଥାବସ୍ତୁକୁ ଆହରଣ ସତ୍ତ୍ୱେ ସେ ଅତ୍ୟନ୍ତ ଦକ୍ଷତାର ସହିତ ଉପସ୍ଥାପିତ କରିଅଛନ୍ତି । ଭଗବାନ ଶ୍ରୀକୃଷ୍ଣଙ୍କର ମାଧୁର୍ଯ୍ୟଲୀଳାର ରହସ୍ୟ ପ୍ରଖ୍ୟାପନ କରିବାରେ ସମର୍ଥ ହୋଇଛି ରହସ୍ୟମଞ୍ଜରୀ । କବି, ଭକ୍ତମାନଙ୍କ ପକ୍ଷରେ ରହସ୍ୟର ମଞ୍ଜରୀ ଦେବତାଙ୍କ ଅଙ୍ଗରେ ଲାଗି ହୋଇଥିବା ମଞ୍ଜରୀ ସଦୃଶ । କବି ଏକାଧିକ ରହସ୍ୟକୁ ଏକତ୍ର କରି ମଞ୍ଜରୀରେ ସଜ୍ଜିତ କରିଛନ୍ତି ।

ମଞ୍ଜରୀର ଅର୍ଥ ମୁକୁଳ, ପୁଣି ପୁଷ୍ପସ୍ତବକ । କବି ଯଦି ମୁକୁଳ ଅର୍ଥରେ ଏଠାରେ ମଞ୍ଜରୀ ଶବ୍ଦକୁ ଗ୍ରହଣ କରିଥାଆନ୍ତି ତେବେ ତାହା ଯଥାର୍ଥରେ କାବ୍ୟର କଳେବର ମଧ୍ୟରେ ପ୍ରସ୍ଫୁଟିତ ହୋଇଅଛି । ଯଦି ସେ ପୁଷ୍ପସ୍ତବକ ଅର୍ଥରେ ଗ୍ରହଣ କରିଥାଆନ୍ତି ବା ତୁଳସୀକଣ୍ଠା ଅର୍ଥରେ ଗ୍ରହଣ କରି ଥାଆନ୍ତି ତେବେ ତାହା ତାଙ୍କର ବୈଷ୍ଣବୀୟ ରୁଚିର ଅମଳିନ ପବିତ୍ରତାର ଦ୍ୟୋତକ । କବିଙ୍କର କବିତ୍ୱ ଗୁରୁତ୍ୱ ଯେପରି ପ୍ରଶଂସାର୍ହ, ନାମକରଣରେ ପରିକଳ୍ପନା ସେହିପରି ହୃଦ୍ୟ ।

କବିଙ୍କର ବୈଷ୍ଣବୀୟ ଭାବଧାରା କାବ୍ୟର ପ୍ରତ୍ୟେକ ଛନ୍ଦରେ ପ୍ରକାଶିତ । ଶ୍ରୀଜଗନ୍ନାଥଙ୍କୁ ବନ୍ଦନା କରି କାବ୍ୟର ଆରମ୍ଭ ଓ ଶେଷ ସେ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ କରୁଣା ପାଇ ସେ ରଚନା କରିଛନ୍ତି କାବ୍ୟ । ଶ୍ରୀଜଗନ୍ନାଥଙ୍କ କରୁଣା ବଳରେ, ବିଭିନ୍ନ ଶାସ୍ତ୍ର ଅନୁଶୀଳନରେ ଓଡ଼ିଆ ସାହିତ୍ୟ ରାଜ୍ୟରେ ଶୁଦ୍ଧା-ଭକ୍ତି କେନ୍ଦ୍ରିକ କାବ୍ୟରଚନାର ମୂଳପତ୍ତନର ପ୍ରଥମ ଶିଳାନ୍ୟାସ କରିଛନ୍ତି କବି ଦେବଦୁର୍ଲଭ ଦାସ । ରହସ୍ୟମଞ୍ଜରୀର ନାମକରଣର ସାର୍ଥକତା ସୁପ୍ରତିପାଦିତ ।

**ଓଡ଼ିଆ ସାହିତ୍ୟରେ ରହସ୍ୟମଞ୍ଜରୀର ସ୍ଥାନ :—**

ରହସ୍ୟମଞ୍ଜରୀ ରଚନାର ଅବ୍ୟବହିତ ପୂର୍ବେ ଓଡ଼ିଆ ସାହିତ୍ୟରେ ସାରଳାଦାସଙ୍କ ରଚନାବଳୀ ଅତ୍ୟନ୍ତ ଖ୍ୟାତିସମ୍ପନ୍ନ ହୋଇଥିଲା । ସାରଳା

ସାହିତ୍ୟରେ ଶକ୍ତି ଉପାସନାର ବୈଶିଷ୍ଟ୍ୟ ସୂଚିତ ହେଲେହେଁ ସବୁ ଦେବ-ଦେବୀଙ୍କର ଉପାସନା ପ୍ରତି ଉଦାରଭାବ ପୋଷଣ କରାଯାଇ ଥିବାର ଦେଖାଯାଏ । ସାରଳା ଦାସ ଶ୍ରୀକୃଷ୍ଣ, ବିଷ୍ଣୁ, ଜଗନ୍ନାଥ, ଶିବ ଆଦି ସବୁ ଦେବତାଙ୍କର ମହିମା ଗାନ କରିଅଛନ୍ତି । ମାତ୍ର ତାଙ୍କର ଚେତନାରେ ଶୁଦ୍ଧାଭକ୍ତି ମାର୍ଗର ପରକୀୟା ପ୍ରୀତି ଅତ୍ୟନ୍ତ ନୀଚସ୍ଥାନ ପାଇଥିଲା । ତେଣୁ ତାଙ୍କର ରଚନା ମଧ୍ୟରେ ପ୍ରସଙ୍ଗ କ୍ରମରେ ସେ ପରକୀୟା ପ୍ରୀତିର ନିନ୍ଦାଗାନ କରିଛନ୍ତି । ଏହାକୁ ଏକ ସାମାଜିକ ବ୍ୟାଧି ଭାବରେ ସେ ଦେଖିଛନ୍ତି । ସେ ସମୟର ସମାଜରେ ସହଜିଆ ବୈଷ୍ଣବ ମାନଙ୍କର ପ୍ରେମଚର୍ଯ୍ୟା ଦେଖି ସେ ତାହାକୁ ଏକ ଧର୍ମ ମତବାଦର ଅଂଶ ଭାବରେ ଗ୍ରହଣ କରି ପାରି ନାହାନ୍ତି । ତେଣୁ ତାହାକୁ ସେ ମୁକ୍ତ କଣ୍ଠରେ ନିନ୍ଦା କରି ଅଛନ୍ତି ।

ସାରଳା ଦାସଙ୍କର ପରବର୍ତ୍ତୀକାଳ ହେଉଛି ଓଡ଼ିଆ ସାହିତ୍ୟରେ ପଞ୍ଚସଖା ଯୁଗ । ଏହି ସମୟରେ ଶ୍ରୀଚୈତନ୍ୟଙ୍କର ଆଗମନ ଫଳରେ ଓଡ଼ିଶାରେ ଶୁଦ୍ଧାଭକ୍ତି ମାର୍ଗର ପ୍ରସାର ଘଟିଲା । ଶୁଦ୍ଧାଭକ୍ତି ମାର୍ଗର ପରକୀୟା ପ୍ରୀତିକୁ ବହୁ ସତର୍କତାର ସହିତ ଓଡ଼ିଆ ବୈଷ୍ଣବ ସାହିତ୍ୟରେ ସ୍ଥାନ ଦିଆଗଲା ।

ଓଡ଼ିଆ ସାହିତ୍ୟରେ ବୈଷ୍ଣବ କବିଗଣ ସେମାନଙ୍କର କଳ୍ପନା ପ୍ରସୂତ ବହୁ ଉପାଖ୍ୟାନ ସୃଷ୍ଟିକଲେ ଓ ସେଗୁଡ଼ିକୁ ଲୋକମାନଙ୍କ ମଧ୍ୟରେ ବହୁ ଭାବରେ ପ୍ରଚାର କଲେ । ସମାଜରେ ସେସମୟରେ ଯେଉଁମାନେ ପରକୀୟା ପ୍ରୀତିର ବିରୁଦ୍ଧାଚରଣ କରୁଥିଲେ ସେମାନଙ୍କ ବିରୁଦ୍ଧମତକୁ ଅସାର ପ୍ରତିପାଦନ କରିବା ଉଦ୍ଦେଶ୍ୟରେ କବିମାନେ ଶାସ୍ତ୍ରରୁ ଖୋଜି ତତ୍ତ୍ୱ ବାହାର କରି ତଦନୁସାରେ କାବ୍ୟ କବିତା ରଚନା କଲେ । ଏହିଭଳି ରଚିତ ହୋଇଥିବା ଏକ କାବ୍ୟ ରହସ୍ୟ ମଞ୍ଜରୀ ।

ବୈଷ୍ଣବ କବିମାନଙ୍କର ଚତୁରତା ଅନୁସାରେ କାବ୍ୟର ଆରମ୍ଭରେ ରହିଲା ଶ୍ରୀଜଗନ୍ନାଥ ଓ କ୍ଷେତ୍ର ବର୍ଣ୍ଣନା । ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦତ୍ୱ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଶ୍ରୀରାଧା, ରୁକ୍ମଣୀ ଆଦିଙ୍କୁ ମହାଲକ୍ଷ୍ମୀଙ୍କର ଅଂଶଜାତ ଭାବରେ ବର୍ଣ୍ଣନା କରାଗଲା । ତେଣୁ ବୈଷ୍ଣବ କବିଙ୍କର ଏହି ପ୍ରକାର ବର୍ଣ୍ଣନା ଗୁରୁଶିଷ୍ୟ ଭିତରେ ଆଧ୍ୟାତ୍ମିକ ମାର୍ଗ ସ୍ଥିର ପଥ ଗ୍ରହଣ କଲା । ଧର୍ମର ଯେତେସବୁ ଆଳ ସେସବୁକୁ ଛାଡ଼ିଦେଲେ, ବୈଷ୍ଣବ କାବ୍ୟ ସମୂହରେ ଥିବା ତତ୍ତ୍ୱ, ତଥ୍ୟ ଆଦିକୁ ଛାଡ଼ିଦେଲେ ରହିଯାଏ କେବଳ ଶୃଙ୍ଗାର ଭାବାପନ୍ନ ଲୀଳା ବର୍ଣ୍ଣନା । ଏହି ବର୍ଣ୍ଣନା ମନୋଜ୍ଞ, ସାହିତ୍ୟର ପାଠକ ପାଇଁ ଯଥେଷ୍ଟ । ସାହିତ୍ୟର

ପାଠକ କୌଣସି ଧର୍ମତତ୍ତ୍ୱର ଅନୁଶୀଳନ କରିବା ପାଇଁ ମନ ବଳାଏ ନାହିଁ ।

ଓଡ଼ିଆ ସାହିତ୍ୟରେ ଷୋଡ଼ଶ ଶତାବ୍ଦୀ ବା ତାର ପରବର୍ତ୍ତୀ କାଳରେ ଯେତେଗୁଡ଼ିଏ ବୈଷ୍ଣବ କାବ୍ୟ ବା ପଦାବଳୀ ରଚିତ ହୋଇଅଛି ସେଗୁଡ଼ିକରେ ପ୍ରୀତିର ମାନବିକ ଆବେଦନ ହିଁ ଯଥେଷ୍ଟ । ଜୀବ ପରମଙ୍କୁ ଗୁଢ଼ ପ୍ରେମିକ ପ୍ରେମିକାର ଆନନ୍ଦାନୁଭୂତି ଏହି ସାହିତ୍ୟକୁ ରସୋତ୍ତୀର୍ଣ୍ଣ କରିଅଛି ବୋଲି କୁହାଯାଇ ପାରେ । ତେବେ ସାଧାରଣ ପାଠକ କେବଳ ଏତିକି ବୁଝିଲେ ଯଥେଷ୍ଟ ହେବ ଯେ ଭଗବାନ ଲୀଳାମୟ, ପୁଣି ପ୍ରେମମୟ । ତାଙ୍କର ପ୍ରେମର ବର୍ଣ୍ଣନା ସବୁଦିନକୁ ଉପଭୋଗ୍ୟ ।

ଶ୍ରୀକୃଷ୍ଣ ଓ ଶ୍ରୀରାଧା ବା ଗୋପବାଳାଙ୍କ ମଧ୍ୟରେ ଥିବା ପ୍ରୀତିର ସମ୍ବନ୍ଧ ବିଷୟରେ ଯେତେ ପ୍ରକାର ତତ୍ତ୍ୱ ନିରୂପିତ ହେଉନା କାହିଁକି, ବୈଷ୍ଣବ କବିଗଣଙ୍କର କଳ୍ପନା ଓ ଶକ୍ତିଶାଳୀ ଲେଖନୀ ବଳରେ ଯୁଗ ପରେ ଯୁଗ ଅତିକ୍ରାନ୍ତ ହୋଇଯାଇଥିଲେ ହେଁ ସେହି ପ୍ରେମଗାଥା ଏବେ ମଧ୍ୟ ଅମର ଏବଂ ଭବିଷ୍ୟତରେ କେତେକାଳ ପର୍ଯ୍ୟନ୍ତ ସେହିପରି ଅମରତ୍ୱ ଲାଭ କରିବ ତାହା କହିବା ସମ୍ଭବ ନୁହେଁ । ଆଜି ଯେ କୌଣସି ସାଧାରଣ ପାଠକର ମନର ଜିଜ୍ଞାସା—ସତେ କଣ ଏ ପ୍ରକାର ପ୍ରୀତି ସମ୍ଭବ ? ଅତୀତରେ କଣ ସମ୍ଭବ ହୋଇଥିଲା ବା ହୋଇ ନ ଥିଲା ତାହା ଆଜି ନିରୂପଣ କରାଯାଇ ନ ପାରେ । ମାତ୍ର ଏଠାରେ ଗୋଟିଏ କଥା ମନେ ରଖିବାକୁ ହେବ ଯେ, ଏହି ପ୍ରେମଗାଥାକୁ ଅମରତ୍ୱ ପ୍ରଦାନ କଲେ କେଉଁମାନେ । ଯଦି ଏହି ପ୍ରେମଗାଥା ଅମରତ୍ୱ ଲାଭ କରିଥାଏ, ତେବେ ତାହା କେବଳ ସେହି ବୈଷ୍ଣବ କବିମାନଙ୍କର ସାଧନାର ପରିଣାମ । କେଉଁ ବୈଷ୍ଣବ କବିଗଣ କେଉଁ ପରିମାଣରେ ଶକ୍ତିଶାଳୀ ଥିଲେ ତାହା ଏହି ବିଷୟରୁ ଅନୁମାନ କରାଯାଇ-ପାରେ । ଏଠାରେ ସ୍ମରଣୀୟ ଯେ, କାବ୍ୟର ଉପଜୀବ୍ୟ ବଡ଼ ନୁହେଁ—ବଡ଼ ହେଉଛି କାବ୍ୟକର୍ତ୍ତା । ରାଧାକୃଷ୍ଣଙ୍କର ଅମର ପ୍ରେମଗାଥାକୁ ଅମରତ୍ୱ ପ୍ରଦାନ କରିଥିବା ବୈଷ୍ଣବ କବିଗଣ ହିଁ—ଆମର ନମସ୍ୟ ।

ଶୁଦ୍ଧା ଭକ୍ତିର ପରକାଷ୍ଠା ପ୍ରୀତିତତ୍ତ୍ୱ ଯାହା ହେଉନା କାହିଁକି କବିର ଦୃଷ୍ଟିରେ ଗୋପୀ ଶ୍ରୀରାଧାଙ୍କର ପ୍ରୀତିର ଉତ୍ସବ ସବୁଠାରୁ ବଡ଼ । ଗୋପୀ ଓ ଶ୍ରୀରାଧାଙ୍କର ଅନାବିଳ ହୃଦୟର ପ୍ରୀତିରସ ଯେ କୌଣସି ପାଠକର ହୃଦୟକୁ ଦ୍ରବୀଭୂତ କରେ । ପ୍ରୀତିର ପରିସର ମଧ୍ୟରେ ଶ୍ରୀରାଧାଙ୍କର ସତୀତ୍ୱ ପ୍ରତି ବ୍ରଜରେ

କବି ଆକ୍ଷେପ, ସମାଜର ନିନ୍ଦା ଉଚିତ ହୋଇଛି । ଶ୍ରୀରାଧାଙ୍କୁ ଅସତୀ ଆଖ୍ୟାରେ ସମାଜ ଆଖ୍ୟାୟିତ କରିଛି । ଶ୍ରୀରାଧା ସତୀତ୍ୱର ପରୀକ୍ଷା ଦେଇଛନ୍ତି । ମାତ୍ର କବି ଦୃଷ୍ଟିରେ ଏ ପରୀକ୍ଷା ଅର୍ଥହୀନ । କବି ଦେଖିଛନ୍ତି ଶ୍ରୀରାଧାଙ୍କର ପ୍ରୀତିର ମହାର୍ଘତା, ଅନୁଭବ କରିଛନ୍ତି ତାଙ୍କର ହୃଦୟଜନିତ ବ୍ୟାକୁଳତା । ପ୍ରେମିକା ନିକଟରେ ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରିଦେବାର ମହତ ଉଦ୍ଦେଶ୍ୟ କବି ଚକ୍ଷୁରେ ହୋଇ ଉଠିଛି ଅତୀବ ମହାର୍ଘ । ଯେଉଁମାନେ ସତୀତ୍ୱ ପ୍ରଦର୍ଶନ କରି ବାହ୍ୱାଦୂରି ନେଇଛନ୍ତି କବି ସେମାନଙ୍କୁ ତୁଳନା କରିଛନ୍ତି ଅସତୀ ଗୋପୀ ଓ ଶ୍ରୀରାଧାଙ୍କ ସହିତ । ବୈଷ୍ଣବ କବିର ଆବେଗପୂର୍ଣ୍ଣ ଭାବନା ମଧ୍ୟରେ ପ୍ରେମିକା, ପ୍ରକୃତି ପୁରୁଷ ବା ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ବିରହ ମିଳନର ଗାଥା ଯୁଗ ଯୁଗ ଧରି କବିସମାଜକୁ ମୁଗ୍ଧ କରି ଆସିଛି । ତେଣୁ ଓଡ଼ିଆ ସାହିତ୍ୟରେ ବିଂଶଶତାବ୍ଦୀର ଆଧୁନିକ କବି ମାୟାଧର ମାନସିଂହଙ୍କ ରଚନାରେ ପ୍ରକାଶ ପାଇଛି,

"କବି କାନୁ ନ ବୁଝିଲା ଆନସତୀ ଜନେ
ପ୍ରଣତି ବହିଲା ଦେବୀରୁକ୍ମିଣୀର ଚରଣେ ।"

ଶ୍ରୀରାଧାଙ୍କୁ ସମାଜ ଦୋଷରୁଣୀ ଭାବରେ ଦେଖିଲା, ମାତ୍ର ଦେଖିପାରିଲା ନାହିଁ କବି । କବି ଏହି ଦୃଷ୍ଟିରୁ ସମାଜକୁ ଅସ୍ୱୀକାର କରିପାରେ, ମାତ୍ର ତାର କାବ୍ୟ କଳାପର ଉପଜୀବ୍ୟକୁ ଅସ୍ୱୀକାର କରିନପାରେ । ଏହି ଦୃଷ୍ଟିରୁ ରହସ୍ୟମଞ୍ଜରୀ କାବ୍ୟରେ ଶ୍ରୀରାଧା, ଗୋପାଙ୍ଗନା, ଅଷ୍ଟପାଟବଂଶୀଙ୍କର ପ୍ରୀତିର ବର୍ଣ୍ଣନା ଅତ୍ୟନ୍ତ ମନୋରମ ହୋଇଅଛି ବୋଲି କୁହାଯାଇପାରେ । କବି ରାଗାନୁଗା ଭକ୍ତି ମାର୍ଗକୁ ଶ୍ରେଷ୍ଠସ୍ଥାନ ଦେବା ପାଇଁ ତତ୍ପର । ତେଣୁ ତାଙ୍କର କଥାବସ୍ତୁ କବିକଳ୍ପନା ଉଦ୍ଦେଶ୍ୟ-ମୂଳକ । ତଥାପି ତାଙ୍କର ବର୍ଣ୍ଣନା ଶୈଳୀର ଅନୁପମତା ଲକ୍ଷଣୀୟ ।

କବି ଦୃଢ଼କଣ୍ଠରେ ଗୋପୀଭକ୍ତିର ସାରବତ୍ତା ପ୍ରତିପାଦନ କରିଛନ୍ତି । ତଥ୍ୟ ଓ ତତ୍ତ୍ୱର ପଥ ଦୁର୍ଗମ, ମାତ୍ର ପ୍ରୀତିର ପଥରେ ଗୋପୀମାନେ ଶ୍ରୀକୃଷ୍ଣଙ୍କର ଅତି ଆପଣାର, ଅତି ନିକଟର । ସେହି ଦୃଷ୍ଟିରୁ କବି ଶ୍ରୀକୃଷ୍ଣଙ୍କ ମୁଖରେ ଶୁଣାଇଛନ୍ତି,

"ଏହୁ ସମାଧି ଆଦି ଆଷ୍ଟଯୋଗ
ସିଦ୍ଧ ଯୋଗୀମାନଙ୍କର ଆତ୍ମାଭୋଗ ।
ଯୋଗସାଧି କୋଟିକଳ୍ପ ଗାଅନ୍ତି
ଗୋପୀଭାବକୁ ଏପରି ନୁହନ୍ତି ।" (୫/୬୦) ।

ପୁଣି,

"ଗୋପୀମାନଙ୍କ ଭର୍ତ୍ସନା ବଚନ
ମୋର ମନ ଜୀବନକୁ ରୋଚନ,
ତାଙ୍କ ଗାଳି ଭିତରେ ଯେତେ ଭାବ
ବ୍ରହ୍ମା ବେଦେ କହିବ କାହୁଁ ଠାବ ।" (୫/୩୭) ।

ଶ୍ରୀକୃଷ୍ଣଙ୍କ ବଚନରେ ଗୋପୀପ୍ରେମର ଶ୍ରେଷ୍ଠତ୍ୱ ସୂଚିତ । ଦ୍ୱାରକାପୁରରେ ଅଷ୍ଟପାଟବଂଶୀଙ୍କ ଗହଣରେ ସବୁପ୍ରକାର ସେବା ପୂଜା ପାଇଁ ମଧ୍ୟ ଶ୍ରୀକୃଷ୍ଣ ଶ୍ରୀରାଧା ଓ ଗୋପୀଙ୍କ ବିରହରେ ଜର୍ଜରିତ ହୋଇପଡ଼ିଛନ୍ତି ଏହି ଭାବ ପ୍ରକାଶ ହେଉଛି ଦେବ ଦୁର୍ଲଭ ଦାସଙ୍କର ଉଦ୍ଦେଶ୍ୟ ପୂରଣରେ ଏକ ମାଧ୍ୟମ । କବି ରାଧାପ୍ରେମ ବା ଗୋପୀ-ପ୍ରେମର ମହତ୍ତ୍ୱ ବହୁଭାବରେ ପ୍ରମାଣିତ କରିଅଛନ୍ତି ।

ଓଡ଼ିଆ ସାହିତ୍ୟରେ ଗୋପୀ ଓ ଶ୍ରୀରାଧାଙ୍କ ପ୍ରେମ ସମ୍ବଳିତ କାବ୍ୟକବିତା ଅଷ୍ଟାଦଶ ଶତାବ୍ଦୀରେ ବିଶେଷ ଭାବରେ ଖ୍ୟାତିଲାଭ କରିଥିଲା । ମାତ୍ର ଷୋଡ଼ଶ ଶତାବ୍ଦୀରେ ରଚିତ ଏହି କାବ୍ୟ ଏଦିଗରେ ପଥ ପ୍ରଦର୍ଶକ ଭାବରେ ଗୃହୀତ ହେବାର କଥା । ଓଡ଼ିଆ ବୈଷ୍ଣବ ସାହିତ୍ୟରେ ରହସ୍ୟମଞ୍ଜରୀ ଏହି ଦୃଷ୍ଟିରୁ ଏକ ଗୌରବପୂର୍ଣ୍ଣ ଆସନର ଅଧିକାରୀ ।

ବୈଷ୍ଣବ ସାହିତ୍ୟରେ ତତ୍ତ୍ୱର ବ୍ୟାଖ୍ୟାନ ପାଠକମାନଙ୍କ ପକ୍ଷରେ ଉପଭୋଗ୍ୟ ହୋଇନପାରେ । ତେଣୁ ତହିଁରେ ତତ୍ତ୍ୱ ସହିତ ରସର ସ୍ଥାପନ କବିମାନଙ୍କ କଳ୍ପନାରେ ସ୍ଥାନ ପାଇଲା । ରହସ୍ୟମଞ୍ଜରୀ କାବ୍ୟରେ ତତ୍ତ୍ୱ ସହିତ ରସର ସମନ୍ୱୟ ଓ ରସର ପ୍ରାଧାନ୍ୟ ଯେପରି ଭାବରେ ସୂଚିତ ହୋଇଅଛି, ପରବର୍ତ୍ତୀ କାଳର ବୈଷ୍ଣବ ସାହିତ୍ୟକୁ ତାହା ପଥ-ପ୍ରଦର୍ଶନ କରିଅଛି ବୋଲି ବୁଝାଯାଇ-ପାରେ ।

ଓଡ଼ିଆ କାବ୍ୟ ଜଗତରେ ରହସ୍ୟମଞ୍ଜରୀର ବୈଶିଷ୍ଟ୍ୟ ବିଷୟର "କଲେ କବିଙ୍କର ସରଳ ନିରାଡ଼ମ୍ବର ସହଜ ସୁବୋଧ କବିତ୍ୱ ସ୍ୱରୁଚି ସଙ୍ଗେ ଦୃଷ୍ଟି ଆକର୍ଷଣ କରେ । 'ରୀତିଯୁଗର ଆଲଙ୍କାରିକ କାବ୍ୟ ଗୌରବର ଏହା ପ୍ରବେଶଦ୍ୱାର' । ସାରଳାଦାସଙ୍କର ସ୍ୱଳ୍ପ ଆଲଙ୍କାରିକତା ଓ ପଞ୍ଚସଖା ଯୁଗର ତତ୍ତ୍ୱ ଓ ତଥ୍ୟ ସମ୍ବଳିତ ସାହିତ୍ୟକୃତି ମଧ୍ୟରୁ ଏହାର ସୃଷ୍ଟି; କିନ୍ତୁ କାବ୍ୟିକ ଚେତନା ସ୍ପର୍ଶରେ ଉଦ୍ଭବରଳ । ପୌରାଣିକ ମନୋବୃତ୍ତି ଭିତରୁ କାବ୍ୟକବିତ୍ୱ ପ୍ରତିଷ୍ଠା ପ୍ରତିଭାଶାଳୀ

କବିର କର୍ମ । ତତ୍ତ୍ୱସମ୍ବଳିତ ସାହିତ୍ୟ ମଧ୍ୟରୁ ରସଚର୍ଯ୍ୟାର ନିପୁଣ କାରିଗରି ପାଠକ ଚିତ୍ତକୁ ବିଶେଷ ଭାବରେ ଆକୃଷ୍ଟ କରିଥାଏ ।

ରହସ୍ୟମଞ୍ଜରୀର ଭାଷା ଓ ଶୈଳୀ ଓଡ଼ିଆ ସାହିତ୍ୟରେ ତାର ସ୍ଥାନ ନିରୂପଣରେ ସହାୟତା କରେ । ପ୍ରାଚୀନ କଥିତ ଭାଷାରେ କାବ୍ୟ ରଚନାର ସୌନ୍ଦର୍ଯ୍ୟ ଏଥିରେ ପ୍ରକାଶିତ ।



# ରହସ୍ୟ ମଞ୍ଜରୀ

## ପ୍ରଥମ ଛାନ୍ଦ

—ଗାହ୍ଵା—

ନନ୍ଦ ନନ୍ଦନ ଶ୍ରୀ ମଧୁସୂଦନ ମନ ମୋର କଲେ ଉଲ୍ଲାସ ।
ଅତି ରହସ୍ୟରେ ରହସ୍ୟ ମଞ୍ଜରୀ ନାମରେ ଗୀତ ପ୍ରକାଶ ।
(ମଙ୍ଗଳ ଘଗେଣ ଗୀଯୁଚେ)
ଶ୍ରୀ ଜୟ ଜଗନ୍ନାଥ

କ୍ଷୀର ନୀର ଦଧି ଘୃତ ସୁର,
ଇକ୍ଷୁ ଲବଣାବ୍ଧ ସପତ ସାଗର । ଜୟ ଜଗନ୍ନାଥ । ୧ ।
କ୍ରୌଞ୍ଚ ଶାକ ଶାଲ୍ମଳୀ ପୁଷ୍କର,
ପ୍ଲକ୍ଷ କୁଶ ଜମ୍ବୁଦ୍ୱୀପ ଶ୍ରେଷ୍ଠସାର । ଶ୍ରୀଜଗନ୍ନାଥ । ୨ ।
ସମନ୍ତକ ନାମେ ତୀର୍ଥ ଆଦ୍ୟ,
ତହିଁ ସମେଶ୍ୱର ଦେବତା ପ୍ରସିଦ୍ଧ । ଶ୍ରୀଜଗନ୍ନାଥ । ୩ ।
ତହିଁ ଯମ ସମକ୍ଷରେ ଆସି,
ଋମ ସଂକ୍ରମଣେ ଯାଇ ପାପ ନାଶି । ଶ୍ରୀଜଗନ୍ନାଥ । ୪ ।

---

## ପ୍ରଥମ ଛାନ୍ଦ

୧ । ଗାହ୍ଵା—ଗାଥା, ଗୀତ ଛନ୍ଦ । ରହସ୍ୟରେ—ଗଭୀର ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ । ରହସ୍ୟ ମଞ୍ଜରୀ—ରାଧାକୃଷ୍ଣଲୀଳାର ଗୂଢ଼ତତ୍ତ୍ୱ ପ୍ରକାଶକ କାବ୍ୟ । ଗୀତ—ଏଠାରେ କାବ୍ୟ ଉଦ୍ଦେଶ୍ୟରେ ବ୍ୟବହୃତ । ସୁର—ମଦ । ଇକ୍ଷୁ—ଆଖୁ ।
୨ । କ୍ରୌଞ୍ଚ, ଶାକ, ଶାଲ୍ମଳୀ, ପୁଷ୍କର, ପ୍ଲକ୍ଷ, କୁଶ ଓ ଜମ୍ବୁ—ପୁରାଣ ବର୍ଣ୍ଣିତ ସପ୍ତଦ୍ୱୀପ ।
୪ । ସମକ୍ଷରେ—ସମ୍ମୁଖରେ । ମକର ସଂକ୍ରମଣେ—ମକର ସଂକ୍ରାନ୍ତିରେ । ଯାଇ ପାପ ନାଶି—ପାପ ନାଶ ଯାଏ ।

❊

ତେଣ୍ଟେ କ୍ଷେତ୍ର ନୀଳ ମହାଗିରି,
ଲକ୍ଷେ ଯୋଜନ ଉତ୍ସର୍ଗ କାୟା କରି । ଶ୍ରୀଜଗନ୍ନାଥ । ୫ ।

ଭାସ୍କର ଦେବତା ପନ୍ଥ ସରି,
ପନ୍ଥ ମାଗନ୍ତେ ବିରଞ୍ଚି ଗୋପ୍ୟଗିରି । ଶ୍ରୀଜଗନ୍ନାଥ । ୬ ।

ନୀଳ ମହୀଧର ତା ମୁକୁଟେ,
ନାମ ଶ୍ରୀପୁରୁଷୋତ୍ତମ ଓଡ଼ରାଷ୍ଟ୍ରେ । ଶ୍ରୀଜଗନ୍ନାଥ । ୭ ।

କଳପ ମହୀରୁହ ନିକଟେ,
ମୁକ୍ତି ମଣ୍ଡପ ବିଚିତ୍ର ଥାନ ଘଟେ । ଶ୍ରୀଜଗନ୍ନାଥ । ୮ ।

ସିଦ୍ଧ ଗଣପତି ବଟମୂଳେ,
ସିଦ୍ଧ ପ୍ରଚଣ୍ଡ ନନ୍ଦନ ବସେ ତାଳେ । ଶ୍ରୀଜଗନ୍ନାଥ । ୯ ।

ବଟ ରୋହିଣୀ କୁଣ୍ଡ ଉତ୍ତରେ,
ପ୍ରଭୁ ବିଜେ ବଡ଼ ଦେଉଳ ଭିତରେ । ଶ୍ରୀଜଗନ୍ନାଥ । ୧୦ ।

ଅଷ୍ଟଦଳ କମଳ କେଶରେ,
ତହିଁ ମହାଯୋଗପୀଠର ଶଯ୍ୟାରେ । ଶ୍ରୀଜଗନ୍ନାଥ । ୧୧ ।

---

୫ । ତେଣ୍ଟେ—ସେତିକିର । ନୀଳ ମହାଗିରି—ନୀଳାଚଳଧାମ । ଯୋଜନ—ଗୃହକୋଣ ପରିମିତ । ଉତ୍ସର୍ଗ—ଉଚ୍ଚ ।

୬ । ଭାସ୍କର ଦେବତା—ସୂର୍ଯ୍ୟଦେବତା । ପନ୍ଥସରି—ପଥ ଶେଷ ହେବାରୁ । ବିରଞ୍ଚି—ବ୍ରହ୍ମା ।

୭ । ନୀଳମହୀଧର—ନୀଳପର୍ବତ । ଓଡ଼ରାଷ୍ଟ୍ରେ—ଓଡ଼ିଶା ରାଜ୍ୟରେ ।

୮ । କଳପମହୀରୁହ—କଳ୍ପବଟ । ମୁକ୍ତି ମଣ୍ଡପ—ଜଗନ୍ନାଥ ମନ୍ଦିରର ପଣ୍ଡିତ ସଭା ନିମିତ୍ତ ନିର୍ଦ୍ଦିଷ୍ଟ ମଣ୍ଡପ । ବିଚିତ୍ର ଥାନ ଘଟେ—ରମଣୀୟ ସ୍ଥାନ ଭାବରେ ଶୋଭିତ ।

୯ । ସିଦ୍ଧ ଗଣପତି—ଭଣ୍ଡ ଗଣେଶ । ପ୍ରଚଣ୍ଡ ନନ୍ଦନ—ଭୁଷଣ୍ଡ କାକ ।

୧୦ । ପ୍ରଭୁ—ଶ୍ରୀଜଗନ୍ନାଥ ।

୧୧ । ଅଷ୍ଟଦଳ କମଳ—ଆଠ ପାଖୁଡ଼ା ଥିବା ପଦ୍ମ ।

ଖୀନ କଟି ନେତର କାଛେଣୀ ।
ଚକା ଚରଣ ବଇଠି ତଟ ଜଣି । ଶ୍ରୀଜଗନ୍ନାଥ । ୧୨ ।
ହୃଦୟୁ ଲାଞ୍ଛନ ଶ୍ରୀ ବସ୍ତ୍ରଙ୍କ,
ଗନ୍ଧ ଚନ୍ଦନ ପର୍ବତ ସୁରୁଅଙ୍ଗ । ଶ୍ରୀଜଗନ୍ନାଥ । ୧୩ ।
କଉସ୍ତୁଭମଣି କଣ୍ଠ ତଟ,
ହେମ ମଣି ଇନ୍ଦ୍ର ହୃଦେ ଝଟ ଝଟ । ଶ୍ରୀଜଗନ୍ନାଥ । ୧୪ ।
ବଇତ ବଳନ ଭୁଜଦଣ୍ଡ,
ଶଙ୍ଖ ଚକ୍ର ଜ୍ୟୋତି ବିଧୂ ମାରତଣ୍ଡ । ଶ୍ରୀଜଗନ୍ନାଥ । ୧୫ ।
ଅଧର ପ୍ରବାଳ ଜବାରୁଣ,
ଚଣ୍ଡକର ଜଣି କୁଣ୍ଡଳ କିରଣ । ଶ୍ରୀଜଗନ୍ନାଥ । ୧୬ ।
ଶ୍ୱେତ ପଦ୍ମ ଲୋଚନ ବୃଷାଳ,
ଲୁବ୍‌ଧ ମଧୁପାନେ ମଧୁପ ନିଚଳ । ଶ୍ରୀଜଗନ୍ନାଥ । ୧୭ ।
ନିବଡ଼ ଜଳଦ ଝଳ ଝଲ,
ମଳୟଜ ବିନ୍ଦୁ ଇନ୍ଦୁ ଝଲ ମଲ । ଶ୍ରୀଜଗନ୍ନାଥ । ୧୮ ।
କିରୀଟ ମୁକୁଟ ଅବତଂସ,
ଭକ୍ତଜନ ଅଘତମିର ବିନାଶ । ଶ୍ରୀଜଗନ୍ନାଥ । ୧୯ ।

---

୧୨ । ଖୀନ କଟି—କ୍ଷୀଣ କଟି । ନେତର କାଛେଣୀ—ଶ୍ରେଷ୍ଠ ସୁନ୍ଦର ପାଟଲୁଗା । ଚକାଚରଣ ବଇଠିତଟ—ଜଗନ୍ନାଙ୍କର ବିଜୟ ପୀଠ ଓ ପାଦ ରଖିବାର ପୀଠ । ଜଣି—ବଳି ପଡ଼ୁଥିବା ।

୧୩ । ଲାଞ୍ଛନା—ଚିହ୍ନ । ଶ୍ରୀବସ୍ତ୍ର—ଶ୍ରୀବତ୍ସ ବ୍ରାହ୍ମଣ ।

୧୫ । ବିଧୂ ମାରତଣ୍ଡ—ଚନ୍ଦ୍ର ସୂର୍ଯ୍ୟ ।

୧୬ । ପ୍ରବାଳ—ପୋହଳା । ଜବାରୁଣ—ଜବାଫୁଲ ଏବଂ ଉଦୀୟମାନ ସୂର୍ଯ୍ୟପରି ଲାଲବର୍ଣ୍ଣ । ଚଣ୍ଡକର—ସୂର୍ଯ୍ୟ ।

୧୭ । ବୃଷାଳ—ବିଶାଳ ଓ ଗୋଲ । ମଧୁପ—ଭ୍ରମର । ନିଚଳ—ନିଶ୍ଚଳ ।

୧୮ । ନିବଡ଼—ଘନ । ଜଳଦ—ମେଘ । ଝଳି—ଉଜ୍ଜ୍ୱଳ । ମଳୟଜ—ଚନ୍ଦନ । ଇନ୍ଦୁ—ଚନ୍ଦ୍ର ।

୧୯ । କିରୀଟ—ମସ୍ତକ ଭୂଷଣ, ମୁକୁଟ । ଅବତଂସ—କୁଣ୍ଡଳ, ମୁକୁଟ । ଅଘତମିର—ପାପରୂପକ ଅନ୍ଧକାର ।

ହିରେ ଶୋଭା ଦର୍ପଣର ଚୂଳ,
ନାନା କୁସୁମେ ତୁଳସୀ ଧଣ୍ଡିମାଳ । ଶ୍ରୀଜଗନ୍ନାଥ । ୨୦ ।
ସମ୍ମୁଖରେ ଗରୁଡ଼ ଯୋଡ଼ି କର,
କଳା ଶ୍ରୀମୁଖଙ୍କୁ ନିରିଖଣ କଙ୍କର । ଶ୍ରୀଜଗନ୍ନାଥ । ୨୧ ।
ସିଦ୍ଧ ରୁଦ୍ରଗଣ ବିଦ୍ୟାଧର,
ସେବା କରୁଛନ୍ତି ଯୋଗେ ଯେ ଯାହାର । ଶ୍ରୀଜଗନ୍ନାଥ । ୨୨ ।
ଛତ୍ରାଲମ୍ବ ଜଳଦ ଡାମ୍ବର,
କୋଟି କୋଟି ସିନ୍ଧୁ ଲହରୀ ଚାମର । ଶ୍ରୀଜଗନ୍ନାଥ । ୨୩ ।
ଭେରୀ ଶଙ୍ଖ ଉପାଙ୍ଗ କାହାଳ,
ବେଣୁ ବୀଣା ତାଳ ମୃଦଙ୍ଗ ଚହଳ । ଶ୍ରୀଜଗନ୍ନାଥ । ୨୪ ।
ଗାବନ୍ତି ଗନ୍ଧର୍ବେ ମିଳି ସଙ୍ଗେ,
ମଧ୍ୟେ ନାଚନ୍ତି କନ୍ନରୀ ନାନାରଙ୍ଗେ । ଶ୍ରୀଜଗନ୍ନାଥ । ୨୫ ।
ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗ,
ନାନା ଗତି ଭ୍ରାନ୍ତି ବହୁଛି ତରଙ୍ଗ । ଶ୍ରୀଜଗନ୍ନାଥ । ୨୬ ।
ସୁଭଦ୍ରା ସୁଦର୍ଶନ ଶ୍ରୀପତି
ବଳଦେବ ଆଦି ଚତୁର୍ଦ୍ଧା ମୂରତି । ଶ୍ରୀଜଗନ୍ନାଥ । ୨୭ ।
ଶ୍ୱେତ ପୀତ ରକ୍ତ ନୀଳ ରୂପ,
ଚାରିବର୍ଣ୍ଣ ଏକ କଳେବର ଧାରୀ । ଶ୍ରୀଜଗନ୍ନାଥ । ୨୮ ।

---

୨୧ । କଙ୍କର—ଦାସ । ରୁଦ୍ରଗଣ—ଏକ ଦଶ ଗଣଦେବତା ।

୨୨ । ବିଦ୍ୟାଧର—ସ୍ୱର୍ଗର ଗାୟକ ।

୨୩ । ଛତ୍ରାଲମ୍ବ—ଛତାର ଝାଲର । ଜଳଦ ଡାମ୍ବର—ମେଘର ଦୋଳନ, ମେଘର ଦୋଳି ଖେଳିବା ଓ ଝୁଲିବା ।

୨୪ । ଉପାଙ୍ଗ—ସହାୟକ ବାଦ୍ୟଯନ୍ତ୍ର । କାହାଳ—କାହାଳୀ

୨୫ । ଗାବନ୍ତି—ଗାଆନ୍ତି । ଗନ୍ଧର୍ବ—ଦେବଗାୟକ । କନ୍ନରୀ—ଦେବଗାୟିକା ।

୨୬ । ଭ୍ରାନ୍ତି—ବିଭ୍ରମ ବା ବିଳାସ ।

୨୭ । ଶ୍ରୀପତି—ଜଗନ୍ନାଥ । ଚତୁର୍ଦ୍ଧା ମୂରତି—ଚତୁର୍ଦ୍ଧା ମୂର୍ତ୍ତି, ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ଓ ସୁଦର୍ଶନ ।

ସହସ୍ର ବଦନେ ବେଦଧାରୀ,
କୋଟି କୋଟି କଲ୍ପେ କହି ତ ନ ପାରି ! ଶ୍ରୀଜଗନ୍ନାଥ । ୨୯ ।
ମୋ ଗୁର ପାମର ମୂଢ଼ମତି,
ତାହା କହିବାକୁ କସ ମୋ ଶକତି । ଶ୍ରୀଜଗନ୍ନାଥ । ୩୦ ।
କେବଳ ଭରସା ମୋର ଏହି
ଦୀନବନ୍ଧୁ ବୋଲି ନାମ ଅଛ ବହି । ଶ୍ରୀଜଗନ୍ନାଥ । ୩୧ ।
ଆରତ ଭଞ୍ଜନ ବଜ୍ରସେହ୍ଲା,
କୋଟି ବ୍ରହ୍ମାଣ୍ଡେ ଉଡ଼ୁଛି ଯାର ବାନା । ଶ୍ରୀଜଗନ୍ନାଥ । ୩୨ ।
ଏବେ ଯା ସ୍ଫୁରୁଛି ମୋର ମନ,
ତାହା କହିବାକୁ ହୁଅ ପରସନ୍ନ । ଶ୍ରୀଜଗନ୍ନାଥ । ୩୩ ।
ଆନ ମୁଁ ଯେ କଛି ମାଗୁନାହିଁ,
ତୁମ୍ଭ ଚରଣେ ଶରଣ ଭବଗ୍ରାହୀ । ଶ୍ରୀଜଗନ୍ନାଥ । ୩୪ ।
ରହସ୍ୟ-ମଞ୍ଜରୀ ନାମେ ଗୀତ,
ଆଜ୍ଞା ହୋଇଲେ ମୁଁ କରିବ ଉକତ । ଶ୍ରୀଜଗନ୍ନାଥ । ୩୫ ।
ଛନ୍ଦିବ ବିବଧ ରସେ ଗୁନ୍ଦ,
ମୋର ହୃଦେ ବଜେ କରିବା ଗୋବନ୍ଦ । ଶ୍ରୀଜଗନ୍ନାଥ । ୩୬ ।
ସରସ୍ୱତୀ ରୂପେ ବାକ୍ୟଦେବୀ,
କଣ୍ଠେ ପ୍ରଳମ୍ବ ଅଛରୁ ବାକ୍ୟ ସ୍ରବି । ଶ୍ରୀଜଗନ୍ନାଥ । ୩୭ ।

---

୨୯ । ବେଦଧାରୀ—ବ୍ରହ୍ମା ।

୩୦ । ମୋ—ମୁଁ । ମୋ ଗୁର ପାମର ମୂଢ଼ମତ—କବିଙ୍କର ଦୈନ୍ୟବୋଧର ପ୍ରକାଶ ।

୩୨ । ଆରତ ଭଞ୍ଜନ—ବିପଦର ଭଞ୍ଜନ । ବଜ୍ରସେହ୍ଲା—ବଜ୍ରର ଘାକୁ । ବାନା —ପତାକା

୩୩ । ସ୍ଫୁରୁଛି—ପ୍ରତୀଶିତ ହେଉଅଛି । ପରସନ୍ନ—ପ୍ରସନ୍ନ ।

୩୪ । ଭବଗ୍ରାହୀ—ଭବକୁ ଯେ ଗ୍ରହଣ କରନ୍ତି, ଅର୍ଥାତ୍ ଜଗନ୍ନାଥ ।

୩୫ । ଉକତ—ଉକ୍ତ, ବର୍ଣ୍ଣନା ।

୩୬ । ଛନ୍ଦିବ—ଛନ୍ଦୋବଦ୍ଧ କର ରଚନା କରିବ ।

୩୭ । ପ୍ରଳମ୍ବ—ପ୍ରଣବ । ଅଛରୁ—ଅକ୍ଷରରୁ ।

ସର୍ବ ସୁଖ ଦାୟିନୀ ଚରଣେ,
ଦେବ ନିରନ୍ତରେ ପଶିଲ ଶରଣେ । ଶ୍ରୀଜଗନ୍ନାଥ । ୩୮ ।

ଇତି ଶ୍ରୀ ରହସ୍ୟ ମଞ୍ଜରୀ ଗ୍ରନ୍ଥେ,
ନୀଳାଦ୍ରି ଚନ୍ଦ୍ରମା ଚରଣାରବିନ୍ଦେ,
ଦ୍ୱିଶତ୍ୟ ଛନ୍ଦ ବର୍ଣ୍ଣିଲେ କେବଣ ବୃତ୍ତାନ୍ତ,
କହିବାକୁ ଆଜ୍ଞା ହେଉ ଶ୍ରୀଜଗନ୍ନାଥ ।

---

୩୮ । ଦେବ—ଦେବ ଦୁର୍ଲଭ ଦାସ, କବି । ନୀଳାଦ୍ରି ଚନ୍ଦ୍ରମା—ଶ୍ରୀଜଗନ୍ନାଥ । ଚରଣାରବିନ୍ଦେ—ପାଦପଦ୍ମରେ ।

# ଦ୍ୱିତୀୟ ଛାନ୍ଦ

(ବରାଡ଼ି ରାଗେଣ ଗୀୟତେ । କଳସା ବାଣୀ)

ଏକ ଦିନେ ଏକାନ୍ତ ମନ୍ଦିରେ ଜଗନ୍ନାଥ ।
ମଣିମୟ ପଲଙ୍କ ଉପରେ ବିରାଜିତ ।
ବେଳ ଜାଣି ରୁକ୍ମିଣୀ ରମଣୀ-ଶିରୋମଣି ।
ପଶିପାଶେ ଏକଲି ପ୍ରବେଶ ଠାକୁରାଣୀ । ୧ ।
ଶିରେ ଶିରିଚରଣ ଲଗାଇ ଶୁଭ୍ରକେଶୀ ।
କୋଧେ ଗଦଗଦ ବାମା ବଚନ ପ୍ରକାଶି ।
ଶୁଣ ପ୍ରାଣେଶ୍ୱର ଏକ ବଚନ ମୋହର ।
କହିବାକୁ ଭୟେ ମନେ ବହୁତ ବିସ୍ତର । ୨ ।
ବର୍ଷରୁଁ ବର୍ଷରୁଁ ତ ବହୁତ ଦିନ ଗଲା ।
କହିବାକୁ ଶକ୍ୟ ଏଥି କାହାର ନୋହିଲା ।
ମାତା ପିତା ଉଗ୍ରସେନ ଉଦ୍ଧବାଦି ଯେତେ ।
ସବୁଙ୍କର ହୃଦେ ପ୍ରଭୁ ଚିନ୍ତା ଅପ୍ରମିତେ । ୩ ।
ଷୋଳ ସହସ୍ରଏ ଅଷ୍ଟ ନାୟିକା ଯୁବତୀ ।
ଅଛନ୍ତି ଅନେକ ବାମା ସୁଜାଣ ସୁମତି ।
ସକଳ କାମିନୀଙ୍କ ବିକଳଭାବ ଦେଖି ।
ଅଇଲି ରୁମୁଖକୁ ଭୟେ ସଙ୍କୋଚ ଉପେକ୍ଷି । ୪ ।

---

## ଦ୍ୱିତୀୟ ଛାନ୍ଦ

୧ । ଏକଲି—ଏକାକିନୀ ।

୨ । ଶିରିଚରଣ—ଶ୍ରୀଚରଣ, ଜଗନ୍ନାଥଙ୍କ ଚରଣ, ଶ୍ରୀକୃଷ୍ଣଙ୍କ ଚରଣ । ଶୁଭ୍ରକେଶୀ—ଉଜ୍ଜ୍ୱଳ କେଶୀ । ଶକ୍ୟ—ଶକ୍ତି । ସବୁଙ୍କର—ସମସ୍ତଙ୍କର ।

୩ । ଅପ୍ରମିତେ—ବହୁତ ।

୪ । ସୁଜାଣେ—ସୁଜ୍ଞାନୀ । ସୁମତି—ଉତ୍ତମମନା । ଅଇଲି—ଆସିଲି । ରୁମୁଖକୁ—ସମ୍ମୁଖକୁ । ଉପେକ୍ଷି—ତ୍ୟାଗକରି ।

କସ ଅର୍ଥେ ପ୍ରଭୁ ହେ ବରସ ତୁମ୍ଭ ମନ ।
କେହ୍ନଣସି ସୁଖକୁ ନ କର ଅବଧାନ ।
ଦ୍ୱାରବତୀ ଭୁବନେ କେବଣ ସୁଖ ନାହିଁ ।
ସବସୁଖ ତେଜ ମନ ରମାଇଲ କାହିଁ । ୫ ।
ହାତୀ ଛତି ପାଦାନ୍ତ ଗଉଡ ରଥ ରଥୀ ।
ସାତବଂଶ ଆଦ ତୁମ୍ଭ କେ କହୁ ସମ୍ପତ୍ତି ।
ଖେଡ଼ ହୋଡ଼ ନଟ ଭଟ ନାନାରଙ୍ଗ କେଳ ।
ଗାବନ୍ତ ଗନ୍ଧର୍ବେ ଯେ ନାଚନ୍ତ ବଦ୍ୟାଧରୀ । ୬ ।
ଖଟଣି ସେବକ ଯେତେ ସ୍ତୁମୁରେ ଅଛନ୍ତ ।
ଯେ ଯାହାର ବେଳକାଳେ ଆଜ୍ଞା ନ ଲଙ୍ଘନ୍ତ ।
ଯୂଥ ଯୂଥ ଅଭରଙ୍ଗୀ ପ୍ରଧାନ ନାୟିକା ।
ନବୀନ ଯୌବନୀ ରସ ରହସ୍ୟେ ଅଧିକା । ୭ ।
ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗେ କୁତୂହଳୀ ।
ସ୍ୱ ଜଗମୋହନୀ ଯେ ଅଟନ୍ତ ସବ କାଳୀ ।
ମୁଖ ତୋଳ ନ ଚାହଁ ନ କହ କପଟ କଥା ।
ହାସ୍ୟ ରସ ଦେଖିଲେ ତଳକୁ ପୋତି ମଥା । ୮ ।
ହୁଁ ହୁଁ କାର କରଣ ନିଶ୍ୱାସ ଉଚେ ଗୁଡ଼ ।
କାହାକୁ କଛୁ ନ କହ କଥା କର ଗାଢ଼ ।
କାହାର ନ ଘେନ ସେବା କ୍ଷଣକେ ବରଙ୍ଗ ।
ଶୟନ ବେସନ ସୁଖ ସବୁ ଅପ୍ରାସଙ୍ଗ । ୯ ।

---

୫ । କେହ୍ନଣସି—କୌଣସି । ଅବଧାନ—ଶ୍ରବଣ । ଦ୍ୱାରବତୀ—ଦ୍ୱାରକାପୁର । ରମାଇଲ—ଲଗାଇଲ, ନିବେଶ କଲ ।

୬ । ପାଦାନ୍ତ—ପାଦାତିକ । ସାତବଂଶ—ସାତ୍ୱତ ବଂଶ, ସାତ୍ୱତଙ୍କର ଅନ୍ଧକ, ବୃଷ୍ଣି ଆଦ ସାତପୁଅ ଥିଲେ । ସେହି ସାତପୁଅଙ୍କ ଅନୁସାରେ କବି ଏହି ବଂଶକୁ ସାତବଂଶ ବୋଲି ବର୍ଣ୍ଣନା କରଛନ୍ତ । ଶ୍ରୀକୃଷ୍ଣ ଏହି ବଂଶରେ ଜନ୍ମଗ୍ରହଣ କରଥିଲେ । ଖେଡ଼—ଖେଳ । ହୋଡ଼—ହୁଡ଼, ପଣ ।

୭ । ଅଭରଙ୍ଗୀ—କଳାସମ୍ପନ୍ନୀ । ରସରହସ୍ୟ—ରସଚର୍ଚ୍ଚା ।

୮ । ସ୍ୱଜଗମୋହନୀ—ସ୍ୱିଭୁବନମୋହନୀ ।

୯ । ବରଙ୍ଗ—ବରସ । ବେସନ—ବ୍ୟସନ । ଅପ୍ରାସଙ୍ଗ—ଅପ୍ରାସଙ୍ଗିକ ।

ଚତ୍ତୁଃସମ ଲେପନ୍ତେ ବଦନ ମାଡ଼ି ଶୁଅ ।
ଲେଉଟାଇ ଲୋଡ଼ନ୍ତେ ମନ୍ଦରୁ ଗରୁ ହୁଅ ।
କ୍ଷଣେ ଉଠ କ୍ଷଣେ ବସ କ୍ଷଣେହେଠ ମାଥ ।
କ୍ଷଣେ କ୍ଷଣେ ବସ୍ତୁଧ୍ୱେ କପାଳେ ମାର ହାଥ । ୧୦ ।
ଊର୍ଦ୍ଧ୍ୱମୁଖ ହୋଇଣ ନିଶ୍ୱାସ ଛାଡ଼ ଗୁଡ଼ ।
କର ଶିରେ କରୁଛ ପଲଙ୍କତଳେ ପଡ଼ ।
କି ଅର୍ଥେ ଶରୀର ଖୀନ କର ଦାମୋଦର ।
ଦଣ୍ଡମଣ୍ଡ କରି ପ୍ରଭୁ ରୋଷ ପରିହର । ୧୧ ।
ଯେବେ ନ କହିବ ପ୍ରଭୁ ଏ ସନ୍ଧ ବଚ୍ଛର ।
ମରିବୁଁ ସକଳ ବାମା ସତ୍ୟ ଏ ଆମ୍ଭର ।
ରୁକ୍ମିଣୀ ବିନୟ କ୍ରୋଧ ଶୁଣି ଜଗନ୍ନାଥ ।
ଉଠି ବସି ଛାଡ଼ି ପ୍ରଭୁ କଲେ କୋଳାଗତ । ୧୨ ।
ପ୍ରଭୁ ଠାକୁରାଣୀ ଏକ ଆସନେ ବିଜୟେ ।
ପ୍ରବୋଧନା ବଚନ କହନ୍ତି ଦେବରାଏ ।
ଲକ୍ଷ୍ମୀ ନାରାୟଣ ବେନି ଚରଣ କମଳେ ।
ସର୍ବଦା ଚୁମ୍ବଇ ଦେବ ନୟନ ଭ୍ରମରେ । ୧୩ ।
ଇତିଶ୍ରୀ ରହସ୍ୟମଞ୍ଜରୀ ଦ୍ୱିତୀୟ ଛାନ୍ଦେ,
ରୁକ୍ମିଣୀରମଣ ଶ୍ରୀଚରଣେ ବନ୍ଦେ,
ତୃତୀୟ ଛାନ୍ଦ ବର୍ଣ୍ଣନେ କେବଣ ବୃତ୍ତାନ୍ତ,
କହିବାକୁ ଆଜ୍ଞାଦେଉ ରୁକ୍ମିଣୀ ଦେବୀର କାନ୍ତ ।

---

୧୦ । ଚତୁଃସମ—ଚନ୍ଦନ, ଅଗୁରୁ, କୁଙ୍କୁମ ଓ କସ୍ତୁରୀ । ମନ୍ଦରୁ—ମନ୍ଦରପର୍ବତ ଠାରୁ । ଗରୁ—ଗରିଷ୍ଠ । ହେଠମାଥ—ତଳକୁ ମୁହଁ ପୋତ । ହାଥ—ହାତ ।

୧୧ । ଖୀନ—କ୍ଷୀଣ । ଦାମୋଦର—ଶ୍ରୀକୃଷ୍ଣ । ଦଣ୍ଡମଣ୍ଡ—ବିସ୍ତାର । ରୋଷ—କ୍ରୋଧ । ପରିହର—ପରିତ୍ୟାଗ କର ।

୧୨ । ସନ୍ଧବଚ୍ଛର—ଗୂଢ଼ କାରଣ ।

୧୩ । ପ୍ରବୋଧନା ବଚନ—ବୁଝାଇ ଶୁଝାଇ କହିବା । ଦେବରାଏ—ଶ୍ରୀକୃଷ୍ଣ । ନୟନଭ୍ରମର—ଚକ୍ଷୁରୂପକ ଭ୍ରମର । ରୁକ୍ମିଣୀରମଣ—ରୁକ୍ମିଣୀପତି, ଶ୍ରୀକୃଷ୍ଣ ।

## ତୃତୀୟ ଛାନ୍ଦ

(ରାଗ-ବରାଡ଼ି । ଆଷାଢ଼ଶୁକ୍ଳ ବାଣୀରେ ଗାଇବ ।)

ବିଦର୍ଭରାଜପ୍ରସୂତା ପୁରତ,
କହନ୍ତି ଯେ ପ୍ରଭୁ ଶ୍ରୀଜଗନ୍ନାଥ,
ଶୁଣ ରମଣୀ-ଶିରୋମଣି ପ୍ରିୟା,
ନିଗୂଢ଼ କଥା ପଚାରିଲ ଯାହା,
ସେ ଗୋପ ବାରତା,
ମନ ସେ ଜାଣଇ ହୃଦୟ ବ୍ୟଥା । ୧ ।

ପ୍ରାଣହୁଁ ଅଧିକ ଅଟଇ ଯେହୁ,
ହୃଦବେଦନା ସମ୍ଭାଳଇ ସେହୁ,
ଆମ୍ଭର ଏଥି ପ୍ରାଣସଖୀ ନାହିଁ,
ତେଣୁ ନ କହି ହରଉଛି ଦେହି,
ଯେ ପ୍ରମାଦ ବ୍ୟଥା,
ପ୍ରାଣ ମରୁଛି ନ କହି ସେ କଥା । ୨ ।

ଅସଙ୍ଗେ ପଡ଼ି ଯାଉଅଛି ମର,
ଦୁଷ୍କାଳେ ବଞ୍ଚୁଛୁଁ ଏ ଦ୍ୱାରପୁର,
ଲଲାଟେ ଲେଖିଅଛି ଯାହା ବିହି,

---

### ତୃତୀୟ ଛାନ୍ଦ

୧ । ବିଦର୍ଭରାଜପ୍ରସୂତା—ବିଦର୍ଭରାଜକନ୍ୟା, ରୁକ୍ମିଣୀ । ପୁରତ—ସମ୍ମୁଖରେ । ନିଗୂଢ଼—ଗୁପ୍ତ । ବାରତା—ବାର୍ତ୍ତା, ପ୍ରସଙ୍ଗ ।

୨ । ପ୍ରାଣହୁଁ—ପ୍ରାଣଠାରୁ । ହରଉଛି ଦେହି—ଶରୀର କ୍ଷୀଣ ହେଉଛି । ପ୍ରମାଦ—ଅନବଧାନତା । ବ୍ୟଥା—ଦୁଃଖ, ଯନ୍ତ୍ରଣା । ମରୁଛି—ତ୍ୟାଗକର ।

ଦୁଃଖକାଳେ ସୁଖ ଲୋଡ଼ି କି ପାଇ,
କି କହିବା ଆମ୍ଭେ ।
ଶୁଣିଲେ ପରତେ ନଯିବ ତୁମ୍ଭେ । ୩ ।
ଯାହାର ମନ ଯହିଁ ରମି ଥାଇ,
ତହୁଁ ସମ୍ପତ୍ତି ତାର ବଡ଼ ନାହିଁ,
ଧନ ଜନ ପଣ ସବୁ ବିରଙ୍ଗ,
କିଚ୍ଛେହେଁ ଲୋଡ଼ଇ ତାହାର ସଙ୍ଗ,
ସେ ପ୍ରାଣରୁ ପର
ବିଅର୍ଥ ଜୀବନ ତା ବିନୁ ତାର । ୪ ।
ଦୁଇ ମନକୁ ଦୁହେଁ ଟକାଟକ,
ଘଳନ୍ତି ପ୍ରୀତି ତୁଟି ଥାଇ ନିକ,
ବାଦେ ବଢ଼ାନ୍ତି ଅଖଣ୍ଡ ପୀରତି,
ପ୍ରାଣହୁଁ ଅଧିକ କରି ସୁକୃତି,
ସେ ସୁକୃତ ଜନ,
ପୀରତି ଲାଗି ମୁରୁଛନ୍ତି ପ୍ରାଣ । ୫ ।
ପ୍ରଭୁ ମୁଖୁଁ ଶୁଣି ଦେବୀ ରୁକ୍ମିଣୀ,
ମନର ମନେ ପୁଣ ପୁଣ ଗୁଣି,
ଏ ତ ଅଲୋକତ ଚକିତ କଥା,
ଅଧିକେ ହୃଦକୁ ଲାଗିଲା ବଥା,
ମୁଁ କିସ କରିବି,
ଏବେ ସେ ଗରଳ ଖାଇ ମରିବି । ୬ ।

---

୩ । ଅସଙ୍ଗେ—ସଙ୍ଗହୀନ ଭାବରେ । ଦୁଷ୍କାଳେ—ମନ୍ଦ ସମୟରେ । ଦ୍ୱାରସ୍ୱପ୍ୱ—ଦ୍ୱାରକାପୁର । ଲଲାଟେ—କପାଳେ, ଭାଗ୍ୟରେ । ବିହି—ବିଧାତା । ପରତେ—ବିଶ୍ୱାସ ।

୪ । ରମିଥାଇ—ରହିଥାଏ, ଲାଗିଯାଇଥାଏ । ବିରଙ୍ଗ—ବିରସ, ବ୍ୟର୍ଥ । ପ୍ରାଣରୁ ପର—ପ୍ରାଣରୁ ଭିନ୍ନ । ବିଅର୍ଥ—ବ୍ୟର୍ଥ ।

୫ । ଟକାଟକ—ଜାଗ୍ରତ ହୋଇ ଅପେକ୍ଷା କରିବା । ସୁକୃତ—ଉତ୍ତମ କାର୍ଯ୍ୟ ।

୬ । ଗୁଣି—ଚିନ୍ତାକରି । ଅଲୋକତ—ଅଲୌକିକ । ଚକିତ—ଭୟ ଚଞ୍ଚଳ । ବଥା—ବ୍ୟଥା । ଗରଳ—ବିଷ ।

ଏହାଙ୍କ ପ୍ରାଣସଙ୍ଗୀ ବଳଦେବେ,
ସଙ୍ଗେ ସଙ୍ଗେ ସେ ତ ଅଛନ୍ତି ଏବେ,
ଉଦ୍ଧବ ଅକ୍ରୂର ସାତ୍ୟକ ତିନ,
ଯାଦବ ଗଣ ମଧ୍ୟେ ଏହୁ ଗ୍ୟାନ,
ଏମାନେହେଁ ଯହିଁ
ମନ ନ ଜାଣିଲେ ପାରୁଶେ ଥାଇ । ୭ ।
ସ୍ତ୍ରିଶ୍ର ମଧ୍ୟରେ ବଡ଼ପାଟ ମୁହିଁ,
ମୋହର ପରେ ଆଉ ଯେ ବଲ୍ଲଭ,
ଏକୁ ଆରେକ ରୂପ ଗୁଣେ ସର,
ଏହାଙ୍କ ମନ ନ ପାରିଲୁ ହର,
ଧିକ ଆମ୍ଭଗୁଣ,
ଜୀବନ ଯୌବନ ବୃଥା କାରଣ । ୮ ।
ସ୍ତ୍ରିଶ୍ର ଯେତକ ଛନ୍ତି ଏହିଠାରେ,
ଜଣେହେଁ କେହି ନାହିଁ ବାପଘରେ,
ମନ ସଙ୍ଗୀ ଆଉ ମୂର୍ଚ୍ଛିଛି କାହିଁ,
ଏଡ଼େ ବପତ୍ତିରେ କତିରେ ନାହିଁ,
କପାଁ ନ ଲେଉଡ଼ନ୍ତି ।
ପ୍ରଭୁମାନେ ହେଁ କାହାକୁ ଡରନ୍ତି । ୯ ।
ସେହି କେମନ୍ତେ ରହିଲା ମୂରୁଛି,
ଏହାଙ୍କ ବନ୍ଧୁ ଦେହ ଧରିଅଛି,
ଏଡ଼େ ଲୋକକୁ କ ଦୋଷେ ଛାଡ଼ିଲେ,
ଗୁଣ ହେଜ ବୁଝି ଏବେ ଲେଉଡ଼ିଲେ,
ଜାଣିମା କେମନ୍ତେ,
କେ ଅବା ଅଛି କାହିଁ କଉଁମତେ । ୧୦ ।

---

୭ । ବଳଦେବ—ବଳଭଦ୍ର । ଗ୍ୟାନ—ଜ୍ଞାନ । ପାରୁଶେ—ପାଖରେ ।
୮ । ବଡ଼ପାଟ—ପାଟରାଣୀ । ବଲ୍ଲଭ—ବଲ୍ଲଭା । ସର—ସମାନ ।
୯ । ଛନ୍ତି—ଅଛନ୍ତି । କତିରେ—ପାଖରେ ।
୧୦ । ଜାଣିମା—ଜାଣିବା । କଉଁମତେ—କେଉଁ ପ୍ରକାରେ ।

ଗୋପପୁରେ ଥିଲେ ଯେବଣ କାଳେ,
ନାନା କ୍ରୀଡ଼ାକଲେ ଗୋପୀଙ୍କ ମେଳେ;
ତହିଁ ଅଛୁ ଅବା କଉଁ ସୁହାଗୀ,
ଏହାଙ୍କ ମନୋହାରୀ ପ୍ରାଣସଙ୍ଗୀ,
ସେ ଶ୍ରେଷ୍ଠ ନାୟିକା,
ହୋଇଲେ ହୋଇ ସେ ଅବା ରାଧିକା । ୧୧ ।

ଯେତେ ହୋଇଲେ ଗଉଡ଼ୁଣୀ ନାରୀ,
ନ ଯୋଗାଇଛନ୍ତି ରାଜକୁମାରୀ,
ଏହି ତ ମନକୁ ନ ଆସଇ ନାହିଁ,
ସେ ପୁଣି ପରଯୁବତୀ ଅଟଇ,
ତା କାହିଁ ଭରିବେ,
ସେରନ୍ଧ୍ରା ହୋଇ କ ଘର କରିବେ । ୧୨ ।

ଷୋଳସସ୍ରଶଏ ଦେବ କୁମାରୀ,
ଶ୍ଲେଭେ ରାବଣ ବଳେ ନେଲା ହରି,
ବସ୍ତୁ ବରି ମନେ ବରି ଯୁବତୀ,
କେବେହେଁ ତାକୁ ନୋହେ ସନମତି,
ରାବଣ ଅନ୍ତରେ,
ପୁଣି ସେ ନାରୀ ଗଲେ ସ୍ୱର୍ଗପୁରେ । ୧୩ ।

ନାରକାସୁର ପୁଣି ନେଲା ହରି,
ଏହି ପ୍ରଭୁ ତାଙ୍କ ମାନ ଉଦ୍ଧାରି ।
ନାରକା ମାରି ଦ୍ୱାରକା ଆଣିଲେ,

---

୧୧ । ଯେବଣ—ଯେଉଁ । ସୁହାଗୀ—ସୌଭାଗ୍ୟବତୀ ।

୧୨ । ନଯୋଗାଇଛନ୍ତି—ସମାନ ହୋଇ ନାହାନ୍ତି, ପସନ୍ଦ ହୋଇ ନାହାନ୍ତି । ପରଯୁବତୀ—ଅନ୍ୟର ସ୍ତ୍ରୀ । ଭରିବେ—ରଖିବେ । ସେରନ୍ଧ୍ରା—ଗେଲବସର ।

୧୩ । ବରି— ବରଣକରି । ସନମତି—ରାଜି । ଅନ୍ତରେ—ବିନାଶ ପରେ ।

ସୁକୃତ ଦେଖି ତା ବଶ ହୋଇଲେ ।
ଏ ଯନ୍ତି ନ ରୁଚ,
ବଟପଯୁବତୀ କେମନ୍ତେ ରୁଚ । ୧୪ ।
ଗୋପକନ୍ୟା ବୋଲି ବୋଲନ୍ତି ଯାହା,
କେମନ୍ତେ ଅବା ନ ଲୋଡ଼ିବେ ତାହା,
ଘର କରୁଛନ୍ତି ଭର୍ତ୍ତନ୍ତି ଯେବେ,
ବାଣ୍ଡ ଗୁଆଳୀ ବଟପ କାମିନୀ,
ବାଳକାଳ ସଙ୍ଗ,
କେବଳ ତନ୍ତି ଥିବ କଥାରଙ୍ଗ । ୧୫ ।
କି ଅବା ହୋଇଲେ ହୋଇବ ଏହି,
ବସ୍ତୁରେ ଆଉ ଆନ ନ ଦଶଇ,
ବିସ୍ତାର କଥା କଢ଼ାଇ ଆଣିମା,
ତେବେ ସିନା ଏଥି ତଥ୍ୟ ଜାଣିମା,
ମହିମା ଯାହାର,
ବ୍ରହ୍ମାଦି ଶଙ୍କରଙ୍କୁ ଅଗୋଚର । ୧୬ ।
ଏସନ ହୃଦରେ ପାଞ୍ଚି ସୁନ୍ଦରୀ,
କହନ୍ତି ପ୍ରଭୁ ଶ୍ରୀଚରଣ ଧରି,
ଶୁଣ ମହାପ୍ରଭୁ କରୁଣାନିଧି,
ଏ ତ ଅତିବଡ଼ ଦୁର୍ଗମ ସନ୍ଧି,
ଫେଡ଼ି କହ ତୁମ୍ଭେ,
ଯେମନ୍ତେ ପରତେ ପାଇବୁ ଆମ୍ଭେ । ୧୭ ।

---

୧୪ । ବଟପ ଯୁବତୀ—ଭ୍ରଷ୍ଟା ସ୍ତ୍ରୀ ।

୧୫ । ଭର୍ତ୍ତନ୍ତି—ସ୍ୱାମୀମାନଙ୍କୁ । ଗୁଆଳୀ—ଗୋପାଳୁଣୀ ।

୧୬ । ଆନ—ଅନ୍ୟ । କଢ଼ାଇ ଆଣିମା—ବାହାର କରିବା । ତଥ୍ୟ—ବିଷୟ, ଗୂଢ଼କଥା । ଅଗୋଚର—ଅଜଣା ।

୧୭ । ପାଞ୍ଚି—ପାଞ୍ଚିକରି, ବିଚାର କରି । କରୁଣାନିଧି—ଦୟାସାଗର । ଦୁର୍ଗମ—କଠିଣ । ସନ୍ଧି—ଗୂଢ଼ତତ୍ତ୍ୱ । ଫେଡ଼ି—ଫିଟାଇ । ପରତେ—ବିଶ୍ୱାସ ।

ପ୍ରଭୁଙ୍କ ମନକୁ ବନ୍ଧନ୍ତି ଯେହୁ,
ଆମ୍ଭ ଉପରେ ଅଧିକାରୀ ସେହୁ,
ତାଙ୍କଠାରୁ ଶିଖି ଶ୍ରୀଅଙ୍ଗ ସେବା,
ପ୍ରଭୁ ମନ ଚୋରି ଜାଣି ମୁଁ ଅବା,
କୃପାକର ତୁମ୍ଭେ,
ତାଙ୍କ ଚରଣେ ଖଟିଥିବୁ ଆମ୍ଭେ । ୧୮ ।

ତାମ କେବଣ କାହିଁ ତାଙ୍କ ବାସ,
କି ଅବା ସ୍ତ୍ରୀ କି ଅବା ପୁରୁଷ,
କହିବା ଗୋସାଇଁ ଏଥି ସନ୍ଧାନ,
ପୁଣି ସନ୍ଦେହ ଘୁଞ୍ଚୁ ମୋର ମନ,
ମୁଁ ଦାସୀ ତୁମ୍ଭର,
ମୋହୋ ଠାରେ କପଟ କର ଅନ୍ତର । ୧୯ ।

ଶୁଣି ସନ୍ତୋଷ ହୋଇଲେ ମୁରାରି,
ଅନ୍ତର୍ଗତ କଥା ଅନ୍ତେ ସଂହରି
ଶୁଣ ଗୁଣବତୀ ପ୍ରାଣର ପ୍ରିୟା
ଯାହା ପଚାରିଲ କହିବୁଁ ତାହା,
ତୁମ୍ଭ ହିତ କଥା,
ବୁଝିଲେ ଯେବେ ମନେ ନାହିଁ ବ୍ୟଥା । ୨୦ ।

ଏବେ ଆଜ ତୁମ୍ଭ ପୁରକୁ ଯାଅ,
ଯୁବତୀମାନଙ୍କୁ ବୁଝାଇ କହ,
ସମସ୍ତେ ପୁଣି ତ ହୋଇବ ଶ୍ରୋତା,

---

୧୮ । ବନ୍ଧନ୍ତି—ବାନ୍ଧନ୍ତି ।

୧୯ । ନାମ କେବଣ—କି ନାମ, ନାମ କଅଣ । ବାସ—ନିବାସ, ଘର । ଏଥି ସନ୍ଧାନ—ଏହାର ସନ୍ଧାନ, ଏହାର ବୃତ୍ତାନ୍ତ । ଅନ୍ତର—କପଟ ।

୨୦ । ଅନ୍ତର୍ଗତ କଥା—ଭିତର କଥା, ଅନ୍ତରର କଥା । ଅନ୍ତେ—ଅନ୍ତରରେ, ଶେଷରେ । ସଂହରି—ସଂଯତ କରି ।

କାହୁଁ ଗୁଣ୍ଡିବ ଆମ୍ଭ ମନ ବ୍ୟଥା,
ତୁମ୍ଭେ ହେଁ ତରିବ,
ତୁମ୍ଭ ଯୋଗୁ ଆମ୍ଭ ତାପ ହାରିବ । ୨ ।

ଶ୍ରୀମୁଖ ସନ୍ଦେଶ ପାଇ ସୁନ୍ଦରୀ,
ବିଜୟ କଲେ ସତ୍ୟଭାମା ପୁରୀ,
ସବୁ ସପତ୍ନୀମାନଙ୍କୁ ରାଇ;
ପ୍ରଭୁ ଚରିତ କହିଲେ ବୁଝାଇ,
ସବହେଁ ଚକିତ,
ସେହି କଥାରେ ପୂହାଇଲେ ରାତ । ୨୨ ।

କଶି ପାଇଲା, ନିତ୍ୟ କର୍ମ ସାରି,
ପ୍ରଭୁ ଗ୍ଲମୁକୁ ଚଳିଲେ ସୁନ୍ଦରୀ,
ପୁରି ଉଭାରି ଦର୍ଶନ କରନ୍ତି,
ଶ୍ରୀମୁଖ ଦର୍ଶନେ ପାପ ହରନ୍ତି,
ପ୍ରିୟା ପତି ପାଦେ
ଶରଣ ଗଲା ଦେବ ଅପ୍ରମାଦେ । ୨୩ ।

ଇତିଶ୍ରୀ ରହସ୍ୟମଞ୍ଜରୀ ତୃତୀୟ ଛାନ୍ଦେ,
ଯୁବତୀରହାନ୍ଧ ଦଶନାଦ୍ଧ ବନ୍ଦେ,
ଚତୁର୍ଥଛାନ୍ଦ ବର୍ଣ୍ଣନେ କେବଣ କେବଣ
କହିବାକୁ ଆଜ୍ଞାଦେଉ ଶ୍ରୀଭଗବାନ ।

———

୨୧ । ତରିବ—ଉଦ୍ଧାରପାଇବ । ତାପ—କଷ୍ଟ । ହାରିବ—ଦୂରହେବ ।

୨୨ । ସନ୍ଦେଶ—ବାର୍ତ୍ତା । ସପତ୍ନୀ—ସଉତୁଣୀ । ରାଇ—ଡାକି । ସବହେଁ—ସମସ୍ତେ ।

୨୩ । ପାଇଲା—ପାହିଲା । ଉଭାରି—ଠିଆହୋଇ । ଦେବ—ଦେବଦୁର୍ଲଭ ଦାସ, କବି । ଅପ୍ରମାଦେ—ନିର୍ବିଘ୍ନରେ ।

## ଚତୁର୍ଥ ଛାନ୍ଦ

ଭୂପାଳ ସ୍ୱରେଣ ଗୀୟତେ ।

ଜୟ ଜୟ ତୁ ଜୟ ପରମାନନ୍ଦ,
ଜୟ ଅନାଦ୍ୟ ଅଚ୍ୟୁତ ଆଦ୍ୟକନ୍ଦ । ୧ ।
ଜୟ ଜୟ ତୁ ଜୟ କରୁଣାସିନ୍ଧୁ,
ଜୟ ଯାଦବକୁଳ କୁମୁଦ-ଇନ୍ଦୁ । ୨ ।
ଜୟ ଜୟ ତୁ ଜୟ ସଙ୍କଟସେତ୍ତା,
ଜୟ ଶରଣରକ୍ଷଣ ଯାର ବାନା । ୩ ।
ଜୟ ଜୟ ତୁ ଜୟ ଦେବାଧିରାଜ,
(ଜୟ) ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ । ୪ ।
ଜୟ ଜୟ ତୁ ଜୟ ପରମଶୋଭା,
ଜୟ କୋଟିକନ୍ଦର୍ପ-ମୂରତି-ଆଭା । ୫ ।
ଜୟ ଜୟ ତୁ ଜୟ ବୈକୁଣ୍ଠ ବାସ,
ଜୟ ମୁନିଙ୍କ ମନ-ସରସୀ ହଂସ । ୬ ।

---

## ଚତୁର୍ଥ ଛାନ୍ଦ

୧ । ପରମାନନ୍ଦ—ପରମ ଆନନ୍ଦର ସ୍ଥଳ, ଭଗବାନ । ଅନାଦ୍ୟ—ଯାହାର ଆଦ୍ୟ ନାହିଁ । ଅଚ୍ୟୁତ—ଯାହାର ସ୍ଖଳନ ନାହିଁ, ଭଗବାନ । ଆଦ୍ୟକନ୍ଦ—ଆଦ୍ୟମୂଳ, ଭଗବାନ ।

୨ । କରୁଣାସିନ୍ଧୁ—ଦୟାସାଗର । ଯାଦବକୁଳ କୁମୁଦଇନ୍ଦୁ—ଯାଦବକୁଳ କୁମୁଦ ହେଲେ ତାହାର ଇନ୍ଦୁ ସଦୃଶ, ଅର୍ଥାତ୍ ଯାଦବକୁଳଚନ୍ଦ୍ରମା ଶ୍ରୀକୃଷ୍ଣ ।

୩ । ସଙ୍କଟସେତ୍ତା—ବିପଦର ରକ୍ଷାକର୍ତ୍ତା । ଶରଣରକ୍ଷଣ—ଶରଣାଗତଙ୍କୁ ଯେ ରକ୍ଷାକରେ । ବାନା—ପତାକା , ଧ୍ୱଜା ।

୪ । ଦେବାଧିରାଜ—ଦେବଶ୍ରେଷ୍ଠ ।

୫ । ଆଭା—ଶୋଭା ।

୬ । ବୈକୁଣ୍ଠବାସ—ବୈକୁଣ୍ଠବାସୀ । ମନସରସୀ ହଂସ—ମନରୂପକ ସରସୀର ହଂସ ।

ଜୟ ଜୟ ତୁ ଜୟ ଗରବଗଞ୍ଜା,
ଜୟ ଦନୁଜକୁଳ-ପ୍ରବଳ-ଭଞ୍ଜା । ୭ ।
ଜୟ ଜୟ ତୁ ଜୟ ପୁରୁଷବର,
ଜୟ ଯାର କଙ୍କର ବ୍ରହ୍ମାଦ ସୁର । ୮ ।
ଜୟ ଜୟ ତୁ ଜୟ ବବୁଧ ବରେ,
ଜୟ ଅଚ୍ୟୁତାଗ୍ରଜ-ଅନୁଜ-ପ୍ରବେ । ୯ ।
ଜୟ ଜୟ ତୁ ଜୟ ମହିମାମେରୁ,
ଜୟ ଭଗତ ନିମନ୍ତେ ଅବତରୁ । ୧୦ ।
ଜୟ ମୀନମୂରତ ଜଳଧିବ୍ୟାପୀ,
ଜୟ କୁରୁମ ବରାହ ମହାରୂପୀ । ୧୧ ।
ଜୟ ନରକେଶରୀ ବାମନ ହରି,
ଜୟ ପରଶୁଧର କୋଦଣ୍ଡଧାରୀ । ୧୨ ।
ଜୟ ହଳଧରରୂପ ତୁମ୍ଭେ ସ୍ୱାମୀ,
ଜୟ ବଉଧ କଲଙ୍କି ଅନ୍ତର୍ଯ୍ୟାମୀ । ୧୩ ।

---

୭ । ଗରବ ଗଞ୍ଜା—ଗର୍ବଗଞ୍ଜନକାରୀ । ଦନୁଜ କୁଳ—ଅସୁର କୁଳ । ପ୍ରବଳ ଭଞ୍ଜା—ଶକ୍ତ ଭଙ୍ଗକାରୀ ।

୮ । ପୁରୁଷ ବର—ପୁରୁଷ ଶ୍ରେଷ୍ଠ । କଙ୍କର—ଦାସ । ସୁର—ଦେବତା ।

୯ । ବବୁଧ ବରେ—ଦେବତାମାନଙ୍କର ପ୍ରଭୁ । ଅଚ୍ୟୁତାଗ୍ରଜ ଅନୁଜ—ଅଚ୍ୟୁତ ଜ୍ୟେଷ୍ଠଭ୍ରାତାଙ୍କର କନିଷ୍ଠଭ୍ରାତା ।

୧୦ । ମହିମା ମେରୁ—ମହା ମହିମ । ଭଗତ—ଭକ୍ତ । ଅବତରୁ—ଅବତାର ଗ୍ରହଣ କରୁ ।

୧୧ । ମୀନ ମୂରତ—ମୀନ ଅବତାର । ଜଳଧିବ୍ୟାପୀ—ଜଳଧିରେ ବ୍ୟାପ୍ତ । କୁରୁମ—କୂର୍ମ ଅବତାର । ବରାହ— ବରାହଅବତାର ।

୧୨ । ନର କେଶରୀ—ନୃସିଂହ ଅବତାର । ବାମନ—ବାମନ ଅବତାର । ପରଶୁଧର—କୁଠାର ଧାରୀ । କୋଦଣ୍ଡ ଧାରୀ—ଧନୁର୍ଦ୍ଧର । ଏଠାରେ ପରଶୁଧର, ପରଶୁରାମ ଓ କୋଦଣ୍ଡଧାରୀ ରାମ ଅବତାରକୁ ଲକ୍ଷ୍ୟ କରାଯାଇ ଅଛି ।

୧୩ । ହଳଧର – ବଳରାମ । ବଉଧ—ବୌଦ୍ଧଅବତାର । କଲଙ୍କି—କଲ୍କି ଅବତାର । ଅନ୍ତର୍ଯ୍ୟାମୀ—ଯେ ଅନ୍ତରର ସବୁକଥା ଜାଣନ୍ତି, ଭଗବାନ ।

ଜୟ ବଇଲୋଚନ-ଚକ୍ଷୁର ଝଙ୍କା,
ଜୟ ରାବଣ ମାର ବସାଅ ଲଙ୍କା । ୧୪ ।
ଜୟ ପୂତନାଥନ ପରାଣ ପିଆ,
ଜୟ ପାଦେ ଶକଟା ପରାଣ ନିଆ । ୧୫ ।
ଜୟ ଭୁ ବକାଚିର ବଚ୍ଛ କଚଡ଼ା,
ଜୟ ସୋହୋଡ଼ ଷଣ୍ଢ-ଗିରବ ମୋଡ଼ା । ୧୬ ।
ଜୟ ଅଜଗର ବର ମୁଣ୍ଡ ଫୋଡ଼ା,
ଜୟ କାଳନ୍ଦୀ-କାଳି-ମଉଳିଚଡ଼ା । ୧୭ ।
ଜୟ ଇନ୍ଦ୍ର ବିବାଦେ ମନ୍ଦରଧର,
ଜୟ କେଶୀଦଇତ ମନ୍ଥନମର । ୧୮ ।
ଜୟ କୁଜସଳଖା ମାତୁଳପିଠା,
ଜୟ ମାଲମାରୁଆ ମଉଳା-ଲୋଟା । ୧୯ ।

---

୧୪ । ବଇଲୋଚନ—ପ୍ରହ୍ଲାଦଙ୍କ ପୁତ୍ର ବୈରୋଚନ; ମାଳତୀ କନ୍ୟା ରୂପରେ ବିଷ୍ଣୁ ତାଙ୍କୁ ସଂହାର କରିଥିଲେ । ଚକ୍ଷୁର ଝଙ୍କା—କେଶକୁ ଯେ ଟାଣିଥିଲେ ।

୧୫ । ଶକଟା—ଶକଟାସୁର ।

୧୬ । ବକାଚିର—ବକାସୁରର ଅଣ୍ଟକୁ ଯେ ଚିରିଥିଲେ । ବଚ୍ଛା—ବତ୍ସାସୁର । ସୋହୋଡ଼—ଶୋଭନ । ଷଣ୍ଢାସୁର । ଗିରବ—ଗ୍ରୀବା, ବେକ ।

୧୭ । ଅଜଗର···ମୁଣ୍ଡଫୋଡ଼ା—ଶ୍ରେଷ୍ଠ ଅଜଗର ସର୍ପର ମସ୍ତକକୁ ଯେ ଛେଚିଥିଲେ । କାଳି—କାଳୀୟ ସର୍ପ । ମଉଳି—ମସ୍ତକ ।

୧୮ । ମନ୍ଦର ଧର—ମନ୍ଦର ପର୍ବତ ଧାରୀ । କେଶୀ···ମନ୍ଥନ—ମର୍ଦ୍ଦି—ଶ୍ରୀକୃଷ୍ଣ ଭଣ୍ଡୀରବନରେ କଂସର ବିଶ୍ୱସ୍ତ ଦୁର୍ଦ୍ଧର୍ଷ ଅନୁଚର କେଶୀକୁ ମାରିଥିଲେ ।

୧୯ । କୁଜସଳଖା—କୁବ୍ଜାର କୁଜକୁ ଯେ ସିଧା କରିଥିଲେ । ମାତୁଳପିଠା—କଂସର ଦ୍ୱାରା ମାତୁଳକୁ ଯେ ସଂହାର କରିଥିଲେ । ମାଲ ମାରୁଆ—କଂସର ମାଲମାନଙ୍କୁ ଯେ ମାରିଥିଲେ । ମଉଳା ଲୋଟ—ମାମୁଁଙ୍କୁ ଯେ ଲୋଟାଇ ଦେଇଥିଲେ, ଅର୍ଥାତ୍ କଂସକୁ ଯେ ବିନାଶ କରିଥିଲେ ।

ଜୟ ଅଶେଷ କୋଟି ବ୍ରହ୍ମାଣ୍ଡନାଥ,
ତୁମ୍ଭ ମହିମା କେହୁ କରିବ ଅନ୍ତ । ୨୦ ।
ଯାର ପାଦ ପଦ୍ମୁଁ ମକରନ୍ଦ ଝରି,
ଗଙ୍ଗାଜଳ ସ୍ୱରୂପେ ଜଗତ ତାରି । ୨୧ ।
ଏହି ପ୍ରକାରେ ଚରଣୁଁ ଶିର ଯାଏ,
କେତେଠାରୁ କେତେ କେତେ ଜାତ ହୋଇଛୁ । ୨୨ ।
ଜଳ ଥଳ ଅନଳ ପବନ ଶୂନ୍ୟ,
ବ୍ରହ୍ମା ଶଙ୍କର ଉମା ସୂରୁଯ ସୋମ । ୨୩ ।
ଯମ କୁବେର ଇନ୍ଦ୍ର ବରୁଣ ଆଦି,
କହି ଲୋଡ଼ିଲେ କଣ ହୋଇବ ବଧି । ୨୪ ।
ଏଡ଼େ ପ୍ରଭୁର କେହୁ ଜାଣିମ ହିୟା,
କୋଟି ବ୍ରହ୍ମାଣ୍ଡେ ହୋଟିଛୁ ଯାର ମାୟା । ୨୫ ।
ଆମ୍ଭେ କେବଳ ତୁମ୍ଭର ଦାସୀ,
ସେବା ନ ଜାଣୁ ଆଶ୍ରେ କରିଛୁ ଆସି । ୨୬ ।
ଜ୍ଞାନେ ଅଜ୍ଞାନେ ଯେତେ କରିଛୁ ଦୋଷ,
କ୍ଷମା କରିବା ପ୍ରଭୁ ଶରଣ ଦାସ । ୨୭ ।
ଯାହା ଆଜ୍ଞା ହୋଇଅଛି କହିବାକୁ,
ତାହା ସମସ୍ତେ ଆସିଛୁ ଶୁଣିବାକୁ । ୨୮ ।
ମହାପ୍ରଭୁଙ୍କର ଭଲ ଯେଉଁ କଥା,
ତାହା ଶୁଣି ଛୁଡ଼ିବ ସବୁର ବ୍ୟଥା । ୨୯ ।
ତୁମ୍ଭ ଚିନ୍ତାରେ ଆମ୍ଭେ ସକଳେ ଦୁଃଖୀ,
ପ୍ରଭୁ ପ୍ରସନ୍ନେ ଆମ୍ଭଙ୍କୁ କର ସୁଖୀ । ୩୦ ।
ଶୁଣି ସନ୍ତୋଷ ହୋଇଣ ପୀତବାସ,
କର ପ୍ରସାରି ବୋଇଲେ, ଆସ ଆସ । ୩୧ ।

---

୨୦ । ଅନ୍ତ—ଶେଷ । ୨୧ । ମକରନ୍ଦ—ପୁଷ୍ପମଧୁ । ତାରି—ତ୍ରାଣ କରି ।
ସୋମ—ଚନ୍ଦ୍ର ।
୨୫ । ହିୟା—ହୃଦୟ । ୨୬ । ଆଶ୍ରେ—ଆଶ୍ରୟ ।
୩୧ । ପୀତବାସ—ଭଗବାନ, ଶ୍ରୀକୃଷ୍ଣ ।

ପ୍ରଭୁ ହରଷମୁଖ ସୁନ୍ଦର ଦେଖି,
ଅଷ୍ଟ ପାରୁଶେ ବସିଲେ ଅଷ୍ଟ ସଖୀ । ୩୨ ।
ଯେତେ ଯୁବଣ ପଟଳ ପଟୁଆର ।
ସବୁ ରହିଲେ ପ୍ରଭୁ ପାରୁଶେ ପୂର । ୩୩ ।
ଅପସରକୁ ଆଜ୍ଞା ଦେବରାଜେ,
ରହିପଲଙ୍କେ କରଅଛନ୍ତି ବାଜେ । ୩୪ ।
ସବୁ ଠାକୁରାଣୀଙ୍କର ସ୍ତବ ଯାହା,
ଦେବଦୁର୍ଲଭ ଦାସ ପାଇଲୁ ତାହା । ୩୫ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଚତୁର୍ଥ ଛନ୍ଦେ,
ଦିବ୍ୟାଙ୍ଗନାବୃନ୍ଦ ସ୍ତବରାଜ ବନ୍ଦେ,
ପଞ୍ଚମଛନ୍ଦ ବର୍ଣ୍ଣିବେ କେବଣ ମହିମା,
କହିବାକୁ ଆଜ୍ଞାଦେଇ ଶ୍ରୀ ପୁରୁଷୋତ୍ତମା ।

—*—

୩୨ । ପାରୁଶେ—ପାଖରେ

୩୩ । ଯୁବଣପଟଳ—ଯୁବଣସମୂହ । ପଟୁଆର—ସେବକ ।

୩୪ । ଅପସର—ତକଥା । ସ୍ତବରାଜ—ଶ୍ରେଷ୍ଠସ୍ତବ ।

# ପଞ୍ଚମ ଛାନ୍ଦ

ରାଗ—ଚକ୍ରକେଳି

ଏଥୁ ଅନ୍ତରେ ଶୁଣିମା ସୁଜନ,
ରସ ରହସ୍ୟ-ମଞ୍ଜୁଷା ବିଧାନ । ୧ ।
ପ୍ରଭୁ ପ୍ରିୟାନ୍ତ ପାର୍ଶ୍ୱେ ବସାଇ
ତାଙ୍କୁ ସାତ୍ତ୍ୱିକ୍ୟଭାବରେ ମିଶାଇ । ୨ ।
ତୁମ୍ଭେ ଶୁଣ ରୁକ୍ମିଣୀ ଗୁଣବନ୍ତୀ,
ମିତ୍ର ବିନ୍ଦା ସୁନନ୍ଦା ଶଙ୍କାବତୀ । ୩ ।
ଲକ୍ଷ୍ମଣା ଶୁଣୀଲା ସିନ୍ଧୁ ସୁତା,
ଜାମ୍ବବତୀ ସତ୍ୟଭେ ଯେତେ କାନ୍ତା । ୪ ।
ସାତ ପାଟ ଉପରେ ଅଧିଷ୍ଠାତ୍ରୀ,
ତୁମ୍ଭେ ଭୀଷ୍ମକରାଜାଙ୍କ ସନ୍ତତି । ୫ ।
ଯାହା ପଚାରିଲେ କଥା ଦୁର୍ଲ୍ଲଭ,
ଶିବ ଉମା ଶୁଣିମାକୁ ସୁଲଭ । ୬ ।
ଦିବ୍ୟ ଶୁଦ୍ଧ ସାତ୍ତ୍ୱିକ୍ୟ ବୁଦ୍ଧି ଯାର,
ଏହା ଶୁଣି ତ ଶରଧା ମୋହର । ୭ ।
ତୁମ୍ଭେ ରାଜାଙ୍କ ଜେମା ରଜଗୁଣ,
ତୁମ୍ଭ ସଙ୍ଗେ କେ ଅଛୁ ବଡ଼ପଣ । ୮ ।

---

## ପଞ୍ଚମ ଛାନ୍ଦ

୧ । ଶୁଣିମା—ଶୁଣନ୍ତୁ ।

୨ । ପ୍ରିୟାନ୍ତ—ପ୍ରିୟମାନଙ୍କୁ । ସାତ୍ତ୍ୱିକ୍ୟଭାବ—ସାତ୍ତ୍ୱିକଭାବ, ସତ୍ତ୍ୱଗୁଣ ।

୫ । ସାତପାଟ—ସାତପାଟରାଣୀ । ଭୀଷ୍ମକ ରାଜା—ରୁକ୍ମିଣୀଙ୍କର ପିତା । ସନ୍ତତି
—କନ୍ୟା ।

ରାଧା ସାତ୍ତ୍ୱିକା, ରାଜସୀ ରୁକ୍ମଣୀ,
ଯାହା କହୁଛୁ ବେଦ ଅର୍ଥ ବାଣୀ । ୯ ।
ଏହା ଶୁଣି ସିଂହ ହୋଏ ଶୃଗାଳ,
ଶୃଗାଳ ହିଁ ହୋଏ ସିଂହ ପ୍ରବଳ । ୧୦ ।
ସିଂହ ଶୃଗାଳ ପଥର ମହିମା,
ପ୍ରେମ-ଭକ୍ତସ୍ୱାମାନେ ତା ଜାଣିମା । ୧୧ ।
ତୁମ୍ଭ ରଜଗୁଣ ଯେବେ ତେଜିବ,
ଶୁଦ୍ଧ ଶାତ୍ତ୍ୱିକ୍ୟ ଭାବରେ ଭଜିବ । ୧୨ ।
ତେବେ ଲଭିବ ସୁଧାମୟେ ରସ,
ହିଂସା ବହିଲେ ସବୁ ଯିବ ନାଶ । ୧୩ ।
ତୁମ୍ଭେ ନ ବୁଝି ବୋଲ ନିକ କଥା,
ଆମ୍ଭେ ମନରେ ପାଉଥାଉ ବ୍ୟଥା । ୧୪ ।
ଯେବେ ଶୁଦ୍ଧ ଚଇତନ୍ୟେ ଶୁଣିମ,
ହେଜ ବୁଝି କଥା ମନେ ଗୁଣିମ । ୧୫ ।
ତେବେ କହିବା ଅନ୍ତର୍ଗତ କଥା,
ଯହିଁ ପାଇଁ ଆମ୍ଭେ ଏଡ଼େ ଅବସ୍ଥା । ୧୬ ।
ଗୋପୀ ପ୍ରେମ ମାହାତ୍ମ୍ୟ ନାମେ ପାଠ,
ଆଦ ପୁରାଣ ବାଣୀ ମଧ୍ୟେ ଶ୍ରେଷ୍ଠ । ୧୭ ।
ପ୍ରେମ-ଭକ୍ତସ୍ୱାମାନଙ୍କର ଆସ୍ଥା,
ଯତ୍ନ କରି ମୁଁ ଥୋଇଅଛୁ ଯଥା । ୧୮ ।

---

୯ । ରାଧାସାତ୍ତ୍ୱିକା—ରାଧାଙ୍କର ସାତ୍ତ୍ୱିକ ଭାବ । ରାଜସୀ ରୁକ୍ମଣୀ—ରୁକ୍ମଣୀଙ୍କର ରାଜସିକ ଭାବ । ବେଦ ଅର୍ଥବାଣୀ—ଅଥର୍ବବେଦ ବେଦ ।

୧୧ । ପ୍ରେମ-ଭକ୍ତସ୍ୱାମାନେ—ଯେଉଁମାନେ ପ୍ରେମଭକ୍ତ ମାର୍ଗର ପଥିକ ।

୧୩ । ସୁଧାମୟେ—ଅମୃତମୟ ।

୧୫ । ଚଇତନ୍ୟ—ଚେତନା ସହ । ହେଜ—ଚିନ୍ତା କରି । ଗୁଣିମ—ବିଚାର କରିବ ।

୧୬ । ଅନ୍ତର୍ଗତ କଥା—ଅନ୍ତରର କଥା, ଗୁପ୍ତ କଥା ।

ଗୋପୀ ଗୁଣ ପରମାଣି ଲହୁଛୁ,
ଆଜଯାଏ କାହାକୁ ନ କହୁଛୁ । ୧୯ ।
କହୁ ଲୋଡ଼ଲେ କେ ତାହା ବୁଝିବ,
ବିଧି ନିବନ୍ଧ ସଗୁଣେ ପୂଝିବ । ୨୦ ।
ତୁମ୍ଭ ଆକଟ କଥା ଶ୍ରୋତା ଦେଖି,
କହୁଅଛୁଟି ଶୁଣ ପ୍ରାଣସଖୀ । ୨୧ ।
ବ୍ରହ୍ମା ରୁଦ୍ର ଯୋଗୀନ୍ଦ୍ର ମୁନି ଯତି,
ନ ଜାଣନ୍ତି ଏମାନେ ମୋର ପ୍ରୀତି । ୨୨ ।
ମନ ଜୀବନ ଆତ୍ମା ପରଗୁଣ,
ଲକ୍ଷ୍ମୀ ସହିତେ ନ ଜାଣନ୍ତି ପୁଣ । ୨୩ ।
ମୋର ବୈକୁଣ୍ଠେ ମନ ନ ରହଇ,
ସ୍ୱର୍ଗ ବସ୍ୱର୍ଗ ଯେତେ ସୁସ୍ଥ ଭୂଇଁ । ୨୪ ।
ଗୋପୀ ବିହାରସ୍ଥଳୀ ଯେଉଁ ସ୍ଥାନ,
କୋଟି ବୈକୁଣ୍ଠ ନୁହଇ ସମାନ । ୨୫ ।
ସେହିସ୍ଥାନ ସୁମରି ମୋର ମନ,
ନିରନ୍ତର ହେଉଥାଇ ଉଛନ୍ନ । ୨୬ ।
ଗୋପୀ ବିନୁ ଜୀବନ ଏତେ ସରି,
ଫେଡ଼ି କହିଲୁ ଶୁଣ ସର୍ବନାଶୀ । ୨୭ ।
ଯମ, ନିୟମ, ଆସନ, ପ୍ରାଣାମ;
ପ୍ରତ୍ୟ ଆହାର, ଧ୍ୟାନକ, ଧାରଣ । ୨୮ ।

---

୧୯ । ଲହୁଛୁ—ଲେଖି ରଖିଛୁ ।
୨୦ । ବିଧି-ନିବନ୍ଧ—ବିଧି ନିୟମ ।
୨୧ । ଆକଟ—ଅଧିକାର ପୂର୍ଣ୍ଣ ଆଗ୍ରହ ।
୨୨ । ରୁଦ୍ର—ଶିବ । ଯୋଗୀନ୍ଦ୍ର—ଯୋଗୀ ଶ୍ରେଷ୍ଠ ।
୨୬ । ସୁମରି—ସ୍ମରଣକରି
୨୭ । ଫେଡ଼ି—ଖୋଲି ।
୨୮ । ଯମ, ପ୍ରତ୍ୟାହାର, ନିୟମ, ଆସନ, ପ୍ରାଣାୟାମ, ଧ୍ୟାନ, ଧାରଣା, ସମାଧି—ଯୋଗର ଅଷ୍ଟଅଙ୍ଗ ।

ଏହୁ ସମାଧି ଆଦ୍ୟ ଅଷ୍ଟଯୋଗେ,
ସିଦ୍ଧ ଯୋଗୀମାନଙ୍କ ଆତ୍ମାଭୋଗ । ୨୯ ।
ଯୋଗ ସାଧି କୋଟି କଳ୍ପ ଯାଅନ୍ତି,
ଗୋପୀ ଭାବକୁ ଏ ସରି ନୁହନ୍ତି । ୩୦ ।
ଗୋପୀ ବିନୁ କେ ଜାଣେ ମୋର ମନ,
ସେବା ଧର୍ମ ଆଶ୍ରୁର କୁଳ କର୍ମ । ୩୧ ।
ମନଗତ ପର ଯା ପରାକର୍ମ,
ଗୋପୀମାନଙ୍କ ବିନୁ କେ ଜାଣିମ । ୩୨ ।
ଯଜ୍ଞ ଦାନ ତପ କର୍ମ ଆଚରି,
ନାନାତୀର୍ଥ ବ୍ରତ ନିରାଆହାରି । ୩୩ ।
ଏମାନେ ହେ ମୋତେ କାହୁଁ ପାଇବେ,
ଯେତେ ଶ୍ରମ ପାଇ ଆତ୍ମା ଦହିବେ । ୩୪ ।
ବେଦ ଶାହାସ୍ତ୍ର ପୁରାଣ ଉତ୍ତର,
କେହି ନ ରୁଚଇ ମୋର ଶରୀର । ୩୫ ।
ଗୋପୀମାନଙ୍କ ଭର୍ତ୍ସନା ବଚନ,
ମୋର ମନ ଜୀବନକୁ ରୋଚନ । ୩୬ ।
ତାଙ୍କ ଗାଳି ଭିତରେ ଯେତେ ଭାବ,
ବ୍ରହ୍ମା ବେଦେ କରିବ କାହୁଁ ଠାବ । ୩୭ ।
ମୋର ମାୟାରେ ମୋହିତ ଜଗତ,
ଗୋପୀ ମାୟାରେ ମୁହିଁ ସେହିମତ । ୩୮ ।

---

୨୯ । ଆତ୍ମାଭୋଗ—ଆତ୍ମାର ଆନନ୍ଦ ।
୩୦ । ସରି—ସମାନ ।
୩୨ । ପରାକର୍ମ—ପରାକ୍ରମ, ଶକ୍ତି ।
୩୩ । ନିରାଆହାରି—ନିରାହାରୀ, ଉପବାସ କରି ଧର୍ମାଚରଣ କରିବା ବ୍ୟକ୍ତି ।
୩୪ । ଦହିବେ—କଷ୍ଟଦେବେ ।
୩୫ । ଶାହାସ୍ତ୍ର—ଶାସ୍ତ୍ର ।
୩୬ . ଭର୍ତ୍ସନାବଚନ—ଗାଳିକଥା । ରୋଚନ—ରୋଚକ, ରୁଚିକର ।
୩୭ । ଠାବ—ସନ୍ଧାନ ।
୩୮ । ସେହିମତ—ସେହିପ୍ରକାର ।

ଯେହ୍ନ ଯଗତ ଜନଙ୍କ ବନତ,
ମୋର ଅନୁଗ୍ରହ ବାଞ୍ଛା କରନ୍ତୁ । ୩୯ ।
ଗୋପୀ ପ୍ରେମ ଅନୁଗ୍ରହ ଆକଞ୍ଛା
ସେହ୍ନମତ ମୋ ନିରନ୍ତରେ ବାଞ୍ଛା । ୪୦ ।
କେତେ କହ୍ନବା ବଚନେ ବିସ୍ତାର,
ଜୀବ ଥିବ କସେ ଗୁଣ ସୁମର । ୪୧ ।
ମୋର ନାସ୍ତିକେ ସେ କ ଜୀଇଥିବେ,
ଫେଡ଼ି କାହା ଆଗେ ଦୁଃଖ କହ୍ନବେ । ୪୨ ।
କେହ୍ନ ରଖିବ ମୋତେ ତାଙ୍କୁ ଦେଇ,
ଏହା ଅଜିଲି ଏତେକାଳେ ମୁହିଁ । ୪୩ ।
ମୋତେ ସମ୍ଭାଳନ୍ତା ଥିଲ ଜଣେକ,
ତାହା ପଗ କେ ହୋଇବ କ୍ଷଣେକ । ୪୪ ।
ମୋର ବେଦନା ସେ ଅଙ୍ଗେ କାଞ୍ଛଇ ।
ମୋର ନିମନ୍ତେ ପ୍ରାଣ ମୁରୁଛଇ । ୪୫ ।
ଲୁଛି ଯାଇଁ ତାହାର ହ୍ନଚପଣ,
ମୋର ତନୁ ଜୀବନ ଧନ ପ୍ରାଣ । ୪୬ ।
କୋଟି ବ୍ରହ୍ମାଙ୍କୁ ଜିଣି ଯାର ବୁଦ୍ଧି,
କୋଟି ଦୁର୍ଗା ଯାହାକୁ ସେବ ସିଦ୍ଧି । ୪୭ ।
କୋଟି ରମ୍ଭା ଉର୍ବଶୀ ରୂପେ ଗଞ୍ଜେ,
ଯାକୁ ସେବନ୍ତି ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟେ । ୪୮ ।
କୋଟି ବ୍ରହ୍ମାଣ୍ଡେ ଯେହ୍ନ ଅଧିକାରୀ,
ତାର ମହ୍ନମା କେହ୍ନ କହ୍ନ ପାର । ୪୯ ।
'ରାଧା ଠାକୁରାଣୀଙ୍କ ପ୍ରାଣସଖୀ,
ତାଙ୍କ ଲଗି ସେ ନିରନ୍ତରେ ଦୁଃଖୀ । ୫୦ ।

---

୪୦ । ଆକଞ୍ଛା—ଆକାଂକ୍ଷା ।
୪୨ । ନାସ୍ତିକେ—ନଥିବାରେ, ଅଭାବରେ ।
୪୫ । କାଞ୍ଛଇ—ଅଭିଳାଷ କରେ ।
୪୬ । 'ଲୁଛିଯାଇ—ଦୁଃଖରେ ନମ୍ର ହୋଇ ।

ତାଙ୍କୁ କ ପ୍ରକାରେ ଥିବ ଜାଆଇ,
କଉଁ ସଜୀବକରଣୀ ପିଆଇ । ୫୧ ।
କ୍ଷଣେ ନ ଦେଖି ମୋତେ ଯେ ନୟନେ;
କାଇ ହୋଇ ବୁଲନ୍ତ ବନେ ବନେ । ୫୨ ।
ଏତେ ଦିନ ସେ କାହିଁଥିବ ଜୀଇ,
ସଖୀ ମରିବ ତାଙ୍କ ଦୁଖ ଗୁହିଁ । ୫୩ ।
ସଖୀ ଜଗିରେ ଗୋପୀହିଁ ମରିବେ,
ଆଉ କାହା ଗୁହିଁ ଦେହ ଧରିବେ । ୫୪ ।
ଯେଉଁକାଳେ ମୁଁ ରାସକ୍ରୀଡ଼ା କଲି,
ହେଳେ ଠାକୁରାଣୀକ ନ ଲେଖିଲି । ୫୫ ।
ଏତେ ମାତ୍ରକେ ଭେଳା ଭସାଇଲି,
ଅଭିମାନେ ଜୀବନେ ମରିଥିଲି । ୫୬ ।
ନାନାପ୍ରକାରେ ହୋଇଲ ନବମା,
ନବ ଟଳିଲେ ହୁଅନ୍ତା ଦଶମା । ୫୭ ।
ଦଶ ମାତ୍ରକେ କଥା ସରିଯାନ୍ତା,
ତୁମ୍ଭ ଯାଏ କମ୍ପା କଥା ଥାଆନ୍ତା । ୫୮ ।
ନାନା ଉପାୟମତେ ତାର ସଖୀ,
ତାର ଜୀବନ ମାତ୍ର ଥିଲି ରଖି । ୫୯ ।
ତହିଁ ଯେମନ୍ତେ ହୋଇଲି ବେବସ୍ଥା,
ସେ କ କହିଲେ ସରିବ ଅବସ୍ଥା । ୬୦ ।

---

୫୧ । ସଞ୍ଜୀବ କରଣୀ—ସଞ୍ଜୀବନୀ ।
୫୨ । କାଇ—ବାଉଳି ।
୫୪ । କାହା—କାହାକୁ । ଦେହ ଧରିବେ—ବଞ୍ଚି ରହିବେ ।
୫୫ । ହେଳେ—ହେଳାରେ, ଅବହେଳାରେ ।
୫୭ । ନବମା—କାମର ନବମ ଦଶା, ମୂର୍ଚ୍ଛା । ଟଳିଲେ—ଟପିଲେ । ଦଶମା—କାମର ଦଶମଦଶା, ମୃତ୍ୟୁ ।
୬୦ । ବେବସ୍ଥା—ବ୍ୟବସ୍ଥା ।

କ୍ଷଣେ କ୍ଷଣେ ଯେ ପ୍ରମାଦ କରଇ,
ସେ କ ଏତେହଦନେ ଦେହ ଧରଇ । ୬୧ ।
କଉଁ ଦଇବ ମୋତେ ଛନ୍ଦଗଲ୍ଲ,
କାହ୍ନୁ ଆଣିରେ କାହ୍ନୁଁ ବନ୍ଦୀକଲ୍ଲ । ୬୨ ।
ଯାଇ ଆସିବ ବୋଲ ମୁଁ ଅଇଲ,
ଆସି ଗହ୍ୱରେ ପଡ଼ି ରହିଲ । ୬୩ ।
କଥା ବାଣ୍ଡିଲେ ନ ଆସଇ କଣ୍ଠ,
ବୁଦ୍ଧି ହରଇ ଏବେ ଖଣ୍ଡୁଅଛୁ । ୬୪ ।
ଏତେ କହି କପାଳେ କର ମାରି,
ମୂର୍ଚ୍ଛା ଯାଇ ପଡ଼ିଲେ ବସୁନ୍ଧରା । ୬୫ ।
ଧାଇଁ ଧଇଲେ ଅଷ୍ଟପାଟବଂଶୀ,
କ୍ରୋଧେ ଗଦଗଦ ହୋଇ ସୁକେଶୀ । ୬୬ ।
ସିଞ୍ଚି ବଞ୍ଚଣ ସଚେତ କରନ୍ତି,
ନାନା ପ୍ରକାରେଣ ମୋହ ହରନ୍ତି । ୬୭ ।
ଗନ୍ଧ ଚନ୍ଦନ କର୍ପୂର କସ୍ତୁରୀ,
ପ୍ରଭୁ ଶ୍ରୀଅଙ୍ଗେ ବୋଳନ୍ତି ଚତୁରୀ । ୬୮ ।
କେଶ ବାସ ସୁବେଶ କରି ବାଳୀ,
କେତି ଚ୍ୱମର ଆଲଟନ୍ତି ଢାଳି । ୬୯ ।
ଦ୍ରବ୍ୟ ଆସନେ ବଜେ କରାଇଲେ,
ପାଟ ଅପସରେ ଆଉଜାଇଲେ । ୭୦ ।

---

୬୧ । ପ୍ରମାଦ—ବିପତ୍ତି
୬୨ । ଛନ୍ଦିଗଲ୍ଲ—ବାନ୍ଧି ପକାଇଲ୍ଲ, କପଟରେ ପକାଇଲ୍ଲ ।
୬୩ । ଗହ୍ୱରେ—ଗହନରେ
୬୪ । ବାଣ୍ଡିଲେ—ଶେଷକଲେ, ବାହାର କଲେ ।
୬୫ । ବସୁନ୍ଧରା—ବସୁଧାରେ ।
୬୭ । ମୋହ ହରନ୍ତି—ମୋହ ଦୂରକରନ୍ତି ।
୬୯ । ଚ୍ୱମର ଆଲଟନ୍ତି—ଚ୍ୱମର ପକାନ୍ତି ।
୭୦ । ପାଟ ଅପସରେ—ଶ୍ରେଷ୍ଠ ତକିଆରେ ।

ତାଳ ମୃଦଙ୍ଗ ରବାବ ବୀଣା ବଂଶୀ,
ନୃତ୍ୟ, ଗୀତ ଆରମ୍ଭିଲେ ସୁକେଶୀ । ୭୧ ।
ପ୍ରଭୁ ଚମକ ଉଠେ ପୁଣ ପୁଣି,
ରାଧା ରାଧା ଉଚ୍ଚାର ମୁଖେ ବାଣୀ । ୭୨ ।
ଘଡ଼ି ଦୁଇରେ ସଳଖି ବସିଲେ,
ରୁକ୍ମିଣୀଙ୍କ ମୁଖ ଚୁମ୍ବି ହସିଲେ । ୭୩ ।
ପାଏ ପଡ଼ିଣ ଶୋଇ ଶୁଭ୍ର କେଶୀ,
ମୁଖେ ତାମ୍ବୁଳ ଯୋଗାଇଲେ ଆସି । ୭୪ ।
ଅଷ୍ଟ-ପାଟବଂଶୀ-ପତି-ଚରଣେ,
ଦେବ ଶରଣ ଗଲା ଅନୁକ୍ଷଣେ । ୭୫ ।

ଇତିଶ୍ରୀ ରହସ୍ୟ ମଞ୍ଜୁଷା ପଞ୍ଚମସ୍କନ୍ଧେ,
ଅନ୍ତର୍ଯ୍ୟାମୀ-ଅନ୍ତଃକରଣ-ଜ୍ଞାତ ବନ୍ଧେ,
ଷଷ୍ଠମସ୍କନ୍ଧ ବର୍ଣ୍ଣନେ କେବଣ କେବଣ ଗ୍ୟାଂନ
କହିବାକୁ ଆଜ୍ଞାହେଉ ଦେବକୀ ଦେବୀର ନାନ ।



---

୭୨ । ପୁଣ ପୁଣି—ପୁନଃ ପୁନଃ, ବାରମ୍ବାର ।
୭୪ । ପାଏ—ପାଦରେ । ଶୁଭ୍ରକେଶୀ—ଉଜ୍ଜ୍ୱଳ କେଶା । ତାମ୍ବୁଳ—ପାନ
୭୫ । ଅଷ୍ଟପାଟବଂଶୀପତି—ଶ୍ରୀକୃଷ୍ଣ । ଦେବ—ଦେବ ଦୁର୍ଲଭ ଦାସ, କବି । ଅନୁକ୍ଷଣେ—ପ୍ରତିମୁହୂର୍ତ୍ତରେ । ଅନ୍ତଃକରଣ—ହୃଦୟ । ଦେବକୀ ଦେବୀର ନାନ—ଦେବକୀଙ୍କର ପୁତ୍ର, ଶ୍ରୀକୃଷ୍ଣ ।



# ଷଷ୍ଠ ଛାନ୍ଦ

ମଙ୍ଗଳ-ଗୁଜ୍ଜରୀ ରାଗେଣ ଗୀୟତେ

(ରାମ ବିଭା ପ୍ରଥମ ଛାନ୍ଦରେ ଗାଇବ)

ପ୍ରଭୁଙ୍କ ଏସନ ଚରିତ ପ୍ରିୟାଗଣ ଦେଖି,
ସ୍ତମ୍ଭୀଭୂତ ହୋଇଣ ରହିଲେ ସବୁସଖୀ ଯେ । ୧ ।
ଲାଜେ ଲେଟ ଲେଟ ହୋଇ ରହିଲେ ତରୁଣୀ,
କାହାର ମୁଖରୁ ଫୁଟି ନ ଆସଇ ବାଣୀ ଯେ । ୨ ।
ରବାବ ବୀଣା ବଂଶୀ ତାଳ ମୃଦଙ୍ଗ ପକାଇ,
ଢଳିଣ ପଡ଼ିଲେ ମୁଣ୍ଡେ ମୁଣ୍ଡ ମାରି ହୋଇଯେ । ୩ ।
ଥାଇ ଥାଇ ଗଦଗଦ ହୋଇଣ ସୁନ୍ଦରୀ,
କାନ୍ଦଣ ଉଠିଲେ ଶୋକ ସମ୍ଭାଳି ନ ପାରି ଯେ । ୪ ।
କେହୁ ମାନଭରେଣ ବସିଲା ମଥା ପୋତି,
ସ୍ତମ୍ଭର ଉହାଡ଼େ କାନ୍ଦେ କେବଣ ଯୁବତୀ ଯେ । ୫ ।
ସଖୀଙ୍କର କ୍ରୋଧ ଦେଖି ଶ୍ରୀଷ୍ମ କନ୍ଦୁଜାଳୀ,
କର ଯୋଡ଼ ପଛକୁ ଠାରିଲେ ରହ ବୋଲି ଯେ । ୬ ।
ପ୍ରଭୁଙ୍କ ସମ୍ମୁଖେ ରହି ଶ୍ରୀମତୀ ରୁକ୍ମିଣୀ,
କରପଦ୍ମ ଯୋଡ଼ ଦେବା ପରୁରନ୍ତି ବାଣୀ ଯେ । ୭ ।
ଅଶେଷ ଈଶ୍ୱର ତୁମ୍ଭେ ଶୁଣ ଦେବରାଏ,
ପଚ୍ଚରି ଲୋଡ଼ଇ ନାଥ ଏକଇ କଥାଏ ଯେ । ୮ ।

---

## ଷଷ୍ଠ ଛାନ୍ଦ

୨ । ଲେଟ ଲେଟ ହୋଇ—ସଙ୍କୁଚିତା ହୋଇ ।
୫ । ସ୍ତମ୍ଭ—ଖୁଣ୍ଟ ।
୬ । ଶ୍ରୀଷ୍ମକନ୍ଦୁଜାଳୀ—ରୁକ୍ମିଣୀ । ଠାରିଲେ—ସଙ୍କେତ ଦେଲେ ।
୮ । ପଚ୍ଚରିଲୋଡ଼ଇ—ପଚ୍ଚରିବାକୁ ଚାହେଁ । ଏକଇ—ଗୋଟିଏ ।

କୋପ ନ କରିବ ଯେବେ ପ୍ରଭୁ ଜଗନ୍ନାଥ,
ଯାହା ପଚାରିବ ତାହା କହିବ ନିସ୍ତ ଯେ । ୯ ।
ପ୍ରଭୁ ବୋଲୁଛନ୍ତି ତୁମ୍ଭେ ଶୁଣ ପ୍ରାଣପ୍ରିୟା,
ନ୍ୟାୟକୁ କି ରୋଷ ଅଛି କପଟ ବୋଲ ଏହା ଗୋ । ୧୦ ।
ଯାହା ପଚାରିବ ସଖି କହିବଇଁ ସତ,
ତୁମ୍ଭ ମୁଖ ଶୁଣି ସଖି କରୁଛି ସ୍ୱୀକୃତ ଗୋ । ୧୧ ।
ବୋଲନ୍ତି ରୁକ୍ମଣୀ ତୁମ୍ଭେ କହୁଥିଲ ଯାହା,
ଲେଉଟାଇ ଶ୍ରୀମୁଖରେ ମୁଁ ପଚାରିବ ତାହା ହେ । ୧୨ ।
ବ୍ରହ୍ମା ରୁଦ୍ର ଚନ୍ଦ୍ର ସୂର୍ଯ୍ୟ ନାଗ ବିଦ୍ୟାଧର,
ଯମ ନଇରୁତ ଇନ୍ଦ୍ର ଅନଳ କୁବେର ହେ । ୧୩ ।
ବରୁଣ ପବନ ଆଦି ସିଦ୍ଧ ସୁପର୍ବାଣ,
ଏହି ନ ଜାଣିଲେ ତୁମ୍ଭ ଆତ୍ମା ପରିଗୁଣ ହେ । ୧୪ ।
ଧାର୍ମିକ ବିବେକ ଯୋଗୀ ଯତି ଦାନୀ ଧ୍ୟାନୀ,
ବ୍ରତନିଷ୍ଠ ବେଦାନ୍ତୀ ମଉନୀ ମୁନି ଜ୍ଞାନୀ ହେ । ୧୫ ।
ଏମାନେ ହେ ନ ଜାଣନ୍ତି ତୁମ୍ଭର ମରମ,
ସର୍ବକାଳେ ସେବାକରି ଯେତେ ଶ୍ରମ ଧର୍ମ ହେ । ୧୬ ।
ଏକମାତ୍ର ଗୋପିକା ଜାଣିଲେ ତୁମ୍ଭ ଗୁଣ,
ତାହାଙ୍କର ଗାଳି ତୁମ୍ଭେ ସ୍ତୁତି ପ୍ରାୟେ ମଣ ହେ । ୧୭ ।
ଏକାକରି ଗୋପିକା ତୁମ୍ଭଙ୍କୁ କୋଠ କଲେ,
ଆନ୍ୟମାନେ ଭଜି ତୁମ୍ଭ ଲେଶ ନ ପାଇଲେ ହେ । ୧୮ ।

---

୯ । ନିସ୍ତ—ନିଷ୍ଠୟ ।
୧୧ । ସ୍ୱୀକୃତ—ସ୍ୱୀକାର, ସତ୍ୟ ।
୧୨ । ଲେଉଟାଇ—ପୁନର୍ବାର ।
୧୪ । ସୁପର୍ବାଣ—ଦେବତା । ପରିଗୁଣ—ଅବସ୍ଥା, ଶୁଦ୍ଧତା ।
୧୬ । ମରମ—ମର୍ମ, ହୃଦୟ ।
୧୮ । କୋଠ—ନିଜ ନିଜର ଅଧିକାର ସାବ୍ୟସ୍ତ କଲେ । ଆନ୍ୟମାନେ—ଅନ୍ୟମାନେ
ଭଜି—ଭଜନ କରି, ଆରାଧନା କରି । ଲେଶ—ସାମାନ୍ୟମାତ୍ର ସନ୍ଧାନ

ସର୍ବ ସୁଖ ତେଜି ସେବା କରନ୍ତି ତୁମ୍ଭଙ୍କୁ,
କୋଟିଏ କଳ୍ପରେ କୃପା ନକର ତାହାଙ୍କୁ ହେ । ୧୯ ।
ଏମାନଙ୍କ କସ ଗତି ହୋଇବ ଗୋସାଇଁ
ଶ୍ରୁତିପଥେ ସେବା ତ ସଫଳ ଲେଖି ନାହିଁ ହେ । ୨୦ ।
ବୋଲନ୍ତି ମାଧବ ଶୁଣ ଯୁବତୀ ରତନ,
ଯେ ଯେଉଁ ବାଞ୍ଛାରେ ମୋତେ କରନ୍ତି ଅର୍ଚ୍ଚନା ଗୋ । ୨୧ ।
ସେ ଫଳ ପ୍ରାପତ ତାଙ୍କୁ ଶୁଣସି ମୃଗାକ୍ଷି,
ଏଥି ମଧ୍ୟେ ସନ୍ଧ ଧର୍ମ ଭିନ୍ନେ ଭିନ୍ନେ ଅଛି ଗୋ । ୨୨ ।
ଏମନ୍ତ ସେବାକୁ କୋଟି ମୁକ୍ତି ଦେଇ ପାର,
ବିନା ଗୋପୀଭାବେ ଭକ୍ତି ଦେଇତ ନ ପାର ଗୋ । ୨୩ ।
ଋଦଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର,
ସେ ଭକ୍ତି ଅଟଇ ଜୋଠ ଗୋପୀମାନଙ୍କର ଗୋ ୨୪ ।
ଗୋପୀଙ୍କ ଭଜନ ଭକ୍ତି ପ୍ରେମଭକ୍ତି ପାଇ,
ବିନା ପ୍ରେମ ଭକ୍ତିରେ ଦର୍ଶନ ମୋତେ ନାହିଁ ଗୋ । ୨୫ ।
ପ୍ରେମଭକ୍ତି ପ୍ରାପତ ଗୋପୀଙ୍କ ପରସନେ,
ପୁଂଲିଙ୍ଗ ପାଲଟି ସ୍ତ୍ରୀ ହୁଅଇ ତକ୍ଷଣେ ଗୋ । ୨୬ ।
ଅଙ୍ଗସିଦ୍ଧ ହୋଇଲେ ମୋ ପାରୁଶରେ ରହି,
କୋଟି କଳ୍ପ ଗଲେହେଁ ପଲକେ ତାଲୁ ନୋହି ଗୋ । ୨୭ ।
ପୁରୁଷ ଅଙ୍ଗରେ କେହୁ ଦର୍ଶନ କରିବ,
ମୁଣ୍ଡର ଉପରେ କେହୁ ମୁଣ୍ଡେକ ବହିବ ଗୋ । ୨୮ ।
ସ୍ତ୍ରୀ ବୃନ୍ଦ ମଧରେ ପୁରୁଷବର ମୁହିଁ,
ସେ ପୁରେ ପଶିବ କେ ପୁରୁଷଲିଙ୍ଗ ବହି ଗୋ । ୨୯ ।

---

୨୦ । ଶ୍ରୁତିପଥେ—ବେଦମାର୍ଗରେ, ଶୁଣିବାରେ
୨୨ । ଶୁଣସି—ଶୁଣ । ମୃଗାକ୍ଷି—ମୃଗାକ୍ଷ । ସନ୍ଧମର୍ମ—ଗୂପ୍ତ ରହସ୍ୟ ।
୨୬ । ପରସନେ—ପ୍ରସନ୍ନତାରେ ।
୨୭ । ଅଙ୍ଗସିଦ୍ଧ—ସିଦ୍ଧଅଙ୍ଗ, ପବିତ୍ର ଦେହ ।
୨୯ । ପୁରୁଷବର—ପୁରୁଷଶ୍ରେଷ୍ଠ, ପୁରୁଷୋତ୍ତମ ।

ମୋହବନ୍ତୁ ନାହିଁ ତହିଁ ଦୋସର ପୁରୁଷ,
ସୃଷ୍ଟି ବୃନ୍ଦ ବେଢ଼ି ମୋର ସେବନ୍ତି ପାରୁଶ ଗୋ । ୩୦ ।
ପ୍ରେମ-ପୂର୍ବ-ଭକ୍ତ୍ୟା ଲଭନ୍ତି ସେହୁ ସ୍ଥାନ,
ଆଉ ଭକ୍ତି ଦାସ୍ୟ ସଖ୍ୟ ବାତ୍ସଲ୍ୟ ଏ ଜାଣ ଗୋ । ୩୧ ।
ଏମାନେ ଲଭନ୍ତି ମୋର ବିଭୂତି ବିଭବ,
ଷୋଡ଼ଶ ବିଭୂତି ମଧ୍ୟେ ଯାର ଯହିଁ ଠାବ ଗୋ । ୩୨ ।
ଏଥିର ମୂଳ ବିଭୂତି ଅଛି ଯେଉଁ ସ୍ଥାନେ,
ସେ ମହାବିଭୂତି କାହିଁ ରଭିବେ ଏମାନେ ଗୋ । ୩୩ ।
ସେ ମୂଳ ବିଭୂତି ସ୍ୱାନୁଭୂତି ମହାଭୂତି,
ଗୋପିକା ପ୍ରସନ୍ନେ ଭକ୍ତ ସେ ତିନ-ଲଭନ୍ତି ଗୋ । ୩୪ ।
ସେ ମହାରସ ମଣ୍ଡଳୀ ନିତ୍ୟ ବୃନ୍ଦାବନେ ।
ତହିଁ ମୁଁ ବିଜଇ ରାଧା ଅଙ୍ଗ ଆଲିଙ୍ଗନେ ଗୋ । ୩୫ ।
ତାଙ୍କ ରସଜଳେ ବୁଡ଼ି ନ ଜାଣଇ କିଛି,
କୋଟି କୋଟି କଳ୍ପ କେଣେ ବହି ଯାଉଅଛି ଗୋ । ୩୬
ବେନି ଜନେ ବାହାରି ଅଇଲୁ ମର୍ତ୍ତ୍ୟପୁରେ,
ଜନମ ଲଭିଲୁ ନନ୍ଦ ବୃଷଭାନୁ ଘରେ ଗୋ । ୩୭ ।

---

୩୦ । ଦୋସର—ଅନ୍ୟ, ଦ୍ୱିତୀୟ ।

୩୨ । ବିଭୂତି ବିଭବ—ଅଣିମା—ଲଘିମା—ବ୍ୟାପ୍ତି—ପ୍ରାକାମ୍ୟ—ମହିମା—ଈଶିତ୍ୱ—ବଶିତ୍ୱ—କାମା ବସାୟିତା; ଅଷ୍ଟବିଧ ଯୋଗଲବ୍ଧ ଐଶ୍ୱର୍ଯ୍ୟ । ଷୋଡ଼ଶ ବିଭୂତି—ବିଭୂତି ସତ୍ତ୍ୱାତ୍ମିକା ଓ ଚନ୍ଦ୍ରବତ୍ପୀ । ଏହାର ଷୋଡ଼ଶ କଳା ବା ମହିମା ଅଛି—ଶ୍ରୀ, ଭୂ କୀର୍ତ୍ତି, ଇଳା, ଲୀଳା, କାନ୍ତି, ବିଦ୍ୟା, ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା ଓ ଅନୁଗ୍ରହା ।

୩୩ । ମହା ବିଭୂତି—ମହୈଶ୍ୱର୍ଯ୍ୟ ।

୩୪ । ମୂଳ ବିଭୂତି—ଷୋଡ଼ଶ ବିଭୂତିର ମୂଳ ବିଭୂତି । ସ୍ୱାନୁଭୂତି—ଆତ୍ମଜ୍ଞାନ । ମହାଭୂତି—ମହା ବିଭୂତି ।

୩୭ । ବେନିଜନେ—ଶ୍ରୀକୃଷ୍ଣ ଓ ଶ୍ରୀରାଧା । ନନ୍ଦ—ଶ୍ରୀକୃଷ୍ଣଙ୍କ ପାଳକ ପିତା । ବୃଷଭାନୁ—ଶ୍ରୀରାଧାଙ୍କ ପିତା ।

ଗୋପୀମାନେ ଅଗ୍ର ଆସି ବାଟ ରୁନ୍ଧି ଥିଲେ,
ଆମ୍ଭର ପ୍ରବେଶ ମାତ୍ରେ ଆସି ଆବୋରିଲେ ଗୋ । ୩୮ ।
ତାଙ୍କୁ ଘେନି ଗୋପପୁରେ ନାନା କ୍ରୀଡ଼ା କଲି,
ନାଟ୍ୟସ୍ଥଳ ରାସନୃତ୍ୟ ବନେ ଭିଆଇଲୁ ଗୋ । ୩୯ ।
କେଉଁ ଯୋଗେ ଦଇବ ବିଚ୍ଛେଦ କଲା ଆଣି,
କ୍ଷଣକ ହିଁ କୋଟିଯୁଗ ତାଙ୍କ ବିନୁ ମଣି ଗୋ । ୪୦ ।
ପଚ୍ଛର ଆଣିଲ ସଖି ଯେତେ ଯେତେ କଥା,
ଥୋକାଏ କହିଲୁ ଆଦ୍ୟ ପୁରାଣ ବାରତା ଗୋ । ୪୧ ।
ଅଳପ ସୂଚିଲୁ ଅଥର୍ବାଣ ଶ୍ରୁତିସାର,
କହିଲେଉଁ ଗୁହ୍ୟତତ୍ତ୍ୱ ନ କର ଅନ୍ତର ଗୋ । ୪୨ ।
ନ ଜାଣି ମନରେ କ୍ରୋଧ କର ପ୍ରାଣପ୍ରିୟା,
ବୁଝିଲ କ ଏବେହେଁ କହିଲୁଁ ଆମ୍ଭେ ଯାହା ଗୋ । ୪୩ ।
ପ୍ରଭୁଙ୍କ ଶ୍ରୀମୁଖୁଁ ଶୁଣି ପ୍ରବୋଧନା କଥା,
ବାହ୍ୟେ ସାଷ୍ଟମ ଅନ୍ତର୍ଗତେ ଅଛି ବଥା ଯେ, । ୪୪ ।
ଧରି ବସି ପୁଚ୍ଛନ୍ତି ସକଳ କୁଳାଙ୍ଗନା,
ଦେବ ବୋଲେ ରଖ ମୋତେ ପ୍ରଭୁ ବଜ୍ରସେହ୍ନା ହେ ।୪୫।

ଇତି ଶ୍ରୀ ରହସ୍ୟମଞ୍ଜରୀ ଷଷ୍ଠ ଛାନ୍ଦେ,
ଗୋପିକା ପ୍ରେମ ଲକ୍ଷଣ ଭକ୍ତି ବନ୍ଦେ,
ସପ୍ତମ ଛାନ୍ଦ ବର୍ଣ୍ଣିବେ କେବଣ ସୁଖ,
କହିବାକୁ ଆଜ୍ଞାଦେଉ ବିମ୍ବାଧର ମୁଖ ।

---

୩୮ । ଆବୋରିଲେ—ବେଢ଼ ରହିଲେ ।

୩୯ । ଭିଆଇଲୁ—ସୃଷ୍ଟି କଲୁ ।

୪୧ । ଥୋକାଏ—କିଛି ।

୪୨ । ସୂଚିଲୁ—ସୂଚିତ କଲୁ, ସୂଚନା ଦେଲୁ । ଅଥର୍ବାଣ ଶ୍ରୁତିସାର—ଅଥର୍ବାଦି ଶ୍ରେଷ୍ଠ ବେଦବାଣୀ । ଗୁହ୍ୟତତ୍ତ୍ୱ—ଗୁଢ଼ତତ୍ତ୍ୱ । ଅନ୍ତର—ଅନ୍ୟଥା ।

୪୪ । ପ୍ରବୋଧନା କଥା—ସାନ୍ତ୍ୱନା ବାଣୀ । ବାହ୍ୟେ—ବାହ୍ୟରେ, ବାହାରରେ । ସାଷ୍ଟମ—ସୁସ୍ଥ । ଅନ୍ତର୍ଗତେ—ଅନ୍ତର ମଧ୍ୟରେ । ବଥା—ବ୍ୟଥା ।

୪୫ । ପୁଚ୍ଛନ୍ତି—ପଚାରନ୍ତି । ଦେବ—ଦେବ ଦୁର୍ଲଭ ଦାସ, କବି । ବଜ୍ର ସେହ୍ନା—ବଜ୍ର କବଚ । ବିମ୍ବାଧର ମୁଖ—ବିମ୍ବପରି ଅଧର ଶୋଭିତ ମୁଖ, ଶ୍ରୀକୃଷ୍ଣ ।

## ସପ୍ତମ ଛାନ୍ଦ

ରାଗ-ଶ୍ରୈଖି—ସପନ ଚେଷ୍ଟିଯ୍ୟା ବାଣୀରେ ।

ନାକର ନୃପନନ୍ଦନୀ ନିଜଗଜନ ବନ୍ଦନୀ
ମାନ ଅଗ୍ନି ଦହୁଅଛି ସବୁର ଅଙ୍ଗ,
କ୍ଷଣେ କ୍ଷଣ ଉଦବୋଧ କ୍ଷଣେ କ୍ଷଣେ ଉଠେ କ୍ରୋଧ
କ୍ଷଣେ କ୍ଷଣେ ଅନୁଆନ ହୃଦେ ପ୍ରସଙ୍ଗ,
ଜନାଜନ ହୋଇ ଯୁବତୀ,
ଏକକୁ ଆରେକ କଥା ସନ୍ଧି ପୁଚ୍ଛନ୍ତି ।୧।

ବଦନ୍ତି ଜମ୍ବେବ ଜେମା ଶୁଣ ତୁମ୍ଭେ ସତ୍ୟଭାମା,
ବଡ଼ ଠାକୁରାଣୀଙ୍କର ଛାମୁରେ ସୂଚ,
ପ୍ରଭୁଙ୍କ କଥାରେ ସତ୍ୟ ଏ ସୃଷ୍ଟିରେ ବଡ଼ ନାହିଁ,
ଏକା ତାଙ୍କ ଗୋପୀମାନେ ସବୁହୁଁ ଉଚ୍ଚ,
ମେଘଯାଏ କବରୀ ଭାର,
ଏହାକୁ ମନର ମୋହ ବନ୍ଦୀ ମନ୍ଦିର ।୨।

---

## ସପ୍ତମ ଛାନ୍ଦ

୧ । ନାକର—ସମୂହ । ନିଜଗଜନ ବନ୍ଦନୀ—ଡଭ ଲୋକରେ ବନ୍ଦିତା । ଉଦବୋଧ—କ୍ରୋଧ ଉଦୟ । ଅନୁଆନ—ଅନ୍ୟାନ୍ୟ । ଜନାଜନ—ଜନାପର । କଥାସନ୍ଧି—ରହସ୍ୟ । ବଦନ୍ତି—କହନ୍ତି ।

୨ । ଜମ୍ବେବଜେମା—ଜାମ୍ବବତୀ । ବଡ଼ ଠାକୁରାଣୀ—ରୁକ୍ମିଣୀ । ସୂଚ—ସୂଚନା ଦିଅ । ମେଘ ଯାଏ କବରୀ ଭାର—ଗୋପୀମାନଙ୍କର ମସ୍ତକର କବରୀ ଆକାଶ ଚୁମ୍ବୀ, ଅର୍ଥାତ୍ ଗୋପୀମାନେ ଘନ କେଶା । ମନର୍ ··
ମନ୍ଦିର—ମନର ମୋହକୁ ବନ୍ଦୀ କରିବା ପାଇଁ ଏହା ବନ୍ଦୀଶାଳା ।

କୁଚ ଉଚ୍ଚ ଗିରିବର  ବର୍ତ୍ତୁଳ ଘଞ୍ଚ ରୁଚିର
ମନ୍ଦରଧର ବିସ୍ତାର କରକୁ ଲାଗି,
ଆମ୍ଭର ଫରୁଆ ଉର  ସେ କାହ୍ନୁଁ ଲାଗିବ କର
ତେଣୁକରି ସଖି ଆମ୍ଭେ ତାଙ୍କୁ ଅଲାଗି,
ଏବେ ତାଙ୍କ ଗ୍ରାମୂରେ ପୁଞ୍ଜ,
ଗୋପ କନ୍ୟାମାନେ ଯେବେ ତାଙ୍କ ସରିଛ । ୩ ।

ସେ ଯେବେ ନିତ୍ୟ ବିଳାସୀ  ତାଙ୍କ ଆଜ୍ଞା ପାଇଁ ଆସି
ଜନମ ଲଭିଲେ ଗୋପନଗରେ ଯାଇଁ,
ତେବେ କିପାଁ ବ୍ରଜକାନ୍ତା  ନକୁଞ୍ଚ ଜନ ବନିତା
ହୋଇଣ ଉଚ୍ଛିଷ୍ଟ ଅଙ୍ଗ ପ୍ରଭୁରେ ଦେଇ,
ଆଜ୍ଞା ଦେଲେ ଶ୍ରୀମୁଖେ ଯାହା,
ରାଧା ଠାକୁରାଣୀ ତାଙ୍କ ଅର୍ଦ୍ଧାଙ୍ଗ ପ୍ରିୟା । ୪ ।

ଚନ୍ଦ୍ରସେଣା ନାମେ ମୂର୍ଖ  ଅଛି ଏକ ଗଉଡ଼େକ
ସେହ୍ନପରି ସେ କନ୍ୟାକୁ ବିଭା ହୋଇଛି,
ଦେଖିବାର ଜଳଯାଉ  ଭଣ୍ଡି ଭଲ ଜଣେ କହୁ
ମାତୁଳଙ୍କ ବନିତାକୁ ଭଗ୍ନୀଜ ଗଛି,
ମୁଖ ତାଙ୍କ ଝକ ଦର୍ପଣ,
ଏହାଙ୍କର ମୁଖ ତର୍ହିଁ ଦିଶେ ଚିକ୍କଣ । ୫ ।

---

୩ । କୁଚ ଉଚ୍ଚ ଗିରିବର—ଗୋପୀମାନଙ୍କର କୁଚ ଉଚ୍ଚ ପର୍ବତ ସଦୃଶ । ବର୍ତ୍ତୁଳ—ଗୋଲାକାର । ଘଞ୍ଚ—ସାନ୍ଦ୍ର । ରୁଚିର—ସୁନ୍ଦର । ମନ୍ଦରଧର ବିସ୍ତାର ··· ଲାଗି—ମନ୍ଦର ପର୍ବତକୁ ଧାରଣ କରିଥିବା ଶ୍ରୀକୃଷ୍ଣଙ୍କର ବିସ୍ତୃତ କର ପାଇଁ ଗୋପୀମାନଙ୍କର ପର୍ବତ ସଦୃଶ କୁଚ ଉପଯୁକ୍ତ । ଫରୁଆ ଉର—ଫରୁଆ ଆକାରର କୁଚ । ଅଲାଗି—ଅନୁପଯୁକ୍ତ । ପୁଞ୍ଜ—ପଞ୍ଜୁର । ସରିଛ—ସଦୃଶ ।

୪ । ନକୁଞ୍ଚ—ତୁଚ୍ଛ ।

୫ । ଭଗ୍ନୀଜ—ଭଣଜା । ଗଛି—ଯୁକ୍ତ ହୁଏ, ଯୋଗାଏ । ଝକ—ଖାପ ।

ମୃତ୍ତିକା ମୁକୁରେ କାହିଁ    ଘୃଷିଁଲେ ମୁଖ ଦଶଇ
ପିତ୍ତଳ ଚନ୍ଦ୍ରକା କାହିଁ ଚୁମ୍ବେ ଚକୋର,
ତେହ୍ନେ ପ୍ରାପ୍ତ ଆମ୍ଭ ମୁଖ    ଘୃଷିଁଲେ କ ଯିବ ଦୁଃଖ
ଅଧିକ ହୋଇବ ଶ୍ଳେଖ ଚନ୍ଦ୍ରା ଅଙ୍କୁର,
ଗୋପୀ ତାଙ୍କ ପଦ୍ମିନୀ ବନ,
ସେ ସୂର୍ଯ୍ୟ ନାୟକଙ୍କ ଭୃଙ୍ଗ ଯେସନେ ପାନ । ୬ ।

କେବଣ କେଭାର ସଖୀ    କେ କେମାନେ ଅଛ ଦେଖି
ଏକ ଏକ ଯୁବତୀକ ଦୁ ଦୁଇ ଭ୍ରଥା,
ନ ଜାଣିଲୁ ପ୍ରାପ୍ତେ ହୋଇ    କେତେହେଁ ପଣ୍ଟୁର ତହିଁ
ସୁସ୍ୱାଦ ମଣିଛ ସଖି ପଣ୍ତଙ୍କ କଥା,
ଯାହା ମନ ଯହିଁରେ ରତ,
କୋଟି ସ୍ୱର୍ଗ ଭୋଗ ତାକୁ କଞ୍ଚିତ ମତ । ୭ ।

ଯେବଣ ବ୍ୟାଧିକ ଯଉଁ    ଔଷଧ ହୋଇଛି ପିଉଁ
ସୁସ୍ଥ ହୋଇ ତାକୁ ତାହା ପିରୋଗ କଲେ,
ଅପ୍ରିୟ ଔଷଧ ଯହ    ପିରୋଗ କର ଅବଧି
ଅଧିକେ ବଢ଼ାଇ ବ୍ୟାଧି ଜାତ ତ ଭଲେ,
ଗୋପୀ ତାଙ୍କ ବ୍ୟାଧି ସୁପଥି,
ଆମ୍ଭେ ତାଙ୍କ ବ୍ୟାଧିକ ନିଷେଧ କୁପଥି । ୮ ।

---

୬ । ମୃତ୍ତିକାମୁକୁର—ମାଟିର ଦର୍ପଣ । ଶ୍ଳେଖ—ବଳଶାଳୀ । ଚନ୍ଦ୍ରାଅଙ୍କୁର—ଚନ୍ଦ୍ରାରୂପକ ଗଜା । ଗୋପୀ···ପାନ—ଗୋପୀମାନେ ପଦ୍ମ, ସେମାନେ ହେଉଛନ୍ତି ସୂର୍ଯ୍ୟପ୍ରିୟା ଅର୍ଥାତ୍ ଗୋପୀମାନେ ଗୋପାଳମାନଙ୍କର ପ୍ରିୟ ଏବଂ ଶ୍ରୀକୃଷ୍ଣ ଭ୍ରମର ପରି ସେମାନଙ୍କର ଉପଭୋକ୍ତା ।

୭ । ଦୁ ଦୁଇ—ଦୁଇ ଦୁଇ । ଭ୍ରଥା—ସ୍ୱାମୀ ।

୮ । ପିରୋଗ—ପ୍ରୟୋଗ । ବ୍ୟାଧି ସୁପଥି—ତାଙ୍କ ରୋଗ ପାଇଁ ଉତ୍ତମ ପଥ୍ୟ । ନିଷେଧ କୁପଥି—ନିଷିଦ୍ଧ ମନ୍ଦ ପଥ୍ୟ ।

ସହଜେ ଅଇଲେ ଭଣ୍ଡି ଆସିବୁଁ ବୋଲି ବାହୁଡ଼ି
କଂସ ମାରି ଗୋପକୁ ଲେଉଟି ନ ଗଲେ,
ଦ୍ୱାରକା ବଜାଏ ଜାଣି ଆମ୍ଭ ବଉମାନ ଶୁଣି
ମଣି ମନ୍ତ୍ର ମଉଷଧି ଉପାଏ କଲେ
ଧନ୍ୟରେ ସେ ଗୋପ ତରୁଣୀ
ଏତେ ସରି କଲି ତାଙ୍କ ଉଚ୍ଚାଟ ପାଣି । ୯ ।

ଇଷାକ୍ଷୁ ବଚନ ଶୁଣି ହସିଲେ ସାରଙ୍ଗ ପାଣି
ଧାଇଁ ପଡ଼ି ଜମ୍ଭୁବଣ୍ଟ ବାଳୀକ ଧରି,
ହୃଦୟେ ଭିଡ଼ନ୍ତେ ଆଣି ଜଡ଼ଣ ଗଲେ ତରୁଣୀ
ବଦନ ଚୁମ୍ବନ୍ତେ ଜ୍ଞାନ ସହଜେ ହାରି,
ଏହ୍ନମନ୍ତ ସବୁନ୍ତ ସୁଖ,
ଯୁବଣ୍ଟିକେ ଭୂଜଯୁଗ ମୁଖକେ ମୁଖ । ୧୦ ।

ବସ୍ତାରି ପଦ୍ମ ଆସନ ବସାଇ ଘର୍ଘ ଜଘନ
ହୃଦୟୁ ବସ୍ତାର କଲେ ଯେହ୍ନ ଗଗନ,
ସ୍ତିଗ୍ଧ ତାର ଗଣ ଧରି ହୃଦୟୁ ଗଗନେ ଭରି
ନିବଡ଼ ପରିରମ୍ଭଣେ ତୋଷିଲେ ମନ,
ମୋହମାନ ହୋଇ ଯୁବଣ୍ଟି,
ଅନ୍ୟେ ଅନ୍ୟେ ଶ୍ରୀହରି ବଦନ ଚୁମ୍ବନ୍ତି । ୧୧ ।

---

୯ । ବଉମାନ—ବଦାଦ ଘଟଣାମାନ । ମଣିମନ୍ତ ମଉଷଧି—ଜଡ଼ିବୁଟି । ଉଚ୍ଚାଟ ପାଣି—ଉଚ୍ଚାଟନ କରି, ଉଚ୍ଚାଟନ ନମିତ୍ତ କାଟପାଣି ।

୧୦ । ଇଷାକ୍ଷୁ—ଈର୍ଷାନ୍ୱିତା । ଶାରଙ୍ଗପାଣି—ଶ୍ରୀକୃଷ୍ଣ । ଏହ୍ନମନ୍ତ—ଏହିପରି । ସବୁନ୍ତ—ସମସ୍ତଙ୍କୁ । ଯୁବଣ୍ଟିକେ—ଏକ ଯୁବଣ୍ଟିକୁ ।

୧୧ । ଜଘନ—ଜଘନ । ପରିରମ୍ଭଣେ—ଆଲିଙ୍ଗନରେ । ମୋହମାନ—ବିମୁଗ୍ଧ

ବିସରିଲେ ପୂର୍ବଗ୍ୟାନେ    ଅଧର ଅମୃତ ପାନେ
ନୟନେ ନୟନ ଜଡ଼ି ବୁଡ଼ି ରହିଲେ,
ଶ୍ରୀହରି ଶ୍ରୀମୁଖ ସୁଖ    ସ୍ମରଣେ ହରିଲେ ଦୁଖ
ମାନ ତେଜି ବଚନ ସରସେ କହିଲେ,
ହରିପରିରମ୍ଭଣ ପ୍ରୀତି,
ଦେବ ଶନ୍ତେ ପ୍ରିୟାଗଣ ରମଣ ମୂର୍ତ୍ତି । ୧୨ ।

ଇତିଶ୍ରୀ ରହସ୍ୟମଞ୍ଜରୀ ସପ୍ତମଛନ୍ଦେ
ଦ୍ୱାରକାଯୁବତୀ ପତି ଇଷାନ୍ତୁ ବନ୍ଦେ
ଅଷ୍ଟମଛାନ୍ଦ ବର୍ଣ୍ଣନେ କେବଣ କେବଣ ସମ୍ଭାଷ,
କହିବାକୁ ଆଜ୍ଞାହେଉ କମଳାବିଳାସ ।

---

୧୨ । ବିସରିଲେ—ଭୁଲିଗଲେ । ଜଡ଼ି—ମିଶାଇ । ସମ୍ଭାଷ—ସମ୍ଭାଷଣ, ସମ୍ବାଦ । କମଳାବିଳାସ—କମଳାପତି, ଶ୍ରୀକୃଷ୍ଣ ।

## ଅଷ୍ଟମ ଛାନ୍ଦ

ଚଳଘଣ୍ଟ ରାଗେଣ ଗୀୟତେ (ଚଳଘଣ୍ଟ ଚଉତିଶା ବାଣୀରେ ଗାଇବ)

ବିଦର୍ଭ ଦେଶ ନୃପବରଜେମା,
ଦେବୀ ରୁକ୍ମଣୀ ଗୁଣମଣି ରମା,
ଆବର ଯେତକ ରାଜଦୁଲାଳୀ,
ତୁମ୍ଭେ ଶୁଣିଲ 'ଗୋ' ଜାମ୍ବବତୀଙ୍କର ଗାଳି ଯେ । ୧ ।

ଯେତେ ଗାଳିଦେଲେ ସବୁ ପ୍ରମାଣ,
ବ୍ରହ୍ମା ବେଦକୁ ଜିଣି କୋଟି ଗୁଣ,
ଏମନ୍ତ ଗାଳି ଯେ ପାରଇ ଦେଇ,
ଆମ୍ଭେ ତାହାଙ୍କୁ "ଗୋ" ମୁଖ ଚୁମ୍ବି ସୁଖ ପାଇ ଯେ । ୨ ।

ଏମନ୍ତ ଗାଳି ଯାହାଠାରୁ ଶୁଣି,
ଗୋପୀମାନେ ପ୍ରାୟେ ତାଙ୍କୁ ମଣି
ଗୋପୀମାନେ ହେଁ ତାହାଙ୍କୁ ପ୍ରସନ୍ନ,
କୃପା କରଣ 'ଗୋ' ଯାଚ ଦ୍ୟନ୍ତ ବରଦାନ ଯେ । ୩ ।

ତାହାଙ୍କ ପ୍ରଭୁ ରାଧାଠାକୁରାଣୀ,
ସେହି ପ୍ରସନ୍ନ ହୋନ୍ତି ଭାବ ଜାଣି,
ତାଙ୍କ କୃପାରୁ ସରେ ତାଙ୍କ ଦୁଖ,
ଦେବି ତେବେ ସେ "ଗୋ" ଲଭଇ ଆମ୍ଭର ସୁଖ ଯେ । ୪ ।

---

## ଅଷ୍ଟମ ଛାନ୍ଦ

୧ । ନୃପବରଜେମା—ରାଜଜେମା । ରମା—ନାରୀ । ଆବର—ଅନ୍ୟ । ରାଜଦୁଲାଲୀ—ରାଜକନ୍ୟା । ପ୍ରମାଣ—ସତ୍ୟ । ବ୍ରହ୍ମା...ଗୁଣ— ବ୍ରହ୍ମାଙ୍କର ବେଦଗାନକୁ ଏହି ଗାଳି କୋଟିଗୁଣରେ ଜିଣିଯାଏ ।

୩ । ଦ୍ୟନ୍ତ—ଦଅନ୍ତୁ ।

କୃଷ୍ଣ ଯାମଳେ ଏହା କହୁଅଛ୍ତି ।
କୃଷ୍ଣପ୍ରାୟେ ମଣି ରାଧା ମୃଗାକ୍ଷି,
ରାଧା ପ୍ରସାଦୁ ଲଭେ କୃଷ୍ଣ ଭାବ,
ଫେଡ଼ି ଭ୍ରମକୁ "ଗୋ" କହିଲୁ ପରମ ଲାଭ ଯେ । ୫ ।
ମହତ ମୁଖେ ନ ଆସଇ ମିଛ,
ମିଥ୍ୟାକ୍ଷି ତାଙ୍କର ସତ ପ୍ରତକ୍ଷ.
ଜାମ୍ବବନ୍ତ ଯେତେ କହିଲେ କଥା,
କୋଟି ବ୍ରହ୍ମାଣ୍ଡେ "ଗୋ" କେ କରିପାରେ ଅନ୍ୟଥା ଯେ । ୬ ।
ଯାହା କହିଲେ ଗୋପକନ୍ୟା କୁଚ,
ମନ୍ଦରଗିରି ପର୍ଯ୍ୟେକ ଉଚ୍ଚ,
କର ବସ୍ତାର ଗିରିବର ଲଗି,
ତାହା କହିବା "ଗୋ" ଶୁଣ ସବ ସଉଭାଗ୍ୟି ଯେ । ୭ ।
ଯେବଣ କାଳେ ଧୈଲୁ ଗିରିବର,
ଇନ୍ଦ୍ର ବଜ୍ରକୁ ଡରିଲା ମନ୍ଦର,
ତେଣୁ କରି କର ବିସ୍ତାର କଲୁ,
ମୁଠା ଭିତରେ "ଗୋ" ଗିରି ଲୁଚ୍ଛଇ ରଖିଲୁ ଯେ । ୮ ।
ଦ୍ୱାଦଶ ଯୋଜନ ଯେବଣ ଗିରି,
ଏହି ହସ୍ତତଦ ମଧ ନ ପୂରି,
ସେ ହସ୍ତ ଗୋପୀଙ୍କ ଉଚ୍ଚ କୁଚରେ,
ଅର୍ଦ୍ଧ ମାତ୍ରକୁ "ଗୋ" ନ ଅଣ୍ଟି ଯାଇ ବସ୍ତାରେ ଯେ । ୯ ।

---

୫ । କୃଷ୍ଣଯାମଳେ—କୃଷ୍ଣଯାମଳ ତନ୍ତ୍ର । ମୃଗାକ୍ଷି—ମୃଗାକ୍ଷି । ପ୍ରସାଦୁ —ସୁଦୟାରୁ । ଫେଡ଼ି—ଖୋଲି । ପରମଲଭ—ପରମ ପଦ ଲାଭ ।

୬ । ମହତ ପ୍ରତକ୍ଷ—ମହତ ଲୋକମାନେ କେବେହେଲେ ମିଥ୍ୟା କହନ୍ତି ନାହିଁ । ସେମାନେ ଯାହା କହନ୍ତି ତାହା ସତ୍ୟ, ସେମାନଙ୍କର ଦେଖିବାଟା ମିଥ୍ୟା ହୋଇପାରେ, ମାତ୍ର କଥାଟା ମିଥ୍ୟା ହୋଇ ନପାରେ ।

୭ । କୁଚ—ସ୍ତନ । ପର୍ଯ୍ୟେକ—ପ୍ରାୟ । ସଉଭାଗ୍ୟି—ସୌଭାଗ୍ୟବତୀ ।

୮ । ଧୈଲୁ—ଧରିଲୁ । ମନ୍ଦର—ମନ୍ଦର ପର୍ବତ ।

ଗୋପୀଙ୍କ ଯୌବନ ଅଟେ ଯେମନ୍ତ,
ରାଧିକା ଯୌବନ ଏଥୁଁ ଯେମନ୍ତ,
ଗିରିବର ରୁଦ୍ଧିଁ କେତେ ମାତର,
କୋଟି ବ୍ରହ୍ମାଣ୍ଡେ "ଗୋ" କେ କହୁଁ ତଥି ଘୃତର ଯେ । ୧୦ ।
ଶତେ ଯୋଜନ ଉଚ୍ଚ ଯଜ୍ଞବନ,
ବିସ୍ତାର ହିଁ ଗୋ ଶତେ ଶତେ ଯୋଜନ,
ମର୍କତ ଲିଙ୍ଗ ହେମଗିରି ସ୍ଥିତି,
ଲିଙ୍ଗ ଉପର୍ଗ "ଗୋ" ବଂଶ କୋଣ ବଂଶ ପ୍ରତି ଯେ । ୧୧ ।
ଏ ଯେ ବୋଇଲେ ସମୂହ ଆବୋରି,
ମେଘ ଯାଏଁ ଉଚ୍ଚ ତାଙ୍କ କବରୀ,
ଏହି ପ୍ରକାରେ କର ପ୍ରତିକଛ
ଦୃଷ୍ଟାନ୍ତରକୁ "ଗୋ" ନଇଲେ ଆମ୍ଭଙ୍କୁ ବାଛ ଯେ । ୧୨ ।
ଶୁଣି ହସିଲେ ସକଳ ତରୁଣୀ,
କଥାରେ କେ ଅବା ପାରିବ ଜିଣି,
ଯାର ଇଷିତ କଉତୁକ କଥା,
ଶ୍ରୁତି ସ୍ମୃତି "ଗୋ" କହି ତ ନୋହେ ଶକତା ଯେ । ୧୩ ।
ବୋଲନ୍ତି ରୁକ୍ମଣୀ ଶୁଣ ଗୋସାଇଁ,
ଆହୁରି କଥା ସନ୍ଧି ଗଲା ରହି,
ରାଧା ଯେବେ ତୁମ୍ଭ ନିଜ ଯୁବତୀ,
ପ୍ରଭୁ ! କହିବା ହେ ଚନ୍ଦ୍ରସେଣା କମ୍ପା ପତି ଯେ । ୧୪ ।

---

୧୦ । ଘୃତର—ଘୃତପୂର୍ଣ୍ଣ ।

୧୧ । ଯଜ୍ଞବନ—କୁଚ । ମର୍କତ ଲିଙ୍ଗ—କୁଚର କୃଷ୍ଣବର୍ଣ୍ଣ ଅଗ୍ରଭାଗ । ହେମଗିରି—କୁଚ । ପ୍ରତି—ଓସାର

୧୨ । ପ୍ରତିକଛ—ମାପ । ଦୃଷ୍ଟାନ୍ତର—ଦୃଷ୍ଟାନ୍ତର, ଉଦାହରଣ ।

୧୩ । ଇଷିତ—ସାମାନ୍ୟ । ଶ୍ରୁତି—ବେଦ । ସ୍ମୃତି—ସ୍ମୃତିଗ୍ରନ୍ଥ । ଶକତା—କ୍ଷମ ।

ଗୋପୀମାନେ ହେ ଛନ୍ତ ଭ୍ରଥା ଯେନ,
ତୁମ୍ଭ କାନ୍ତା କମ୍ପା ପରକାମିମ୍ପା,
ଏଥିର ସନ୍ଧ ବୁଝାଇ କହବା,
ପ୍ରଭୁ ଆମ୍ଭର "ହେ" ହୃଦସ୍ଥ ଦୁଃଖ ଦହବା ଯେ । ୧୫ ।

ପ୍ରଭୁ ବୋଲନ୍ତ ଶୁଣିମା ମୃଗାକ୍ଷି,
ଯେଗର ଗୁହ୍ୟ ସନ୍ଧ ତୁମେ ପୁଚ୍ଛି,
ନତ୍ୟରେ ଆମ୍ଭେ ଦଶଭୁଜ ବହ୍ନି,
ବୃହଦ ବାମନ ଗୋ ପାଠେ ଛନ୍ତ ଏହା କହି ଯେ । ୧୬ ।

ଶଙ୍ଖ ଚକ୍ର ଗଦା ପଦ୍ମ ଏ ଗ୍ଭର,
ଧନୁ ଖଡ଼ଗ ବେନି ଭୁଜେ ଧର,
ଦ୍ୱିଭୁଜେ ବଂଶୀ ଭୁଜେ ଆଲିଙ୍ଗନ,
ଆର ଭୁଜକେ "ଗୋ" ରାଧା ଚିବୁକ ଚୁମ୍ବନ ଯେ । ୧୭ ।

ଏମନ୍ତ ଦଶଭୁଜ କୃତ୍ୟସ୍ଥଳେ,
ଚୁମ୍ବନ ଲୀଳା ରସ କ୍ରୀଡ଼ାବେଳେ,
ମଳୟାନଳ କମ୍ବୁ ଗର୍ଭେ ପଶି,
ଦେବ ଶୁଣିମା "ଗୋ" ଅଦ୍ଭୁତେ ଧ୍ୱନ ପ୍ରକାଶି ଯେ । ୧୮ ।

ରାଧାଙ୍କ ଚିତ୍ତ ଆମ୍ଭ ରସେ ଜଡ଼,
ଆମ୍ଭ ଚିତ୍ତନ୍ଧି ଅଛି ତହିଁ ବୁଡ଼,
ଏମନ୍ତ ବୋଲେ କମ୍ବୁରବ ଜାତ,
ଶୁଣି ଚଞ୍ଚଳ "ଗେ" ହୋଇଲା ରାଧାଙ୍କ ଚିତ୍ତ ଯେ । ୧୯ ।

---

୧୬ । ନତ୍ୟରେ—ନତ୍ୟ ବୈକୁଣ୍ଠରେ, ନତ୍ୟ ରାଧା ଓ ନତ୍ୟ କୃଷ୍ଣଙ୍କ ମିଳନରେ ।
ବୃହଦବାମନ—ବୃହଦବାମନ ତନ୍ତ୍ର ।

୧୮ । ମଳୟାନଳ—ମଳୟ ପବନ । କମ୍ବୁଗର୍ଭେ—ଶଙ୍ଖ ଗର୍ଭରେ । ଧ୍ୱନ—ଧ୍ୱନ ।

୧୯ । ଜଡ଼—ଜଡ଼ିତ । କମ୍ବୁରବ—ଶଙ୍ଖ ଧ୍ୱନ ।

ତା ଦେଖି ଆମ୍ଭର ଜନ୍ମିଲା କୋପ,
ବୋଇଲୁ ଏବେ ତୁମ୍ଭେ ଘେନ ଶାପ,
ମୋ ରସ ତେଜିଲ ଯା ରସ ଘେନ,
ମର୍ତ୍ତ୍ୟେ ଜନମି "ଗୋ" ବୋଲଅ ତାର କାମିନୀ ସ୍ନେ । ୨୦ ।
ଶୁଣି ରାଧିକା ମୂର୍ଚ୍ଛାଗତ ହୋଇ
ବୋଇଲେ ପ୍ରଭୁ କର ରାହି ରାହି,
ଅଜାଗ ଅପ୍ରାଧକୁ ଏଡ଼େ ଶାସ୍ତି
ତୁମ୍ଭ ବଚନେ "ହେ" ଦୋସର କେ ମୋର ପତି ସ୍ନେ । ୨୧ ।
ତୁମ୍ଭ ଆମ୍ଭ ସଙ୍ଗ ସଂଯୋଗ ଜାଣି,
ବ୍ରହ୍ମା କୋଟି ଗଲେ ପଲକେ ମଣି,
ଏବେ ପଲକ ହେବ କଳ୍ପ ସରି,
ପ୍ରଭୁ ଶୁଣିମା "ହେ" କେସନେ ଜୀବନ ଧରି ସ୍ନେ । ୨୨ ।
ତୁମ୍ଭଙ୍କୁ ତେଜି ମୁଁ ଯିବ କେମନ୍ତେ,
ତୁମ୍ଭେହେଁ କି ମୁଞ୍ଚିପାରିବ ମୋତେ,
କି କରିବ କଲ ଏସନ ସ୍ଥିତି,
"ପ୍ରଭୁ" ଶୁଣିମା 'ହେ" ଏବେ ବୋଲାଇବ କାହା ଘତି । ୨୩ ।
ତାହାଙ୍କ କ୍ଷୋଧ ଆମ୍ଭଙ୍କୁ ବିରୋଧ,
ବିବିଧ ପ୍ରକାରେ କହିଲୁ ବୋଧ,
ବୋଇଲୁ ଏଥକୁ ନ ବୁଝ ଆନ,
ବୁଧ କହନ୍ତି "ଗୋ" ଯହିଁ ରାଧା ତହିଁ କାନ୍ତ ସ୍ନେ । ୨୪ ।
ତୁମ୍ଭେ ମୋ ଶ୍ରବଣ ତୁମ୍ଭେ ମୋ ନାସା,
ତୁମ୍ଭେ ମୋହର ଜୀବନ ଭରସା,
ତୁମ୍ଭେ ମୋ ମୁଖ ଚକ୍ଷୁ ସର୍ବ ଶକ୍ତି,
ତୁମ୍ଭ ବଚନେ "ଗୋ" କହିଁ ଥାନେ ମୋର ଥିତି ସ୍ନେ । ୨୫ ।

---

୨୦ । ତାର କାମିନୀ—ତାର ପତ୍ନୀ ।
୨୧ । ରାହି—ରକ୍ଷା । ଅଜାଗ—ଅଜ୍ଞାନ, ଅଜାଣତ । ଦୋସର—ଅନ୍ୟ ।
୨୪ । ବୋଧ—ପ୍ରବୋଧନା ବାକ୍ୟ । ଆନ—ଅନ୍ୟଥା । ବୁଧ—ପଣ୍ଡିତ ।
୨୫ । ଚକ୍ଷୁ—ଚକ୍ଷୁ । ଥିତ—ସ୍ଥିତ ।

ତୁମ୍ଭେ ଗଲେ କ ଆମ୍ଭେ ଥିବୁ ରହି ।
ଆମ୍ଭେ ଗଲେ ହେଁ ମତ୍ୟସ୍ଥଳ ନାହିଁ,
ଏ ଥଳ ଅଂଶ ଆଗ ହୋଇ ଯାଉ,
ଗୋପ ଯମୁନା "ଗୋ" ମାପବନ ହୋଇ ଥାଉ ସେ୍ନ । ୨୬ ।
ଗୋପୀ ଗୋପାଳ ଅଂଶ ଆଗ ଯାଇ,
ଗୃହ ପାତନା ଘରେ ଥିବେ ରହୁ,
ଏ କମ୍ବୁ ଜାତ ଚନ୍ଦ୍ରସେଣା ନାମ,
ଚନ୍ଦ୍ର ଜ୍ୟୋଛନ୍ତୁଁ "ଗୋ" ଅଧିକ କଳା ଉପାମ ସେ୍ନ । ୨୭ ।
ସେହିଣ ତ ଆମ୍ଭ ବଂଶ ଅନୁରାଗୀ
ଆମ୍ଭର ସୁଖ ତହିଁ ଅଛୁ ଲାଗି,
କେବଳ ତୁମ୍ଭ ଭଥା ହୋଇଥିବ,
ଅଙ୍ଗ ଛୁଇଁ ତ "ଗୋ" କେବେହେଁ ବୁଦ୍ଧି ନ ଯିବ ସେ୍ନ । ୨୮ ।
ଗୋମୀଙ୍କ ଭ୍ରଥା ହୋଇବେ ଯେତେକ,
ସେହି ତ ଆମ୍ଭ ଅଂଶ ବୋଲି ଲେଖ,
ସମସ୍ତେ ହୋଇବେ ନଷ୍ଟ ପୁରୁଷ,
ତୁମ୍ଭ ଆମ୍ଭର "ଗୋ" ଚଳଯାଉ ଏବେ ଅଂଶ ସେ୍ନ । ୨୯ ।
ପ୍ରଭୁଙ୍କ ଶ୍ରୀମୁଖୁଁ ଏସନ ବାଣୀ,
ଶୁଣି ସନ୍ତୋଷ କୃଷ୍ଣ ପାଟରାଣୀ,
ଉଠି ଘୁଞ୍ଚି ଗଡ଼ଘଲ ଶୁତଲେ,
ହୃଦ ଉଲ୍ଲସି 'ହେ' ଆନନ୍ଦଜଳ ବହିଲେ ସେ୍ନ । ୩୦ ।

---

୨୬ । ଥଳ—ସ୍ଥଳ, ମତ୍ୟସ୍ଥଳ । ମାପବନ—କଦମ୍ବବନ ।
୨୭ । ଗୃହ ପାତନା—ଗୃହ ସ୍ଥାପନା । ଜ୍ୟୋଛନ୍ତୁଁ—ଜ୍ୟୋଛଠାରୁ । ଉପାମ—ଉପମା ।
୨୮ । ଭ୍ରଥା—ପନ୍ଥ । ଛୁଇଁତ—ଛୁଇଁବାକୁ ।
୨୯ । ନଷ୍ଟ ପୁରୁଷ—ନପୁଂସକ ।
୩୦ । କୃଷ୍ଣ ପାଟରାଣୀ—ରୁକ୍ମଣୀ । ଗଡ଼ଘାଲି—ଭୂମିଷ୍ଠ ପ୍ରଣାମ କରି । ଶୁତଲେ—ଶୋଇଲେ । ଉଲ୍ଲସି—ଉଲ୍ଲସିତ ହୋଇ, ଉତ୍ଫୁଲ୍ଲିତ ହୋଇ ।

ଉଠି ସମସ୍ତେ ସଲଜ୍ଜିତ ହୋଇ,
ପୁଣି ଜାଣନ୍ତି ଶିରେ କର ଦେଇ,
ଅବଧାନ ପ୍ରଭୁ ଦେବାଧିରାୟେ,
ଆମ୍ଭ ସୁବୁର "ହେ" ମାଗୁଣି ଅଛୁ କଥାଏ ଯେ । ୩୧ ।

କେମନ୍ତ ମୂର୍ତ୍ତି ରାଧା ଠାକୁରାଣୀ,
କେମନ୍ତ ସୁନ୍ଦର ଗୋପତରୁଣୀ,
ବାରେକ ଯେବେ ଦର୍ଶନ କରିବୁ;
ପ୍ରଭୁ ତେବେ ସେ "ହେ" ମନର ବାଧା ହରିବୁ ଯେ । ୩୨ ।

ପ୍ରଭୁ ବୋଲନ୍ତି ଏବେ ତୁମ୍ଭେ ଯାଅ,
ଅଳପଦନ ଥିର ହୋଇଯାଅ,
ଉପାଏ ପ୍ରକାରେ ପାରିବା ଯେବେ,
ନିଶ୍ଚେ ଦର୍ଶନ "ଗୋ" କରାଇବା ନେଇ ତେବେ ଯେ । ୩୩ ।

ଏମନ୍ତ ମେଲଣି ପାଇ ସୁନ୍ଦରୀ,
ପ୍ରବେଶ ହୋଇଲେ ଯେ ଯାହା ପୁରୀ,
ଯେ ଯାହା ବଧି ବଧାନେ ରହିଲେ
ମନୁ ନ ଯାଇଁ "ହେ" ଶ୍ରୀହରି ଯାହା କହିଲେ ଯେ । ୩୪ ।

ଶୁଣ ସାଧୁଜନ ଅପୂର୍ବ ରସ,
ମନେ ନ ଧରିବ କବିଙ୍କ ଦୋଷ,
କବିଙ୍କ ଆୟୁତ୍ତ ନୋହେ ଏମାନେ,
ତେତେବେଳେ ତ ହେ ବୁଡ଼ିଥାଇ ନିଜ ଧ୍ୟାନ ହେ । ୩୫ ।

---

୩୨ । ବାରେକ—ଥରେମାତ୍ର ।

୩୩ । ଥିର—ସ୍ଥିର । ଉପାଏ—ଉପାୟ ।

୩୪ । ମେଲଣି—ବିଦାୟ ।

୫୫ । ଏମାନ—ଏସବୁ ।

କବିଙ୍କ ଅଂଶ ସତ ସ୍ୱଚ୍ଛ ବୀଣା,
କବିଙ୍କ ଚିତ୍ତ ଅଟେ ତହିଁ ଗୁଣା,
କର ଚଳିଲେ ଚଳେ ଗୁଣାବାଣୀ,
କର ନ ଦେଲେ "ହେ" ତାହିଁ ଶବଦ ବଖାଣି ଯେ । ୩୬ ।

କବିଙ୍କ ଯେତେ ସରସ୍ୱତୀ ସୁତ,
ଯାହାକୁ ଯାହା କର୍ଣ୍ଣି ଦ୍ୟନ୍ତି ମାତ,
ଆଜ୍ଞା ପ୍ରମାଣେ ବାନ୍ଧେ ଗ୍ରନ୍ଥସାର,
ଆଜ୍ଞା ବିନୁ କି "ହେ" ମାନବ ଶକ୍ତି ସଙ୍ଗର ଯେ । ୩୭ ।

ରୁଦ୍ର ଯାମଳେ ବ୍ରହ୍ମା ନାରଦଙ୍କୁ;
କବିଙ୍କ ସୁଖ କହିଲେ ତାହାଙ୍କୁ
ବୋଇଲେ କବି ହୃଦେ ଥାନ୍ତି ହରି;
କବି ହୃଦରେ "ହେ" ସରସ୍ୱତୀ ବିଜେ କରି ଯେ । ୩୮ ।

ଏକପଦେ ଏକ ଶ୍ଳୋକକେ ଗୀତ,
କୃଷ୍ଣ ଅର୍ଥେ ଯେବେ କରେ କବିତ୍ୱ,
ସର୍ବଦା ତାର ବୁଦ୍ଧି ସିଦ୍ଧି ହୋଇ,
କୃଷ୍ଣ ଅଙ୍ଗେଣ "ହେ" କାଳେଣ ଆତ୍ମା ଗଛଇ ଯେ । ୩୯ ।

କବିଙ୍କ ଗୀତ ସର୍ବ ଲୋକେ ଗାଇ,
କବିଙ୍କ ଗ୍ରନ୍ଥ ଶୁଣି ସୁଖୀ ହୋଇ,
କବିଙ୍କ ଗଣ୍ଠି ବାନ୍ଧିଥାଇ ଯାହା,
ମୂର୍ଖ ପଣ୍ଡିତ "ହେ" ନବୁଝି ନିନ୍ଦନ୍ତି ତାହା ଯେ । ୪୦ ।

---

୩୬ । ଗୁଣା—ବୀଣାର ତାର । ଗୁଣାବାଣୀ—ତାରରୁ ଜାତ ଧ୍ୱନି । ବଖାଣି—ବର୍ଣ୍ଣନାକରି, ପ୍ରକାଶ କରି ।

୩୭ । ସୁତ—ପୁତ୍ର । ଦ୍ୟନ୍ତି—ଦିଅନ୍ତି । ମାତ—ମାଆ ସରସ୍ୱତୀ । ବାନ୍ଧେ—ରଚନା କରେ । ଗ୍ରନ୍ଥସାର—ଶ୍ରେଷ୍ଠଗ୍ରନ୍ଥ ।

୩୮ । ରୁଦ୍ରଯାମଳ—ରୁଦ୍ରଯାମଳ ତନ୍ତ୍ର ।

୩୯ । ଅଙ୍ଗେଣ—ଅଙ୍ଗରେ । କାଳେଣ—କାଳରେ । ଗଛଇ—ମିଶଇ, ଶୋଭିତ ହୁଅଇ ।

୪୦ । ଗଣ୍ଠି—ଭଣ୍ଡାର, ସଞ୍ଚୟ ଓ ସମାବେଶ ।

ପଣ୍ଡିତ ହୋଇ ମୂର୍ଖ ବୁଦ୍ଧି ଯାର,
ବର୍ବର ନାହିଁ ହୀନ ବୁଦ୍ଧି ତାର,
ଗୁଣ ପକାଇ ଧରି ପାରେ ଦୋଷ
ରସ ଅମୃତ "ହେ" ତେଜଣ ବିଷ ଯେ । ୪୧ ।

ତେଣୁ ବୋଲଇ ସନ୍ଥଜନେ ବଡ଼,
ସନ୍ଥର ବିନୁ ଯେତେ ସବୁ ରାଢ଼,
ସନ୍ଥର ପାଦରଜ ମୋର ଶିରେ,
ଦେବ ମାଗଇ "ହେ" ପଡ଼ୁଥିବ ନିରନ୍ତରେ ଯେ । ୪୨ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଅଷ୍ଟମଛନ୍ଦେ,
ଶ୍ରୀ ରାଧା ପରମ ଗୁପତ-ତତ୍ତ୍ୱବନ୍ଦେ,
ନବମ ଛନ୍ଦେ ବର୍ଣ୍ଣିନେ କେବଣ ବିନୋଦ,
କହିବାକୁ ଆଜ୍ଞାହେଉ ଏଥର ଯେ ପରବୋଧ,

---

୪୧ । ପକାଇ—ଛାଡ଼ି ।

୪୨ । ରାଢ଼—ହୀନ, ନୀଚ । ପାଦରଜ—ପାଦଧୂଳି ।

—*—

# ନବମ ଛାନ୍ଦ

ରାଗ-ବଙ୍ଗଳାଶ୍ରୀ (ମାଧୋଇ ବାଣୀରେ ଗାଇବ)

ଏଥୁ ଆନ କଥା　　　ଗୋଟଏ ବେବସ୍ଥା
ଶୁଣିମା ସୁବୁଦ୍ଧି ଜନ,
କୃଷ୍ଣ ଗଲା ଦିନୁ　　　ସମସ୍ତେ ନିର୍ମାଖି
ଝୁରନ୍ତି ନସରଇ ଦିନ । ସୁଜନ ହେ । ୧ ।

ରାଧିକା ଦୂତିକା　　　ସର୍ବ ସଖୀ ହୋଇ
ଭାଳନ୍ତି ଏକାନ୍ତେ ବସି,
କାହାର କି ବୁଦ୍ଧି　　　ଉପାଏ ପ୍ରସିଦ୍ଧି
ଥିଲେ କହ ମୋତେ ଆସି । ନା ଗୋ ସ୍ୱେ । ୨ ।

ଆମ୍ଭ ପ୍ରତି ଆଶା　　　ଛାଡ଼ିଲେ ମୁରାରି
ପଡ଼ିଲେ ଚତୁରୀ ଫାନ୍ଦେ,
ଆଉ କାହା ଆଶେ　　　ପ୍ରାଣ ରଖିଥିବା
ଏହା କହି ରାଧା କାନ୍ଦେ । ନା ଗୋ ସ୍ୱେ । ୩ ।

ବୋଲନ୍ତି ଦୂତିକା　　　ଶୁଣ ଠାକୁରାଣୀ
ବୁଦ୍ଧିଏ ପାଞ୍ଚିବ ମୁହିଁ,
ତେବେ ଯେବେ କାର୍ଯ୍ୟ　　　ସିଦ୍ଧ ନୋହିବଟି
ଅଗ୍ନିରେ ପଡ଼ିବା ତେଇଁ । ନା ଗୋ ସ୍ୱେ । ୪ ।

---

## ନବମ ଛାନ୍ଦ

୧ । ବେବସ୍ଥା—ବ୍ୟବସ୍ଥା, ଅବସ୍ଥା । ନିର୍ମାଖି—ନିରାଶ୍ରୟ । ଝୁରନ୍ତି—ଝୁରନ୍ତି, ଚିନ୍ତା କରୁ କରୁ ।

୨ । ଏକାନ୍ତେ—ଏକାନ୍ତରେ । ଉପାଏ—ଉପାୟ ।

୩ । ମୁରାରି—ଶ୍ରୀକୃଷ୍ଣ । ଚତୁରୀ—ଚତୁରୀ କୁବ୍ଜା । ଫାନ୍ଦେ—କବଳରେ । ଆଶେ—ଆଶାରେ ।

କନ୍ୟାସ୍ୱେ କନ୍ୟାସ୍ୱେ ଅଙ୍ଗୁ ଜାତ କରି
ପେଷିବା ତାଙ୍କୁ ଦ୍ୱାରକା,
ଉପାୟ୍ କରି ସେ କଢ଼ାଇ ଆଣିବେ
ମାୟାଙ୍କ ଦଶ ନା ଏକା । ନା ଗୋ ସ୍ୱେ । ୫ ।
ଏମନ୍ତ ବୋଲି କର୍ପୂରି ଅଙ୍ଗୁ ତୋଳି
ଦଳ ଗଢ଼ିଲେ ପିତୁଳା
ଆଗେ ଉଭା କରି ଜୀବନ୍ୟାସ କଲେ
ଚନ୍ଦ୍ର ଆପ ଆତ୍ମକଳା । ନା ଗୋ ସ୍ୱେ । ୬ ।
ପ୍ରଥମେଣ କୃଷ୍ଣ ବୀଜ ଉଚ୍ଚାରିଲେ
ସ୍ୱନାମ ଚତୁର୍ଥ ଭରି,
ଛାୟା ମାୟା ମେଳି ମନ୍ତ୍ର ଅଷ୍ଟାକ୍ଷରି
ପଢ଼ିଲେ ପୁଷ୍ପେକ ଧରି । ନା ଗୋ ସ୍ୱେ । ୭ ।
ବାମ ନାସା ଦ୍ୱାରେ ଜନ୍ମିଣ କୁମାରୀ
ପୁଷ୍ପେ ବଜେ କଲ ଆସି,
ସେ ପୁଷ୍ପେ ପିତୁଳା ହୃଦପଦ୍ମେ ଭରି
ପୂଜାକଲେ ରୂପରାଶି । ନା ଗୋ ସ୍ୱେ । ୮ ।
ଋଷି ସ୍ୱନାମ ବନ୍ଧନ ଲଜ୍ଜା ଦେଇ
କୈରବ ଧରି ରାଧିକା,
ସେହି ପ୍ରକାରେ କନ୍ୟାଏ ଜାତ କଲେ
ସକଳ ଗୁଣେ ଅଧିକା । ନା ଗୋ ସ୍ୱେ । ୯ ।

---

୫ । କନ୍ୟାସ୍ୱେ କନ୍ୟାସ୍ୱେ—ଗୋଟିଏ ଗୋଟିଏ କନ୍ୟା । କଢ଼ାଇ ଆଣିବେ—ବାଟ କଢ଼ାଇ ଆଣିବେ । ନାଏକା—ନାୟିକା

୬ । ଅଙ୍ଗୁ ତୋଳି—ଅଙ୍ଗରୁ ଝାଡ଼ି । ପିତୁଳା—କୁଣ୍ଢେଇ । ଉଭାକରି—ଠିଆ କରି । ଜୀବନ୍ୟାସ—ଜୀବଦାନ । ଆପ—ନିଜ ।

୭ । ପ୍ରଥମେଣ—ପ୍ରଥମେ । ବୀଜ—ବୀଜମନ୍ତ୍ର । ଛାୟାମାୟା—ଛାୟାରୂପୀ ମାୟା । ପୁଷ୍ପେକ—ଫୁଲଟିଏ ।

୯ । ସ୍ୱନାମବନ୍ଧନ—ନିଜନାମ ବନ୍ଧନକାରିଣୀ । କୈରବ—କୁମୁଦ ।

ଏହି ଅନରୂପେ        ଆଜ ଅଷ୍ଟସଖୀ
ଜାତ କଲେ ଅଷ୍ଟନାରୀ,
ଯେ ଯାର ଆସ୍ଥରେ        ଚଞ୍ଚ ଉପସ୍ଥରେ
ପୂଜିଲେ ମନ୍ତ୍ର-କୁମାରୀ । ନା ଗୋ ସ୍ୱେ । ୧୦ ।

ଗନ୍ଧ ଚନ୍ଦନ        କର୍ପୂର ମୃଗମଦ
କୁଙ୍କୁମାଦ୍ୟ ଦେହେ ବନ୍ଧ,
ବିବିଧ ଗନ୍ଧେ        ଦଶ ଦିଗ ଆମୋଦ
ରୂପେ କାମକାନ୍ତା ମୋହି । ନା ଗୋ ସ୍ୱେ । ୧୧ ।

ପିଣ୍ଡେ ପ୍ରାଣ ପାଇ        ମୂର୍ତ୍ତିବନ୍ତ ହୋଇ
କହେ କରପଦ ଯୋଡ଼ି
ମୁଖ ତୋଳ ଆଜ୍ଞା        ହୋଉ ଠାକୁରାଣୀ
କି କାର୍ଯ୍ୟେ ଆମ୍ଭଙ୍କୁ ଲୋଡ଼ି । ନା ଗୋ ସ୍ୱେ । ୧୨ ।

ବୋଲନ୍ତି ରାଧା        ଶୁଣ ମନ୍ତ୍ର କୁମାରି
ଚଳ ଗୋ ତୁମ୍ଭେ ଦ୍ୱାରକା,
ପ୍ରଭୁ ଆଗେ ଆମ୍ଭ        ଅବସ୍ଥା ରହିବା
ଗାୟେଣୀ ଗଣେ ନାୟିକା । ନା ଗୋ ସ୍ୱେ । ୧୩ ।

ଆଜ୍ଞା ପ୍ରମାଣେ        ଚଳିଲେ ମାୟାନାରୀ
ବିଚିତ୍ର ବେଶ ବନାଇ,
ଅନ୍ତରିକ୍ଷଗତ        ଦ୍ୱାରବତୀ ମିଳିଲେ
ପ୍ରଭୁଙ୍କ ସମ୍ମୁଖରେ ଯାଇ । ନା ଗୋ ସ୍ୱେ । ୧୪ ।

---

୧୦ । ଅନରୂପେ—ଅନୁରୂପେ ।

୧୧ । କାମକାନ୍ତା—କନ୍ଦର୍ପର ପତ୍ନୀ, ରତି ।

୧୩ । ଗାୟେଣୀ—ଗାୟିକା

୧୪ । ଅନ୍ତରିକ୍ଷ—ଅନ୍ତରୀକ୍ଷ ।

ଦେଖିଣ ଶ୍ରୀପତି ଉଲସିଲ ମନ
ଗାୟେଣୀଙ୍କ ରୂପ ଚାହିଁ,
ଏ ତ ମୋତେ ଗୋପୀ ପ୍ରାୟେକ ଦିଶନ୍ତି
କାହୁଁ ଅଇଲେ ଚଳାଇ । ନା ଗୋ ଯେ । ୧୫ ।

ରୁକ୍ମଣୀଙ୍କି ଚାହିଁ ଠାରଲେ ଗୋସାଇଁ
ଗାୟେଣୀଙ୍କି ରାଇ ପୁଚ୍ଛ,
ଶୁଣି ରୁକ୍ମଣୀ ହକାର ପଚ୍ଛରନ୍ତି
(ଆଗୋ) ତୁମ୍ଭେ କାହୁଁ ଆସିଅଛ । ନା ଗୋ ଯେ । ୧୬ ।

ନାମ ତୁମ୍ଭ କସ କ କାର୍ଯ୍ୟେ ଆସିଛ
କ କ ଗୁଣ ତୁମ୍ଭେ ବନ୍ଧ
ଶୁଣି ଗାୟେଣୀ ଅଳ୍ପ ହୋଇ ହସନ୍ତେ
ଲଗିଲ ସବୁନ୍ତ ମୋହ । ନା ଗୋ ଯେ । ୧୭ ।

ଶୁଣ ପାଟରାଣୀ ମୋ ନାମ ଅର୍ଦ୍ଧିମ୍ମା
ମାତା ମୋ ରାଧା ଗାୟେଣୀ
ଦୂଜା ଗାୟେଣୀ ଦୁହିତା ସହଚରୀ
ଏ ମୋର ସାନ ଭୟେଣୀ । ନା ଗୋ ଯେ । ୧୮ ।

ଆଉ ସାନ ମା ଚନ୍ଦ୍ରାବଳୀ ଗାୟେଣୀ
ଝିଅନାମ ଚନ୍ଦ୍ରମାଳା
ତା ତହୁଁ ସାନ ଗାୟେଣୀ ଚକ୍ରରେଖା
ନନ୍ଦମା ତା ଚକ୍ରଶାଳା । ନା ଗୋ ଯେ । ୧୯ ।

---

୧୫ । ଉଲସିଲ—ଉଲ୍ଲସିତ ହେଲ ।

୧୬ । ରାଇ—ଡ଼ାକ । ହକାର· · ଡାକ ।

୧୮ । ଭୟେଣୀ—ଭଉଣୀ ।

୧୯ । ନନ୍ଦମା—କନ୍ୟା ।

ଆଉ ସହଚରଣୀ          ଚନ୍ଦ୍ରାବଳୀ ନାମ
ଝିଅ ନାମ ଚନ୍ଦ୍ରବର୍ମ୍ମା,
ମଦନା ସୁନ୍ଦରୀ          ଦୁର୍ବ୍ବୃତା ମଦନା
ମଦନେ ଉନ୍ନତ ପ୍ରଭା । ନା ଗୋ ସ୍ୱେ । ୨୦ ।
ଶାମ୍ଭା ଗାୟେଣୀ          ନନ୍ଦନୀ ଏ ଶ୍ରୀମତୀ
ମଧୁମତୀ ଝିଅ ମେଧା,
ଶଶିରେଖା ତହୁଁ          ଶଶିପ୍ରଭା ଜାତ
ହରପ୍ରିୟାରୁ ହରଦ୍ୱା । ସେ ଗୋ ସ୍ୱେ । ୨୧ ।
ଆମ୍ଭ ପିତାଙ୍କର          ଏ ଦଶ ଉତ୍ତରେ
ଅଛନ୍ତି ବହୁ ବନିତା,
ମୋର ଜନନୀଙ୍କି          ଠାକୁରାଣୀ-ପଣେ
ସେବନ୍ତି ସର୍ବ ସାବତା । ନା ଗୋ ସ୍ୱେ । ୨୨ ।
ତୁମ୍ଭେ ଯେମନ୍ତେ          ସର୍ବରାଣୀ ଉପରେ
ଠାକୁରାଣୀ ପଣେ ଶ୍ରେଷ୍ଠ,
ଆମ୍ଭ ମାତା ସର୍ବ-          ସାବତା ଉପରେ
ମୂର୍ଦ୍ଧନ-ମଣିମୁକୁଟ । ନା ଗୋ ସ୍ୱେ । ୨୩ ।
ସହଚରୀ ମାତା          ଦୂତିକା ଗାୟେଣୀ
ମୋର ଜନନୀର ସଖୀ,
ଏ ଅଷ୍ଟ କୁମାରୀଙ୍କ          ମାତା ଉପରେ
ଆଉ ଅଷ୍ଟ ଶ୍ରେଷ୍ଠ ଲେଖି । ନା ଗୋ ସ୍ୱେ । ୨୪ ।
ଏ ଦୁଇ ଅଷ୍ଟ          ଅଧିଷ୍ଠାୟେ ଗାୟେଣୀ
ଜଣକେ ସହସ୍ର ପତି,
ଏମନ୍ତେ ଷୋଳ-          ସହସ୍ର ଅନୁଗାୟେଣୀ
ଷୋଳସହସ୍ରଲେ ଗାବନ୍ତି । ନା ଗୋ ସ୍ୱେ । ୨୫ ।

---

୨୦ । ସପତ୍ନୀ—ସହଚରୁଣୀ । ଉନ୍ନତପ୍ରଭା—ଉନ୍ନତ ଗୁଣଯୁକ୍ତା ।
୨୨ । ଉତ୍ତରେ—ପରେ । ବନିତା—ଅନୁରକ୍ତା ସ୍ତ୍ରୀ । ସାବତା—ସାବତମା ଆମ୍ଭମାନେ ।
୨୩ । ମୂର୍ଦ୍ଧନ ମଣି ମୁକୁଟ—ସର୍ବଶିରୋମଣି ।
୨୫ । ଅଧିଷ୍ଠାୟେ—ଅଧିଷ୍ଠାତ୍ରୀ ।

ଏହି ପ୍ରକାରେ ଯୂଥ    ଯୂଥ ଗାୟେନ୍ଦ୍ରୀ
କହିଲେ ସରବ ନାହିଁ,
ଏହାଙ୍କ ପ୍ରସନ୍ନେ    ସିଦ୍ଧ ସରସ୍ୱତୀ
ବସ୍ତୁଙ୍କୁ ପାଇଲେ ମୋହି । ନା ଗୋ ସ୍ୱେ । ୨୬ ।

ତାଙ୍କୁ ସେବା କରି    ସ୍ୱର୍ଗ ବିଦ୍ୟାଧରୀ
ଶିଖିଲେ ଗାନ୍ଧାର ବିଦ୍ୟା,
ନୃତ୍ୟ ଗୀତ ରସେ    ଇନ୍ଦ୍ରଙ୍କୁ ମୋହିଲେ
ବଢ଼ାଇଲେ ସ୍ୱର୍ଗେ ଶ୍ରଦ୍ଧା । ନା ଗୋ ସ୍ୱେ । ୨୭ ।

ରୁକ୍ମଣୀ ବୋଇଲେ    ସବୁ କହିଲନି
ରଖିଲ ଦୁଇଟି କଥା,
ସ୍ଥାନ ନାମ ପିତା    ନାମ ଗୋପ୍ୟ କଲ
ଏ ତୁମ୍ଭ କଉଁ ବେବସ୍ଥା । ନା ଗୋ ସ୍ୱେ । ୨୮ ।

ବୋଲନ୍ତି କୁମାରୀ    ଶୁଣ ମହାଦେଈ
ଯାହା ପଚ୍ଛରିଲ ତୁମ୍ଭେ,
ପିତାଙ୍କ ଗୁଡ଼ ପଳା-    ଇଲା ବେଳକୁ
ମାତା ଗର୍ଭେ ଥିଲୁ ଆମ୍ଭେ । ନା ଗୋ ସ୍ୱେ । ୨୯ ।

ଥଏ କରି ନାମ    ପଚ୍ଛରି ନପାରୁ
ମାୟେ ନ କହନ୍ତି ଯାତ,
ଆନ ବୃତ୍ତାନ୍ତ ତୁମ୍ଭେ    ଯାହା ପୁଚ୍ଛିଲ
ଆମ୍ଭର କ ଥଏ ଅଛି । ନା ଗୋ ସ୍ୱେ । ୩୦ ।

---

୨୬ । ଯୂଥଯୂଥ—ଦଳଦଳ ।

୨୭ । ବିଦ୍ୟାଧରୀ—ଗନ୍ଧର୍ବ ନାରୀ । ଗାନ୍ଧାର ବିଦ୍ୟା—ସ୍ୱରଗ୍ରାମ ବିଦ୍ୟା, ସଙ୍ଗୀତ ବିଦ୍ୟା ।

୨୮ । ଗୋପ୍ୟକଲ—ଗୋପନ ରଖିଲ ।

୩୦ । ଥଏକରି—ସ୍ଥିର କରି । ମାୟେ—ମାଆ । ଯାତ—ବଳେବଳେ । ଆନ ବୃତ୍ତାନ୍ତ—ସ୍ଥାନ କଥା । ପୁଚ୍ଛିଲ—ପଚ୍ଛରିଲ । ଥଏ—ସ୍ଥିର ।

ଯମୁନା ତଟେ ବୃନ୍ଦାବନ ନିକଟେ
ଗୋପ ବୋଲି ପାଟଣା ସ୍ୱେ,
ସେ ସ୍ଥାନେ ପକାଇ ପିତା ପଳାଇଲେ
ଦାରୁଣ ଏତେକ ନିର୍ଦ୍ଦ ସ୍ୱେ । ନା ଗୋ ସ୍ୱେ । ୩୧ ।

ମାତାମାନେ ତାଙ୍କୁ ଝୁରି ଝୁରି କ୍ଷୀନ
ନ ପାରନ୍ତି ଗାଇ ବାଇ,
ଧର୍ମ କରି ଗୋପେ ଗୋଆଳେ ପୋଷନ୍ତି
ମନରେ ସୁହୃଦେ ନାହିଁ । ନା ଗୋ ସ୍ୱେ । ୩୨ ।

ତୁମ୍ଭର ଦାନପଣେ ଡାକ ବାଜଇ
ଶୁଣି ପେଷି ଦେଲେ ମାସ୍ୱେ;
ଆମ୍ଭ ନୃତ୍ୟ ଗୀତ ଦେଖି ଦାନ ଦେବ
ଜଣାଅ ରଜାଙ୍କ ଠାସ୍ୱେ । ନା ଗୋ ସ୍ୱେ । ୩୩ ।

ଶୁଣି ରୁକ୍ମଣୀ ସର୍ବ ସଖୀମାନଙ୍କୁ
ଚାହିଁ ସ୍ତମ୍ଭୀଭୂତ ହୋଇ,
ପ୍ରଭୁ ବୋଇଲେ କେ କେ କେ ନୃତ୍ୟଗୀତ-
ବଦ୍ୟାରେ କୁଶଳ ତୁହି । ନା ଗୋ ସ୍ୱେ । ୩୪ ।

ଗାସ୍ୱେଣୀ ବୋଇଲେ ଶୁଣ ମହାରଜା
ସବୁ ନୃତ୍ୟ ଆମ୍ଭେ ଜାଣୁ,
କନାଇ ରାଧିକା ନୃତ୍ୟ ଗୀତ ବିନୁ
ଆବର ନାଟ ନ ମଣୁ । ରଜନ ହେ । ୩୫ ।

---

୩୧ । ତଟେ—ତୀରରେ । ପାଟଣାସ୍ୱେ—ଏକ ନଗର ।

୩୨ । କ୍ଷୀନ—କ୍ଷୀଣ । ବାଇ—ବଜାଇ । ଗୋଆଳେ—ଗୋପାଳମାନେ । ସୁହୃଦେ—ସହୃଦସ୍ୱତା, ସରଗ ।

୩୩ । ଡାକ ବାଜଇ—ପ୍ରସ୍ତରତ ହୁଏ । ପେଷିଦେଲେ—ପଠାଇଦେଲେ । ଠାସ୍ୱେ—ଠାବରେ, ପାଖରେ ।

୩୫ । କନାଇ—କୃଷ୍ଣ, କହ୍ନାଇ । ଆବର—ଅନ୍ୟ ।

ଯେତେ ବୋଲି ପଦ୍ୟ- ପ୍ରବନ୍ଧେ କୁମାରୀ
ରଞ୍ଚିଲେ ବିବିଧ ବେଶ,
ଅର୍ଦ୍ଧମା କ ରାଧା ରୂପେ ସଜ କରି
ଆରମ୍ଭିଲେ ନୃତ୍ୟ ରସ । ନା ଗୋ ସ୍ୱେ । ୩୬ ।

ତାଳ ମର୍ଦ୍ଦଳ ରବା ଯନ୍ତ୍ର ବଜାଇ
ଗାଇଲେ ସୁସ୍ୱରେ ଗୀତ,
ଗୀତ ତୁହାଇ ଜଗନ୍ନାଥେ ବୋଇଲେ
ନୋହିଲା ପ୍ରବନ୍ଧ ନୃତ୍ୟ । ନା ଗୋ ସ୍ୱେ । ୩୭ ।

ରାଧିକା ରଞ୍ଚି କହ୍ନାଇ ନ ରଞ୍ଚିଲା
ଏ କଉଁ ନୃତ୍ୟର ସୁଖ ।
ଗାୟେଣୀ ବୋଇଲେ କହ୍ନାଇ ରାଧିକା
ସହଜେ ବିଚ୍ଛେଦ ଦୁଃଖ । ରାଜନ ହେ । ୩୮ ।

ପୂର୍ବେ ସେ ନୃତ୍ୟ- ପ୍ରବନ୍ଧ ମାନ ଥିଲା
ଏବେ ସେ ସୁଖ କାହିଁଛି,
ଆମ୍ଭ ପିତା ମାତା ପ୍ରାୟେକ ହୋଇଣ
ତାଙ୍କ ବିଚ୍ଛେଦ ହୋଇଛି । ରାଜନ ହେ । ୩୯ ।

ତେଣୁ କେବଳ ପୂର୍ବ ସୁଖ ସୁମରି
ପ୍ରଥମେ ରଞ୍ଚିଲୁ ଏହା,
କହ୍ନାଇ ରାଧିକା ବିଚ୍ଛେଦ ପ୍ରବନ୍ଧ
ଏଣିକି ରଞ୍ଚିବୁ ତାହା । ରାଜନ ହେ । ୪୦ ।

---

୩୬ । ପଦ୍ୟପ୍ରବନ୍ଧେ—ପଦ୍ୟ ପ୍ରସଙ୍ଗରେ । ରଞ୍ଚିଲେ—ରଚନା କଲେ ।

୩୭ । ରବା—ଏକପ୍ରକାର ବାଦ୍ୟଯନ୍ତ୍ର । ତୁହାଇ—ବନ୍ଦ କରି । ପ୍ରବନ୍ଧ ନୃତ୍ୟ — ବିଷୟାନୁସାରି, ଯଥାର୍ଥ ।

୩୯ । କାହିଁଛି—କେଉଁଠାରେ ଅଛି ଅର୍ଥାତ୍ ନାହିଁ ।

୪୦ । ବିଚ୍ଛେଦ ପ୍ରବନ୍ଧ—ବିଚ୍ଛେଦ ପ୍ରସଙ୍ଗ ।

ହସ୍ତ ଦେଖିବା ବୋଲି ପ୍ରଭୁ ବୋଇଲେ
ଅର୍ଦ୍ଧିମା ରଞ୍ଜିଲ ନୃତ୍ୟ,
ଚିବୁକେ ତର୍ଜନୀ କଟି କରେ ଦେଇ
ଭ୍ରମିଲ ଚକ୍ର ଯେମନ୍ତ । ନା ଗୋ ସ୍ୱେ । ୪୧ ।

ବଚନ ଗତି ଆଉ ଚିତ୍ତ ମ:ଶଣ
ଗଗନେ ପଶିଲ ଯାଇଁ
ବଜୁଳ ବେଗେ ଆକାଶୁଁ ଝସି ଅ.ସି
ପାଦ ଝମକିଲ ଭୂଇଁ । ନା ଗୋ ସ୍ୱେ । ୪୨ ।

ଗାବନ୍ତି ବାବନ୍ତି ପଡନ୍ତି ଜଡ଼ନ୍ତି
ନାଚନ୍ତି କାଛନ୍ତି ଛଟା,
ସଜନୀ ବୋଇଲେ ଏତେବେଳେ ସଖି
ବିଚ୍ଛେଦ ପ୍ରବନ୍ଧ ଭେଟ । ନା ଗୋ ସ୍ୱେ । ୪୩ ।

ଗାଇଲେ ଗାୟେଣୀ ବଚନ କାହାଣୀ
ଗୋପପୁର କଥା ମାନ,
କୃଷ୍ଣ ଗଲ ଦିନୁଁ ସମସ୍ତେ ନିର୍ମୋଖୀ
ଭାନ୍ତୁ ନ ସରଇ ଦିନ । ନା ଗୋ ସ୍ୱେ । ୪୪ ।

ଅଧିଗ୍ରାମ ବନେ ବୃଷଭାନୁ ଘର
ବିବିଧ ରତ୍ନେ ଘଟଣ,
ନନ୍ଦୀଶ୍ୱର ବନେ ନନ୍ଦ ରତ୍ନ ପୁର
ଭାଜିହେଲ ରଣଭଣ । ଦଇବ ହେ । ୪୫ ।

---

୪୧ । ତର୍ଜନୀ—ଆଙ୍ଗୁଠି । କଟିକରେ ଦେଇ—ଅଣ୍ଟାରେ ହାତରଖି । ଚକ୍ରଯେମନ୍ତ—ଚକ୍ର ଯେପରି ବୁଲେ ।

୪୨ । ବେଗ୍ରେ—ବେଗରେ । ଝମକିଲ—ଝମ ଝମ ଶବ୍ଦ ସୃଷ୍ଟି କଲ ।

୪୩ । ଗାବନ୍ତି—ଗାଆନ୍ତି । ବଜାନ୍ତି—ବାଦ୍ୟ ବଜାନ୍ତି । ଜଡ଼ନ୍ତି—ଜଡ଼ାପଡ଼ି ହୁଅନ୍ତି । କାଛନ୍ତି ଛଟା—ଛଟା ଦେଖାନ୍ତି । ବିଚ୍ଛେଦ ପ୍ରବନ୍ଧ—ବିଚ୍ଛେଦ ପ୍ରସଙ୍ଗ । ଭେଟ—ଦେଖାଅ ।

୪୫ । ଘଟଣ—ସୁନ୍ଦର । ଭାଜି—ଭାଙ୍ଗିଯାଇ । ରଣଭଣ—ଇତସ୍ତତଃ ।

ପଟା ମଣ୍ଡୋଇଁ     ଦୁମୁ ଦୁମୁ ଭଜନ୍ତ
ଭଜନ୍ତ ନାଟ ମନ୍ଦର,
ଭଦ୍ର ଚଉପାଢ଼ି     ଉପୁଡ଼ି ପଡ଼ନ୍ତି
ଝଡ଼ନ୍ତ ଅଟ୍ଟାଳିପୁର । ଦଇବ ହେ । ୪୬ ।

କ୍ରୌଞ୍ଚ ଗବାକ୍ଷ     ମେଘନାଦ ଭାଜିଲା
ଭାଜିଲା ଜନ୍ତ୍ର ମଣ୍ଡୋଇ,
ଚନ୍ଦ୍ର ମଣ୍ଡଳ ପୁର     ଝଡ଼ି ପଡ଼ିଲା
ଦେଖିଲେ ଡର ମାରଇ । ଦଇବ ହେ । ୪୭ ।

ଜଗଣ୍ଡି ଘର ମାନ     ରନ୍ନ ମନ୍ଦର
ବ୍ରହ୍ମପୁର ଗଲା ଝଡ଼ି,
ବଜ୍ରାଧ ରନ୍ନ     ପାଷାଣ ପାଲଟିଲେ
ଯେ ଯଉଁ ଠାବରେ ପଡ଼ି । ଦଇବ ହେ । ୪୮ ।

ମୁକ୍ତାବନ୍ଧ ପୁର     ନକ୍ଷତ୍ର ପ୍ରାୟେକ
ଗଗନେ ସମ୍ଭାଇ ଗଲେ,
ଗୋପ ଲୋକ ଶୋକ     କହୁଁ ନ ସରଇ
ଏଡ଼େ କର୍ମ ହର କଲେ । ଦଇବ ହେ । ୪୯ ।

---

୪୬ । ପଟାମଣ୍ଡୋଇ—ପଟ୍ଟମଣ୍ଡପ । ଭଦ୍ରଚଉପାଢ଼ି—ଖୋଲାମଣ୍ଡପ ।

୪୭ । କ୍ରୌଞ୍ଚ ଗବାକ୍ଷ – କ୍ରୌଞ୍ଚପକ୍ଷୀ ଆକୃତି ବିଶିଷ୍ଟ ଝରକା । ମେଘନାଦ—ମେଘନାଦ ପାଚେରି । ମଣ୍ଡୋଇ—ମଣ୍ଡପ । ଚନ୍ଦ୍ରମଣ୍ଡଳଙ୍କ ପୁର—ଚନ୍ଦ୍ରମଣ୍ଡଳ ସଦୃଶ ଉଜ୍ଜ୍ୱଳ ପୁର ।

୪୮ । ଜଗଣ୍ଡିଘର—ଚନ୍ଦ୍ରଶାଳାପୁର । ନୀଳରନ୍ନ ମନ୍ଦର—ନୀଳରନ୍ନ ଖଚିତ ମନ୍ଦର । ବ୍ରହ୍ମପୁର—ବ୍ରହ୍ମାଙ୍କ ବାସସ୍ଥାନ । ପାଷାଣ—ପଥର । ଠାବର—ସ୍ଥାନରେ ।

୪୯ । ମୁକ୍ତା ବନ୍ଧପୁର—ମୁକ୍ତା ଝଟିତ ପୁର । ସମ୍ଭାଇ ଗଲେ— ମିଳାଇ ଗଲେ ।

ସୂର୍ଯ୍ୟକାନ୍ତ ପୁର  ଉଜୁଡ଼ା ନବଇ
ଅବାତ୍ୟେ ପଡ଼ିଲା ଘାଟି,
ଗୁଣନିଧି ପୁର  ମଦନ ମନ୍ଦିର
କେବଳ ଅଛି ଆଉଜି । ଦଇବ ହେ । ୫୦ ।

ସ୍ନାନେ ନ ପଶନ୍ତି  କେଶ ନ ବାନ୍ଧନ୍ତି
ନ ପିନ୍ଧନ୍ତି ଝୀନବାସ,
ନ ରାନ୍ଧନ୍ତି ଅନ୍ନ  ନ ରୁଚେ ଭୋଜନ
ତେଜିଲେ ଜୀବନ ଆଶ । ଦଇବ ହେ । ୫୧ ।

କେବଳ ଆସିବା  ପ୍ରତିଆଶା ଥିଲା
ଯିବାବେଳେ କହିଥିଲେ,
ଦ୍ୱାରକା ରାଜତ୍ୱ  ବାରତା ପାଇଣ
ନିରାଶ ହୋଇ ରହିଲେ । ଦଇବ ହେ । ୫୨ ।

ବସୁରିଲେ ନନ୍ଦ  ନୃପଭୋଗ ତେଜି
ସୁରଭି ରଖିବେ ଆସି,
ଦେବ ଋଷି ସଙ୍ଗ  ସଙ୍ଗ ତେଜି କି ସେ
ବରଜ ସଭାରେ ବସି । ଦଇବ ହେ । ୫୩ ।

ନିରନ୍ତରେ ଗୋପ  କୁମାରେ କାନ୍ଦନ୍ତି
ତରୁ ଲତା ଗଣ ଶୁଖି,
ସୁରଭି ବୃନ୍ଦହିଁ  ତୃଣ ନ ଚରନ୍ତି
ନ ଦିଅନ୍ତି କ୍ଷୀର ଦୁହାଁଇ । ଦଇବ ହେ । ୫୪ ।

---

୫୦ । ସୂର୍ଯ୍ୟକାନ୍ତ ପୁର—ସୂର୍ଯ୍ୟ କିରଣ ସଦୃଶ ଉଜ୍ଜ୍ୱଳ ପୁର । ଅବାତ୍ୟେ—ବନ୍ୟା ପବନରେ । ଗୁଣନିଧିପୁର ମଦନ ମନ୍ଦିର—ଗୋପପୁରର ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କର କେଳି ମନ୍ଦିର ।

୫୩ । ନୃପଭୋଗ—ରାଜଐଶ୍ୱର୍ଯ୍ୟ । ସୁରଭି—ଧେନୁ । ବରଜ—ଗୋପାଳ ।

୫୪ । ନିରନ୍ତରେ—ସବୁବେଳେ । ତୃଣ—ଘାସ ।

ଗୋପୀମାନେ ଘର ହେଲେ ମୋହଭର
କାହିଁ ନ ପାରନ୍ତି ରହି,
କ୍ଷଣେ କ୍ଷଣେ ଘୋର ଅରଣ୍ୟେ ପଶନ୍ତି
ଯେସନେ ଭୁଲନ୍ତି ବାଇ । ଦଇବ ହେ । ୫୫ ।

ତରୁ ଲତା ଯହିଁ ବେଦନ କରନ୍ତି
ହାଁ କୃଷ୍ଣ ହାଁ କୃଷ୍ଣ ବୋଲି,
କ୍ରୀଡ଼ା ସ୍ଥାନ ଯହିଁ ଝଠନ୍ତି ବୋବାଇ
ଅଛୁ କି ହେ ବନମାଳୀ । ଦଇବ ହେ । ୫୬ ।

ନାହିଁତ ବୋଲି ମସ୍ତକେ କରମାରି
ପଡ଼ନ୍ତି ଜଗ୍ଭଡ଼ ହୋଇ,
ଧାଇଁ ଦେଇ ସଖୀ କୋଳ କରି ଧରି
ସେହି ଉଠଇ ବୋବାଇ । ଦଇବ ହେ । ୫୭ ।

ଛାଡ଼ ଛାଡ଼ ସଖି ମୁଁ ବଡ଼ ନିର୍ମାଖୀ
କେ ମୋତେ ଲୋଡ଼ନ୍ତା ଅଛି,
ଯେ ମୋତେ ରଖିବ ଜାଣୁ କି ସଙ୍ଗାତ
କଉଁବନେ ଲୁଚିଅଛି । ଦଇବ ହେ । ୫୮ ।

ତୋତେ ଭଳିବୁ କି ମୋତେ ସମ୍ଭାଳିବୁ
ଛାଡ଼ିମେଲ ମୋର ଆଶ,
ପାରିଲେ ଯାଇଁ ରାଧାକୁ ସମ୍ଭାଳ, ଯା
ନକ ହୋନ୍ତ ପ୍ରାଣ ନାଶ । ଦଇବ ହେ । ୫୯ ।

---

୫୫ । ମୋହଭର—ମୋହଗ୍ରସ୍ତ । ବାଇ—ପାଗଳ । ବନମାଳୀ—ଶ୍ରୀକୃଷ୍ଣ ।

୫୭ । କ୍ରୀଡ଼ା ସ୍ଥାନ—କେଳି ସ୍ଥାନ । ବୋବାଇ—କାନ୍ଦ ।

୫୮ । ଲୋଡ଼ନ୍ତା—ଖୋଜିବା ଲୋକ ।

୫୯ । ଭଳିବୁ—ଚିନ୍ତା କରିବୁ । ଛାଡ଼ିମେଲ—ଛାଡ଼ିଦଅ ।

ସର୍ବାଙ୍କ ସମ୍ଭାଳି ଆସନ୍ତେ ସଜନୀ
ଯମୁନା-ପୁଳିନ-ବନେ,
ଦେଖିଲେ ରାଧିକା ଏକାନ୍ତେ ଭଳନ୍ତି
ବସିଣ କେଳି ସଦନେ । ଦଇବ ହେ । ୬୦ ।
ଖୋଜି ଖୋଜି ବନେ ଶରଦ ସୁନ୍ଦରୀ
ହେହ୍ନି ମିଳିଗଲି ଆସି,
ସଖୀ ମୁଖ ଚୁମ୍ବି ଲୋଚକ ବହଇ
ଶଶୀ କି ସୁଧା ବରଷି । ଦଇବ ହେ । ୬୧ ।
ଯେ ଯେଉଁଣେ ଥିଲେ ଯୁବତୀଯୂଥ ଆସି
ବେଢ଼ି ବସିଲେ ପାରୁଶ,
ହା କୃଷ୍ଣ ହା କୃଷ୍ଣ ବୋଲି ସର୍ବ ସଖୀ
ମୁଖେ କଲେ ଉଚ୍ଚ ଘୋଷ । ଦଇବ ହେ । ୬୨ ।
ରାଧାରମଣ ଅର- ବିନ୍ଦ ଚରଣ
ବିନୁ ନୋହେ ଆନ ଗତି ।
ମନ ଲୋଚନ ଜ୍ଞାନେ ଦେବ ଚିନ୍ତଇ
ବୃଷଭାନୁ-ସୁତା-ପତି । ଦଇବ ହେ । ୬୩ ।

ଇତିଶ୍ରୀ ରହସ୍ୟମଞ୍ଜରୀ ନବମ ଛାନ୍ଦେ,
ଦ୍ୱାରକାମଣ୍ଡଳେ ନୃତ୍ୟ ଗୀତ ବନ୍ଦେ,
ଦଶମଛାନ୍ଦ ବର୍ଣ୍ଣନେ କେବଣ କେବଣ ବଚନ
କହିବାକୁ ଆଜ୍ଞା ହେଉ ଅନାଦି ଅଚ୍ୟୁତ ।

---

୬୦ । ଯମୁନାପୁଳିନ ବନ—ଯମୁନାକୂଳ ବନ । କେଳିସଦନ—କେଳିମନ୍ଦିର ।
୬୧ । ଶଶୀ—ଚନ୍ଦ୍ର । ସୁଧା—ଅମୃତ ।
୬୨ । ଯୁବତୀଯୂଥ—ଯୁବତୀଦଳ । ଉଚ୍ଚଘୋଷ—ଉଚ୍ଚଶବ୍ଦ ।
୬୩ । ରାଧାରମଣ—ରାଧାପତି ଶ୍ରୀକୃଷ୍ଣ । ଅରବିନ୍ଦଚରଣ—ପଦ୍ମପାଦ । ବୃଷଭାନୁ ସୁତ ପତି—ବୃଷଭାନୁ କନ୍ୟା ଶ୍ରୀରାଧାଙ୍କର ପତି ।

—*—

## ଦଶମ ଛାନ୍ଦ

ଛାନ୍ଦ ଝମ୍ପା, ଚକ୍ରାଭଣା ବାଣୀରେ ଗାଇବ ।

ରାଗ—ମହ୍ଲାର

ଚରଣ ଅରୁଣ ରାଜେ,
(ଚନ୍ଦ୍ରି) କନକ ନୂପୁର ସାଜେ
କଟି କିଙ୍କିଣି-ଘଣ୍ଟି ଠଣରଣ କଙ୍କଣ ଝଙ୍କ ବାଜେ ।
(ଗୋ) ସଖି ତୁ ଯାଉ କ ନା
କନାଇ ପ୍ରାଣକୁ ଯାଉ କ ନା
ରତନ ବସନ ହାର କଙ୍କଣ ଯାହା ମାଗୁ ଚାହା ନଉ କ ନା ।୧।

ସଜଳ ଜଳଦ କାନ୍ତି,
ନୀଳମଣି ଜିଣି ଭାନ୍ତି,
ଅମଳ କମଳ ମୁଖ ମଞ୍ଜୁଳ ଅଳକ ଅଳକାପନ୍ତି,
ଗୋ ଦୂତି ତୁ ଯାଉ କନା ।୨।

---

## ଦଶମ ଛାନ୍ଦ

୧ । ଚରଣ ଅରୁଣ—ଚରଣ ରୂପକ ବାଳସୂର୍ଯ୍ୟ, ଅର୍ଥାତ୍ ଅରୁଣ ବର୍ଣ୍ଣର ପାଦ । ରାଜେ—ଶୋଭାପାଏ । କନକ ନୂପୁର—ସୁନାର ପାଦ ଅଳଙ୍କାର । କଟି-କିଙ୍କିଣି ଘଣ୍ଟି—କଟିରେ ପିନ୍ଧିଥିବା କିଙ୍କିଣିର ଘଣ୍ଟି । ଠଣରଣ—ଠଣଠଣ । କଙ୍କଣ—ହାତରେ ଥିବା ଖଡ଼ୁ । ଝଙ୍କ—ସମୂହ ।

୨ । କନାଇ—କହ୍ନାଇ । ସଜଳ ଜଳଦ କାନ୍ତି—ନୀଳମେଘକାନ୍ତି । ଭାନ୍ତି—ଶୋଭା । ଅମଳ—ଅମଳିନ । କମଳ ମୁଖ—ମୁଖପଦ୍ମ । ମଞ୍ଜୁଳ ସୁନ୍ଦର ଅଳି—ଭ୍ରମର । ଅଳକାପନ୍ତି—ଚୂର୍ଣ୍ଣକୁନ୍ତଳ ।

ଅରୁଣ ଅଧର ରାଜେ,
ମୁରଲୀ ମଧୁର ବାଜେ,
ନାସେ ମୋତିବର ଟେକେ କି ଶୁକ୍ର ଅଧରତଟରେ ବିରାଜେ,
ଗୋ ସଖି ତୁ ଯାଉ କନା ।୩।

ଭାଲେ ଚନ୍ଦନର ବିନ୍ଦୁ,
(ଗୋ) ନବଡ଼ ଜଳଦେ ଇନ୍ଦୁ,
ମଣ୍ଡିତ କୁଣ୍ଡଳ ଗଣ୍ଡମଣ୍ଡଳ ଚଣ୍ଡ କିରଣ ନିନ୍ଦୁ,
ଗୋ ଦୂତି ତୁ ଯାଉ କ ନା ।୪।

କୁଟିଳ କୁନ୍ତଳ ଚୂଳେ,
ରଞ୍ଜିତ ବିବିଧ ଫୁଲେ,
ବାମ୍ପେଁ ଝଲମଲ ମୟୂରପୁଚ୍ଛ ମତ୍ତ ମଧୁକର ଭୁଲେ,
ଗୋ ସଖି ତୁ ଯାଉ କ ନା ।୫।

ମୋତେ ସଜ କର ସଖି,
(ମୁଁ) କହ୍ନାଇଙ୍କ ଯିବ ଦେଖି,
ମୁରଲୀ ବଜାଇ ମନ୍ଦ ମନ୍ଦ କରି ଦୂରୁଁ ଠାରୁଥାଇଁ ଆଖି,
ଗୋ ଦୂତି ତୁ ଯାଉ କ ନା ।୬।

---

୩ । ଅରୁଣ ଅଧର—ଅରୁଣ ବର୍ଣ୍ଣର ଅଧର, ରଙ୍ଗ ଅଧର । ନାସେ—ନାକରେ । ମୋତିବର—ଶ୍ରେଷ୍ଠ ମୁକ୍ତା । ଶୁକ୍ର—ସନ୍ଧ୍ୟାତାରା ।

୪ । ଭାଲେ—କପାଳରେ । ନବଡ଼ଜଳଦେ—ଘନ କୃଷ୍ଣ ମେଘରେ । ଇନ୍ଦୁ—ଚନ୍ଦ୍ର । ଚଣ୍ଡକିରଣ—ସୂର୍ଯ୍ୟକିରଣ ।

୫ । କୁଟିଳ—କୁଞ୍ଚିତ । ରଞ୍ଜିତ—ସଜ୍ଜିତ । ବାମ୍ପେଁ—ବାମଭାଗରେ । ମତ୍ତ—ପାଗଳ । ମଧୁକର—ଭ୍ରମର ।

୬ । ମନ୍ଦ ମନ୍ଦ କରି—ଧୀର ଧୀର କରି । ଠାରୁଥାଇ ଆଖି—ଆଖିରେ ସଙ୍କେତ ଦେଉଥାଇ ।

ମୋର ଚରଣେ ଦଅ ପାହୁଡ଼,
(ମୁଁ) ବନେ କରୁଥିବ ଧାଉଡ଼,
ପାଦ ରୁଣ ଝୁଣ ଶବଦ ଶୁଣିଣ କହ୍ନାଇ ଆଡକୁ ବାହୁଡ଼ ।
ଗୋ ସଖି ତୁ ଯାଉ କନା ।୭।

ନେତ ପିନ୍ଧସ୍ଥା ମଣ୍ଡାପଡ଼ସ୍ଥା,
(ମୁଁ) କହ୍ନାଇଙ୍କ ଯିବାଲୋଡ଼ସ୍ଥା
ଖଞ୍ଜିକରେ ଚୂଡ଼ ଗୁଞ୍ଜରବନ୍ଧ ସମନାଥ ଗରଗଡ଼ସ୍ଥା,
ଗୋ ଦୂତି ତୁ ଯାଉ କ ନା ।୮।

କୁଶ ଦାମ ପରି ବନ୍ଦ,
(ମୋର) ବାହୁଟି ଉପରେ ବାନ୍ଧ,
ଶ୍ରବଣେ ଭର ମୋ ଝଲ୍କ ଚଲ ଫେରନ୍ତା ମୁକୁତା ବନ୍ଧ,
ଗୋ ସଖି ତୁ ଯାଉ କ ନା ।୯।

(ମୋର) ମୁକୁତା ପାଞ୍ଚ ଗୋଟିଆ,
(ଖଞ୍ଜିଦେ) ମୋର ନାସା ପୁଟିଆ,
(ମୋର କହ୍ନାଇ ପାଶକୁ ବାଜି ଯାଉଥିବ ଝମକ ଝମକ ଝୁଣ୍ଟିଆ,
ଗୋ ସଖି ତୁ ଯାଉ କ ନା ।୧୦।

---

୭ । ପାହୁଡ଼—ପାଦର ବଳା । କରୁଥିବ ଧାଉଡ଼—ଧାଉଁଥିବ । ଆହୁଡ଼ ବାହୁଡ—ଯିବା ଆସିବା, ଧାଁ ଦଉଡ଼, ଆକୁଳ ବ୍ୟାକୁଳ ।

୮ । ନେତ ପିନ୍ଧସ୍ଥା—ନେତ ପିନ୍ଧିଥିବା । ମଣ୍ଡାପଡ଼ସ୍ଥା—ଫୁଲରେ ମଣ୍ଡିତ ହୋଇଥିବା । ଲୋଡ଼ସ୍ଥା—ଲୋଡ଼ିବାକୁ,ଖୋଜିବାକୁ । ଗୁଞ୍ଜରବନ୍ଧ—ପଞ୍ଚଖଣ୍ଡ ସମନାଥ—ଲଗାଲଗି ହୋଇଥିବା । ଗରଗଡ଼ସ୍ଥା—ଆଗ ଖଡ଼ୁ ।

୯ । କୁଶଦାମ—ଜାଇଁଚର ଡେଉଁରିଆ । ବାହୁଟି—ବାହୁର ଅଳଙ୍କାର, ତାଗା । ଶ୍ରବଣେ—କାନରେ । ଝଲକ—କାନର ଅଳଙ୍କାର । ଫେରନ୍ତା ମୁକୁତା-ବନ୍ଧ—ମୁକୁତାର ଝରା ଲାଗିଥିବା ।

୧୦ । ଗୋଟିଆ—ଗଣ୍ଡିଆ । ନାସାପୁଟିଆ—ନାକପୁଡ଼ାରେ । ଝୁଣ୍ଟିଆ—ପାଦର ମୁଦ ।

ଏତେ କହି କରି ବାଳୀ,
ମୋହେଣ ପଡ଼ିଲା ଢଳି,
ଧାଇଁ ଧରି ସଖି ସେବନ କରନ୍ତି ଆଲଟ ଗୃହର ଢାଳି ।
ଗୋ ଦୂତି ତୁ । ୧୧ ।

ଗୋବିନ୍ଦ ଗୋବିନ୍ଦ ବାଦ୍ୟ,
ଗଗନେ ଉଚ୍ଛୁଳେ ନାଦ,
ଦେବ କହେ ପ୍ରଭୁ କେବେହେଁ ନୋହିବ ଗୋବିନ୍ଦଙ୍କ ବିଚ୍ଛେଦ । ୧୨ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଦଶମଗ୍ରନ୍ଥେ,
ରାଧିକା ପ୍ରଳାପ ଗୋପୀବିଳାପ ବନ୍ଧେ,
ଏକାଦଶ ଗ୍ରନ୍ଥ ବର୍ଣ୍ଣନେ କେବଣ କେବଣ ପ୍ରସ୍ତାବ,
କହିବାକୁ ଆଜ୍ଞାହେଉ ଶ୍ରୀମୁଖ ପ୍ରଭୁ ଆପ ।



---

୧ । ମୋହେଣ—ମୋହ ହୋଇ ।

# ଏକାଦଶ ଛାନ୍ଦ

ରାଗ-ମଙ୍ଗଳଧନାଶ୍ରୀ

ଏଥୁ ଅନନ୍ତରେ କୃଷ୍ଣ ଦ୍ୱାରକଣ୍ଟ ପୁରେ,
ରତ୍ନ ସିଂହାସନେ ବିଜେ ପଲଙ୍କ ଉପରେ । ୧ ।
ଯୁବଣ୍ଟ ସମୂହ ବେଢ଼ି ଅଛନ୍ତି ପାରୁଶେ,
ସମସ୍ତେ କେଳିଲେ ଗୀତ ବାଦ୍ୟ ନୃତ୍ୟରସେ । ୨ ।
ଗାୟେଣୀଙ୍କ ଗତ ଭ୍ରାନ୍ତି ଶୃଙ୍ଖୁଣ୍ଟ ତରଙ୍ଗ,
ଦେଖିଣ ନ ଟଳେ ମନ ଲୋଚନ ସେ ଅଙ୍ଗ । ୩ ।
କ୍ଷଣେ କ୍ଷଣେ ମୋହ ଯାଇ ଗଡ଼ନ୍ତି ମୁରାରି,
କ୍ଷଣେ କ୍ଷଣେ ଉଠି ଗାୟେଣୀଙ୍କି ତଲେ କରି । ୪ ।
ଗାବନ୍ତି ଗାୟେଣୀ ଯିସ ବାବନ୍ତି ସେ ଯାହା,
ହସ୍ତ ପାଦ ଙ୍କେନ ବାଣ୍ଟି ଦେଖାବନ୍ତି ତାହା । ୫ ।
ନୟନର ଭଙ୍ଗୀ ଦେଖି ହୃଦୟୁ କାତର,
କାଢନ୍ତି କାଛନ୍ତି ଛବ ବଚନ ଶ୍ରୁତୁର । ୬ ।
ତାଳ, ତାନ ମାନ ଢଞ୍ଚ ଘୋର ଏ ମୂର୍ଚ୍ଛନା,
ଉପାଙ୍ଗ ମର୍ଦ୍ଦଳ ସ୍ୱରମଣ୍ଡଳ ଏ ବୀଣା । ୭ ।
ପିନାକ ଅମୃଣ୍ଟ ରବା ଡମ୍ଫ ସେ ଦୋସରି,
ଝଙ୍କାର ଢଙ୍କାର ନାଦେ ବ୍ରହ୍ମାଣ୍ଡ ହିଁ ପୂରି । ୮ ।

---

## ଏକାଦଶ ଛାନ୍ଦ

୧ । ଦ୍ୱାରବଣ୍ଟପୁର—ଦ୍ୱାରକାପୁର ।
୩ । ଭ୍ରାନ୍ତି—ଶୋଭା ।
୪ । ତଲେ—ଲକ୍ଷ୍ୟ ।
୬ । କାଛନ୍ତି—ଆକାଙ୍କ୍ଷା କରନ୍ତି । ଶ୍ରୁତୁର—ଶ୍ରୁତୁରି ।
୮ । ପିନାକ—ଧନୁ ଆକୃତିର ସପ୍ତତନ୍ତ୍ର ବିଶିଷ୍ଟ ବାଦ୍ୟଯନ୍ତ୍ର । ଅମୃତ—ସ୍ୱରବାଦ୍ୟ ବିଶେଷ । ରବା—ସିତାର ପରି ବାଦ୍ୟଯନ୍ତ୍ର । ଡମ୍ଫ—ଢୋଲକ ଜାତୀୟ ବାଦ୍ୟ । ଦୋହରି—ଯୋଡ଼ିମନ୍ଦ୍ରସ୍ୱ । ଝଙ୍କାର—ଓଁକାର

ଗାବନ୍ତ ରାଧିକା ବନେ ମୋହର ପ୍ରଳାପ,
ବ୍ରଜବଧୂବୃନ୍ଦ ବେଢ଼ି କରନ୍ତ ବିଳାପ । ୯ ।
ଗୋପେଶ୍ୱର ନାମେ ବନମଧ୍ୟେ ମହାଦେବ,
ପାର୍ବତୀ ସଙ୍ଗତେ ହର କ୍ରୀଡ଼ା ରଙ୍ଗ ଭାବ । ୧୦ ।
ଗୋପୀଙ୍କ ରୋଦନ ସ୍ୱର ସୁରସ ସୁବାଣୀ,
ଶତ ସରସ୍ୱତୀ ବୀଣା ଗୀତ ସ୍ୱର ଜିଣି । ୧୧ ।
କ୍ରୀଡ଼ାରଙ୍ଗ ହୋଇ ହର ପାର୍ବତୀ ଉଠିଲେ,
ଗୋପୀଙ୍କ ରୋଦନ ସ୍ଥାନେ ବିଜୟ ସେ କଲେ । ୧୨ ।
ଉହାଡ଼େ ରହିଲେ ହର ଧବଳ ମୂରତି,
ପାର୍ବତୀ ମିଳିଲେ ଯାଇଁ ଗୋପୀଙ୍କର କତି । ୧୩ ।
ନ କର ସନ୍ତାପ ତୁମ୍ଭେ ସକଳ ଯୁବତୀ,
ନିକଟେ ଆସିବେ ମାଏ ତୁମ୍ଭ ପ୍ରାଣପତି । ୧୪ ।
ଏତେ କହି ଅନ୍ତର୍ଦ୍ଧାନ ହୋଇଲେ କାମାକ୍ଷୀ,
ତକ୍ଷଣେ ଚେତନା ପାଇ ଗୃହାନ୍ତ ମୃଗାକ୍ଷୀ । ୧୫ ।
ମନେ ବିଚାରିଲେ ଏ ତ ଅନ୍ତରୀକ୍ଷ କାମିନୀ,
ନିଶ୍ଚୟ ଆସିଣ ଥିଲେ ଦୁଃଖର ନାଶିନୀ । ୧୬ ।
ମହାରାସ ପୀଠ ଅଷ୍ଟଦଳ ଦ୍ୱାରେ ସ୍ଥିତ,
ବନ ଉପବନ ମଧ୍ୟେ ସମ୍ମୁଖେ ବସନ୍ତ । ୧୭ ।
ମହାଶମ୍ଭୁ ପ୍ରିୟା ଏ ଅନାଦି ଆଦିନାରୀ,
ଏହାଙ୍କ ପ୍ରସନ୍ନେ ସର୍ବ ଦୁଃଖ ହୋଏ ପାରି । ୧୮ ।
ଏହାଙ୍କୁ ଅର୍ଚ୍ଚିଣ ପୂର୍ବ ଈଶାଣ ସେ ଦଳେ,
କୃଷ୍ଣ ପତି ପାଇଥିଲୁ ପୁଣ୍ୟର ସେ ବଳେ । ୧୯ ।

---

୯ । ବ୍ରଜବଧୂବୃନ୍ଦ—ଗୋପବଧୂମାନେ ।
୧୩ । ଉହାଡ଼େ—ଅନ୍ତରାଳରେ, ଆଡ଼ୁଆଳରେ । କତି—ନିକଟରେ ।
୧୫ । ଅନ୍ତର୍ଦ୍ଧାନ ହୋଇଲେ—ଲୁଚିଗଲେ । କାମାକ୍ଷୀ—ପାର୍ବତୀ । ମୃଗାକ୍ଷୀ—
ମୃଗନୟନୀ ଗୋପାଙ୍ଗନା ।
୧୬ । ଅନ୍ତରୀକ୍ଷ—ଅନ୍ତରୀକ୍ଷ, ଆକାଶ ।
୧୯ । ଅର୍ଚ୍ଚିଣ—ଅର୍ଚ୍ଚନାକରି ।

କର୍ମର ଅବଳେ ଧର୍ମେ ହରାଇଲୁ ଏବେ,
ପାଲଟି ଉହ୍ଵବ ପିଟି ଦେଲୁ ଧର୍ମ ଯେବେ । ୨୦ ।

କେ ଆମ୍ଭର ଇଷ୍ଟଗୁରୁ ଦେବତା ହୋଇବ,
କାହା ଯୋଗୁ ଅନ୍ଧ ଦିବ୍ୟ ଲୋଚନ ପାଇବ । ୨୧ ।

ତ୍ୟାଗିଲୁ ପିଣ୍ଡରେ କେହୁ ପୂରେଇବ ପ୍ରାଣ,
ନିର୍ମକ୍ଷୀ ପରାଣୀ ଅମ୍ଭେ ତାହାର ଶରଣ । ୨୨ ।

ଶରଣ ତାରିଣୀ ସେ ଅନାଦ୍ୟ ହରିପ୍ରିୟା,
ଅନାଥିନୀ ଦେଖିଣ ସେ କରିଗଲେ ଦୟା । ୨୩ ।

ତାହାଙ୍କ କୃପାରୁ ନିଷ୍ଟେ ପାଇବୁ ମୁରାରି,
ପୁଣି ପ୍ରତିଆଶା ଧରି ମନକୁ ଛିଆରି । ୨୪ ।

ରାଧିକା ବୋଇଲେ ସଖି ଶୁଣ ମୋ ବଚନ,
ସତେକ ଅସିବେ ହରି ଥିବ ଏ ଜୀବନ । ୨୫ ।

ପ୍ରାଣ ସମ୍ଭାଳିବା ଦେହେ ବହୁତ ସନ୍ଦେହ,
କଷ୍ଟ ବିନୁ କ୍ଷଣେ ଏଥେ ନ ଲାଗଇ ମୋହ । ୨୬ ।

କଷ୍ଟ ଦେହ ଇଚ୍ଛି, କୃଷ୍ଣ ସୁଖ ଲାଭ ଅର୍ଥେ,
କୃଷ୍ଣ ବିନୁ ଜୀବ ଥିବ କାହାର ନିମନ୍ତେ । ୨୭ ।

ସେ ତେଣେ ଝିଙ୍କଇ ଆମ୍ଭେ ଏଣେ ଝିଙ୍କି ଧରି,
ଝିଙ୍କାଝିଙ୍କି ଦ୍ରବ୍ୟ କେତେବେଳେ ରଖିପାରି । ୨୮ ।

ନୟନୁ ଉପୁଡ଼ିଗଲା ନିଲଜ ତାଙ୍କୁଣି,
ଆବୋରି ରହିଛି ସେ ଲାଗିବ ବୋଲି ପୁଣି । ୨୯ ।

---

୨୦ । କର୍ମର ଅବଳେ—କର୍ମଦୋଷରେ । ପାଲଟି ଉହ୍ଵବ—ପରିବର୍ତ୍ତିତ ହେବ । ପିଟିଦେଲୁ—ପଛ କରିଦେଲୁ, ଉପେକ୍ଷିତ ହେଲୁ ।

୨୨ । ତ୍ୟାଗିଲୁ—ତ୍ୟକ୍ତ, ପ୍ରାଣତ୍ୟାଗ କରିଥିବା ।

୨୪ । ଛିଆରି—ଚେତାଇ ।

୨୮ । ଝିଙ୍କଇ—ଟାଣଇ ।

୨୯ । ଉପୁଡ଼ିଗଲା—ଉତ୍ପାଟିଗଲା । ନିଲଜ—ନିର୍ଲଜ ।

ପୋଡ଼୍ ଏ ଜୀବନ ରଖି ରହିଛୁ କପାଇଁ,
ବିଅର୍ଥ କାରଣେ ଏଥେ ହନୁ ସନୁ ହୋଇ । ୩୦ ।
ହରି ବିନୁ ନ ରୁଚଇ କେଉଁଣିହି ରସ,
ବିବିଧ ବ୍ୟଞ୍ଜନ ଅନ୍ନ ଲାଗଇ ସେ ବିଷ । ୩୧ ।
ଯେବଣ ଯମୁନା ନଦୀ ଜଳ ପରିମଳ,
ଗ୍ରୀଷମେ ଛାକ୍ଷଣେ ଆମ୍ଭା କରଇ ଶୀତଳ । ୩୨ ।
ସାଚ ଚିଣି ଗଙ୍ଗବାଣ ମିଶାଇ ପଇଡ଼,
କର୍ପୂର ମରିଚ ଯୁକ୍ତ ସ୍ୱାଦରସ ବଡ଼ । ୩୩ ।
ସେ ଜଳ ପିଇଲେ ଏବେ ଆମ୍ଭ ବଇକୁଳ,
ମଳୟ ପବନ ବହେ ଅଗ୍ନି ସମତୁଲ । ୩୪ ।
ଯେବଣ ବନରେ ପଶି ସବୁଦୁଖ ହରି,
ସେ ବନ ହୋଇଲା ଏବେ ପ୍ରାଣକୁ ବଇରୀ । ୩୫ ।
ଯେବଣ ସୁସ୍ୱାଦ ପକ୍ୱ ଫଳେ ମନ ତୋଷି,
ସେ ଫଳ ଦେଖିଲେ ଏବେ ଉଦୁଗର ଆସି । ୩୬ ।
ଯେବଣ କୁସୁମ ଗନ୍ଧେ ନାସିକା ସନ୍ତୋଷ,
ସେ ଗନ୍ଧ ହୋଇଲା ଏବେ ପ୍ରାଣକୁ ପରସ । ୩୭ ।
ଯେବଣ କୋକିଳ ସ୍ୱର ଶୁଣି ତ ଶରଧା,
ସେ ସ୍ୱର ଫୁଟଇ ଏବେ ହୃଦେ କୁନ୍ତବାଧା । ୩୮ ।

---

୩୦ । ହନୁସନୁ—ହନ୍ତସନ୍ତ
୩୧ । କେଉଣିହି—କୌଣସି ।
୩୨ । ପରିମଳ—ନିର୍ମଳ, ପବିତ୍ର । ଛାକ୍ଷଣେ—ଶୀଘ୍ର ।
୩୩ । ସାଚଚିଣି—ଖଣ୍ଡସାରି, ଚିନି । ଗଙ୍ଗବାଣ—ଏକଜାତୀୟ ନଡ଼ିଆ, ଏହାର ବର୍ଣ୍ଣ ହଳଦିଆ ; ଏହାର ଜଳରେ ଶିବଙ୍କର ଅଭିଷେକ କରାଯାଏ ।
୩୪ । ବଇକୁଳ—ବିକଳ ।
୩୬ । ଉଦୁଗର—ବାନ୍ତି ।
୩୭ । ପରସ—ପୀଡ଼ାଦାୟକ ।
୩୮ । କୁନ୍ତ—ବର୍ଚ୍ଛା ।

ଯେବଣ ମନ୍ମଥ ଦୁରୁଁ ତେଜଇ କମାଣ,
ଅହଙ୍କାର ମାରେ ଏବେ ଅନୁକ୍ଷଣେ ବାଣ । ୩୯ ।
ଏତେ ଅରଷ୍ଟରୁ ବର୍ତ୍ତିଥିବା ଗୋ କେମନ୍ତେ,
ସତେହେଁ ଆସିବେ କ ରୁକ୍ମଣୀ ଦେବୀ କାନ୍ତେ । ୪୦ ।
ଦୂତକା ବୋଇଲେ ଯାହା କହିଲେ ଭବାନୀ,
ସେ କାହୁଁ ହୋଇବ ଆନ ଶୁଣିମା ସଜନୀ । ୪୧ ।
ଅବଶ୍ୟ ଆସିବେ ହରି ଏ କଥା ପ୍ରମାଣ,
କୃଷ୍ଣ ପ୍ରାଣପ୍ରିୟା ତୁମ୍ଭେ ଥିର କର ମନ । ୪୨ ।
ଏବେ ଠାକୁରାଣୀ ବିଜେ କର ଗୋ ସଦନେ,
ସମସ୍ତେ ମିଳନ୍ତୁ ଯାଇଁ ଯେ ଯାହା ଭୁବନେ । ୪୩ ।
ଭୋଜନ ଯତନେ ତନୁ ସୁସ୍ଥ କର ସଖି,
ଅଛନ୍ତି ଅଧୈର୍ଯ୍ୟ ଗୋ ନୋହିବା ଚନ୍ଦ୍ରମୁଖି । ୪୪ ।
ଏତେ ବୋଲି ସୁ ଶୀତଳ ଜଳେ ମୁଖ ଧୋଇ,
ଅଞ୍ଚଳେ ପୋଛୁଣ ବାଳୀ ବଞ୍ଚଣୀ ବିଞ୍ଚଇ । ୪୫ ।
ବେନି ପାରୁଶରେ ସଖୀ ବାହାଲିଦ ଦେଇ,
ବୃନ୍ଦାବନ ମନ୍ଦିରକୁ ଆଣନ୍ତି ଚଳାଇ । ୪୬ ।
ମାଜଣା ମର୍ଦ୍ଦନ ସାରି ପୂରି ସବୁ ଗୋଈ,
ଅମୃତ ମଣୋହି ତାଙ୍କୁ କରାଇଲେ ନେଇ । ୪୭ ।
ପଲଙ୍କ ଉପରେ ବିଜେ କରାଇ ସୁନ୍ଦରୀ,
ଆଜ୍ଞା ମାଗି ବିଜେ କଲେ ଯେ ଯାହାର ପୁରୀ । ୪୮ ।

---

୩୯ । ମନ୍ମଥ—ମଦନ, କନ୍ଦର୍ପ ।

୪୦ । ଅରଷ୍ଟ—ବିପଦ । ବର୍ତ୍ତିଥିବା—ବଞ୍ଚିଥିବା ।

୪୧ । ପ୍ରମାଣ—ସତ୍ୟ । ଥିର—ସ୍ଥିର ।

୪୬ । ବାହାଲିଦ—ହାତଭରା ।

୪୭ । ଗୋଈ—ଗୋପୀ । ମଣୋହି—ଭୋଜନ ।

୪୮ । ଆଜ୍ଞା ମାଗି—ଅନୁମତି ନେଇ ।

ସ୍ନାହାନ ଭୋଜନ ସାର ଯେତ୍ନାମତେ ରହି,
କ୍ଷଣେ କ୍ଷଣେ ପ୍ରଭୁଙ୍କ ଆସିବା ବାଟ ଗୃହିଁ । ୪୯ ।
ଶ୍ରୀ ରାଧାପତି ଚରଣେ ନିରନ୍ତରେ ଆଶ,
ଶରଣ ମାଗଇ ଦେବଦୁର୍ଲ୍ଲଭ ଯେ ଦାସ । ୫୦ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଏକାଦଶ ଛାନ୍ଦେ,
ଗୋପିକା ରୋଦନେ ଭୂମାପ୍ରସନ୍ନ ପ୍ରବନ୍ଧେ,
ଦ୍ୱାଦଶ ଛାନ୍ଦ ବର୍ଣ୍ଣନେ କେବଣ କେବଣ ଆଚୃର
କହିବାକୁ ଅାଜ୍ଞା ହେଉ ପ୍ରଭୁ ଏଥିର ଯେ ବିସ୍ତର ।

—*—

## ଦ୍ୱାଦଶ ଛାନ୍ଦ

ରାଗ—କରୁଣା ଝଟିଆର

ଏ ମହା ଗ୍ରୀଷମ ଋତୁ ବୈଶାଖର ଶେଷ,
ବହିଲା ଝଞ୍ଜା ପବନ କୃଶାନୁ ବତାଶ ।
ପାଚଲେ ଆମ୍ବ ପଣସ ଛାଡିଲେ ସଲିଳ,
ଜଳିଲା ଶରୀର ମୋ ଟଳିଲା କଳେବର । ଘୋଷା ।
ମୁଁ ଗୋ ମଲି ମଲି ମଲି,
କାନ୍ତ ମୋ ଉପେକ୍ଷି ଗଲେ କଉଁ ଦୋଷ କଲି । ୧ ।

ଗମ୍ଭୀର ଘରରେ ଗୋ ଗ୍ରୀଷମେ ନୋହେ ଶୋଇ
ଦକ୍ଷିଣ ମେଲା ମନ୍ଦରେ ପ୍ରଭୁ ସଙ୍ଗେ ରହି ।
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି,
ସ୍ୱାମୀ ସଙ୍ଗେ ବିବିଧ ବିନୋଦେ ବୋଳାକୋଳି । ୨ ।

ଫୁଟି ତାଳସଜ ପଣା ପଇଡ଼ କଦଳୀ,
କର୍ପୂର ମରିଚ ଖଣ୍ଡ ସିଙ୍ଗଡ଼ା ତାମ୍ବୁଳି ।
ମଣୋହି କରିଣ ସେହୁ ଖୁଆଇଣ ଖାଇ,
ସୁଖ ପାଇ ସ୍ୱାମୀ ଭୁଜ ପଞ୍ଜରେଣ ଶୋଇ । ୩ ।

---

## ଦ୍ୱାଦଶ ଛାନ୍ଦ

୧ । କୃଶାନୁ—ଅଗ୍ନି । କଳେବର—ଦେହ । ଉପେକ୍ଷି—ତ୍ୟାଗ କରି ।

୨ । ବିନୋଦେ—ବିହାରରେ, ଆନନ୍ଦରେ ।

୩ । ତାମ୍ବୁଳି—ତାମ୍ବୁଳ, ପାନ । ମଣୋହି—ଭୋଜନ । ଭୁଜପଞ୍ଜରେଣ—ହସ୍ତ-ପଞ୍ଜର ମଧ୍ୟରେ, ଆଲିଙ୍ଗନରେ ।

ଋଷଭ ସମ୍ପୂର୍ଣ୍ଣ ସଖି ଆଷାଢ଼ର ଅନ୍ତେ,
ଶ୍ରାବଣ ପ୍ରବେଶ ଗୋ ଜଳଦ ଋତୁ ହୋନ୍ତେ,
ଗାଜିଲେ ଗଗନେ ମେଘ ସାଜିଲେ ବରଷା,
କି ଜାଣ ନବଢ଼ ଘୋର ଅନ୍ଧକାର ନିଶା । ୪ ।

ଘଡ଼ଘଡ଼ ଉପରେ ପଡଇ ଚଡ଼ଚଡ଼,
ଚଡ଼ଚଡ଼ ଉପରେ ନିର୍ଘାତ ଟଡ଼େ ମାଡ଼,
ବିଜୁଳି ଝଟକେ ଗୋ ଚମକି ଉଠେ ହିୟା,
କେସନେ ବଞ୍ଚିବ ମୋର କୋଳ ନାହିଁ ନାହା । ୫ ।

କମଳିନୀ ବିକସିଲେ, ଅବନୀ ଉଲ୍ଲସି,
ମାତିଲେ ମଣ୍ଡୂକେ ଯେ ଡାହୁକ ଡାକେ ମିଶି,
ନଦୀ ଯୋଡ଼ ବଢ଼ିଲେ, ଜଡ଼ିଲେ ସୁନାଗସି,
ସୁବେଶ ଯୁବତୀ କାନ୍ତ ପଥ ଅନୁସର । ୬ ।

ପ୍ରବାସୀ ପୁରୁଷମାନେ ସର୍ବକାର୍ଯ୍ୟ ଛାଡ଼ି,
ଘରକୁ ଆଇଲେ ପ୍ରିୟା ଗୁଣ ମନେ ପଡ଼ି,
ଏକମାତ୍ର ମୋର କାନ୍ତ ନଇଲେ ମୋ ପାଶ,
ନଟଯେ ଜାଣିଲି ମୋର ତେଜିଲେ ମୁହାଁସ । ୭ ।

---

୪ । ଋଷଭ—ଜ୍ୟେଷ୍ଠମାସ । ଜଳଦ ଋତୁ—ବର୍ଷା ଋତୁ । ଗାଜିଲେ—ଗର୍ଜନ କଲେ । ଗଗନେ—ଆକାଶରେ । ମେଘ—ମେଘ ।

୫ । ନିର୍ଘାତ—ବଜ୍ର । ହିୟା—ହୃଦୟ । ନାହା—ନାଥ, ପତି ।

୬ । କମଳିନୀ—ପଦ୍ମ । ବିକସିଲେ—ବିକସିତ ହେଲେ । ଅବନୀ—ପୃଥିବୀ । ଉଲ୍ଲସିତ—ଉଲ୍ଲସିତ ହେଲା । ମଣ୍ଡୂକେ—ଭେକମାନେ । ଯୋଡ଼—ଯୋର, ପ୍ରାକୃତିକ ଜଳାଶୟ । ଜଡ଼ିଲେ—ବିଜଡ଼ିତ ହେଲେ । ସୁନାଗସି—ଉଦ୍ଭିଦ ନାଗ । ଅନୁସର—ଅନୁସରଣ କରି, ଗୃହି ।

୭ । ପ୍ରବାସୀ—ବିଦେଶରେ ବାସ କରୁଥିବା । ନଟଯେ—ନଷ୍ଟଯେ । ମୁହାଁସ—ସ୍ନେହ ।

ଭାଦ୍ରବର ଅନ୍ତେ ସଖି ଅଶିଣ ପଶନ୍ତେ,
ପ୍ରବେଶ ଶରଦ ଋତୁ ପ୍ରତେଜ ଆଦିତ୍ୟେ,
ଗଗନୁ ଝରିଲ ହିମ, ମହୀ ଫଣୀ ପଶେ,
ବରଷା ବଞ୍ଚାଇ ମେଘ ନାନାବର୍ଣ୍ଣ ଦିଶେ । ୮ ।

ଉତ୍ତରୁ ଅଇଲ ଶୀତ ବିକାନ୍ତ କୁମାରୀ,
କାନ୍ତ ଥିଲ କାମିନୀଙ୍କି ଦୂରୁଁ ଅପସରି,
ଫୁଟିଲେ କୈରବ କଥା ଚନ୍ଦ୍ରକାନ୍ତ ବଢ଼େ,
ଶ୍ରୋଣେନ୍ଦ୍ରା ରତି ଆରତେ ଶ୍ରୋଣେ ହ୍ୱାକ ଲୋଡ଼େ । ୯ ।

କାର୍ତ୍ତିକ ସରନ୍ତେ ସଖି ମଗୁଶିର ଆସେ,
କାକର ଚଢ଼ିଲ ହିମ ଋତୁ ପରକାଶେ,
ଦହିଲ କମଳ ବନ, କହିଲ ଉତ୍ତରୀ,
ସୁଥିର ହୋଇଲ ସିନ୍ଧୁ ସଧୀର ଲହରୀ । ୧୦ ।

ମରୁଆ ହସିଲ, କୁନ୍ଦ ଦେଖିଣ ବିକାଶ,
ଗାଇଲେ ଗାଆନ୍ତା ଗୀତ ଗୁଣ୍ଡ୍ରକେଶୀ ରସ,
ତୁଟିଗଲେ ନଖ ସଙ୍ଗ, ଫାଟିଗଲେ ବାଟ,
ଯାନ ଆସି ପାହିଗଲା କାନ୍ତ ନାହିଁ ଭେଟ । ୧୧ ।

---

୮ । ପ୍ରତେଜ—ତେଜୀୟାନ । ଆଦିତ୍ୟ—ସୂର୍ଯ୍ୟ । ହିମ—ଶିଶିର । ମହୀ ଫଣୀ ପଶେ—ସାପ ଗାତରେ ପଶିଲା । ବରଷା ବଞ୍ଚାଇ—ବର୍ଷା ନକରି ।

୯ । ବିକାନ୍ତ କୁମାରୀ—ପାଖରେ କାନ୍ତ ନଥିବା ନାରୀ, ବିରହିଣୀ । କାନ୍ତ—ପତି । କାମିନୀ—ନାରୀ । ଅପସରି—ତ୍ୟାଗକରି । କୈରବ—କଇଁଫୁଲ । ଚନ୍ଦ୍ରକାନ୍ତ—ଚନ୍ଦ୍ରକିରଣର ଉଜ୍ଜ୍ୱଳତା । ଶ୍ରୋଣେନ୍ଦ୍ରା—କାମୁକ । ରତି-ଆରତେ—ମିଳନ ଲଗି ବ୍ୟଗ୍ରତାରେ । ଶ୍ରୋଣେନ୍ଦ୍ରୀ—କାମୁକୀ ।

୧୦ । ହିମ ଋତୁ—ହେମନ୍ତ ଋତୁ । ଦହିଲା—ପୋଡ଼ିପକାଇଲା । ସୁଥିର—ସ୍ଥିର ।

୧୧ । ଗୁଣ୍ଡ୍ରକେଶୀ—ରାଗ ବା ଧନ ବିଶେଷ । ତୁଟିଗଲେ—ଶରୀର କ୍ଷୀଣକଲେ । ପାହିଗଲା—ବିତିଗଲା ।

ସିଂଘଡ଼ା କେସର ସଖି ଗୁଆଘୃତେ ପୋଇ,
କର୍ପୂର ମରିଚ ମେଳ ମିଠା ଦୁଗ୍ଧ ମୋହ୍ନ,
ସାରିଆଖଣ୍ଡ ମିଶାଇ ବଟା ଭରି ଥୋଇ,
ଶୟନ ପଲଙ୍କେ କାନ୍ତ ଅଧରେ ଯୋଗାଇ । ୧୨ ।

ପୁଷର ଅନ୍ତରେ ସଖି ମକର ପ୍ରଖ୍ୟାତ,
ପ୍ରବେଶ ଶିଶିର ଋତୁ ପବନ ଜଗତ,
ମକର ସ୍ନାହାନ ଜନେ ଧର୍ମ ଅର୍ଥେ କରି,
କୁହୁଡ଼ି ପଡ଼ିଲା ଗୋ ଜାଡ଼ିଲା ବସୁନ୍ଧରୀ । ୧୩ ।

ଫୁଟିଲା ମାଧବୀ ଗୋ ଭୁଟିଲା କଇଁଫୁଲ,
ଉଡ଼ିଲା କାଞ୍ଚନ କଢ଼ି କାମ-ଶର ଭୁଲ ।
ଲେଉଟିଲା ଉତ୍ତରୀ ପବନ ନିଜ ସ୍ଥାନ,
ଉଠିଲା ଲହରୀ ସିନ୍ଧୁ ଅନନ୍ତର ଫେନ । ୧୪ ।

କାକଗର୍ଭ ଦେଖି ସଖି ହୋଇଲି ଚକିତ,
ଏତେବେଳେ ନ ଭେଟିଲି ଗଉରୀ-ବାରତ,
କୁରୁବେଲି ଚଉଁରିଲେ ଅତି ଉଗ୍ରଗନ୍ଧ,
ଚୂତର ବକୁଳ ଦେଖି କୋକିଳ ଆନନ୍ଦ । ୧୫ ।

---

୧୨ । ସିଂଘଡ଼ା—ଏକ ପ୍ରକାର ପାଣିଫଳ । କେସର—ନାଗେଶ୍ୱର ଫୁଲର କେଶର । ଗୁଆଘୃତେ—ଗାଈ ଘିଅରେ । ପୋଇ—ପାଗ କରି । ମେଳ—ମିଳାଇ । ମୋହ୍ନ—ମିଶାଇ । ସାରିଆ ଖଣ୍ଡ—ଖଣ୍ଡ ସାରି । ବଟା-ଡ଼ବା । ଅଧରେ ଯୋଗାଇ—ପାଟିରେ ଦେଇ ।

୧୩ । ଜାଡ଼ିଲା—ଜଡ଼ିଲା । ବସୁନ୍ଧରୀ—ବସୁଧା ।

୧୪ । ଭୁଟିଲା—ଶେଷହେଲା । କାମଶର—କନ୍ଦର୍ପର ଶର । ଅନନ୍ତର—ଅଶେଷ । ଫେନ—ଫେଣ ।

୧୫ । କାକଗର୍ଭ—କୋଇଲି । ଗଉରୀ ବାରତ—ପାର୍ବତୀଙ୍କ ବାର୍ତ୍ତା, ଅନୁଯାୟୀ ନିର୍ଦ୍ଦିଷ୍ଟ ବ୍ୟକ୍ତି, ଶ୍ରୀକୃଷ୍ଣ । କୁରୁବେଲି—ଉକ୍ତ ଗନ୍ଧବିଶିଷ୍ଟ ଫୁଲ । ଚଉଁରିଲେ—ଚଉଁର ପକାଇଲେ, ବିକଶିତ ହେଲେ । ଚୂତ—ଆମ୍ବ । ବକୁଳ—ବଉଳ ।

ମକର ହରନ୍ତେ ହଖି ଫଗୁଣର ଅନ୍ତେ,
ଅଇଲା ବସନ୍ତ ଋତୁ ଅନଙ୍ଗ ସଙ୍ଗତେ,
ବହିଲାକ ମଳୟ ପବନ ଗନ୍ଧ ଭୁଲେ,
ପଲ୍ଲବିଲେ ତରୁଲତା, ଫୁଟିଗଲେ ଫୁଲେ । ୧୬ ।

ଘୃତେଶ୍ୱ ଗହଳ ସଖି ଗୋବନ୍ଦଙ୍କ ଦୋଳ,
ସବ୍ଦ ସୁଖ ଦେନ ଗଲେ ମକକ ଗୋପାଳ,
କହୁଁ କହୁଁ ଝୂତ ବୃକ୍ଷେ ଧରିଗଲେ କସି
କୋକଳ ଝାଡ଼ଇ ଚୂତ ଡ଼ାଳେ ଡ଼ାଳେ ବସି । ୧୭ ।

ଚଇତ ମାସରେ ରାଧାମାଧବ ସୁମର,
ବୃନ୍ଦାବନେ ପଶିଣ ଲୋଡ଼ଇ ଅନୁସର,
ଦେଖଇ ପଲ୍ଲବଲତା ତରୁ ଫଳ ଫୁଲେ,
ଦେବ କହେ ସଖୀ କର ଧରି ଧରି ବୁଲେ । ୧୮ ।

ଇତିଶ୍ରୀ ରହସ୍ୟ ମଞ୍ଜରୀ ଦ୍ୱାଦଶଛନ୍ଦେ,
ଦ୍ୱାଦଶ ମାସାଦି ଷଡ଼ଋତୁ ବନ୍ଦେ,
ତ୍ରୟୋଦଶ ଛନ୍ଦ ବର୍ଣ୍ଣନେ କେବଣ କେବଣ ବୋଧ
କହିବାକୁ ଆଜ୍ଞା ହେଉ (ପ୍ରଭୁ) ଏଥିର ପ୍ରବୋଧ ।

---

୧୬ । ଅନଙ୍ଗ—କନ୍ଦର୍ପ । ଗନ୍ଧଭୁଲେ—ସୁଗନ୍ଧ ସହିତ ।
୧୭ । ଘୃତେଶ୍ୱ—ଚର୍ଚ୍ଚିଶ୍ୱ, ପିଚକାଶ୍ୱ । ଗୋବନ୍ଦଙ୍କ ଦୋଳ—ଦୋଳଯାତ୍ରା ।
୧୮ । ଲୋଡ଼ଇ—ଖୋଜେ । ଅନୁସର—ବୁଲି ବୁଲି ।

# ତ୍ରୟୋଦଶ ଛାନ୍ଦ

ରାଗ— ନଳିନୀ ଗୌଡ଼ । [ମୁନିବର ବାଣୀରେ ଗାଇବ]

ଏଥୁ ଅନନ୍ତରେ ଶୁଣ, ଵଯୋଗିନୀ ପରଗୁଣ,
ବୁଲନ୍ତି ବନେ ରାଧିକା; ସଙ୍ଗେ ଦୂତିକା ଯେ । ୧ ।
ବୃକ୍ଷକୁ ବୃକ୍ଷ ଦେଖାଇ, ଚତୁରେ ମାନ ଗୁହାଇଁ
କୃଷ୍ଣଙ୍କୁ ସୁମର ବାଳା, ପଢ଼ନ୍ତି ଛଳ ଯେ । ୨ ।
ଏମନ୍ତ ସକଳ ସଖୀ, ରାଧାଙ୍କୁ ଗୃହେ ନ ଦେଖି
ଖୋଜନ୍ତି ନିକୁଞ୍ଜେ ପଶି, ଭେଟିଲେ ଆସି ଯେ । ୩ ।
ସମ୍ଭାଳି ନିଅନ୍ତେ ରାଧା ମନସିଜ-ଶରେ ବାଧା,
ଗନ୍ଧ ପୁଷ୍କରଣୀ ତୀରେ, ମିଳିଲେ ଧୀରେ ଯେ । ୪ ।
ପୁଷ୍କରଣୀ ତଟଘାଟ, ମାଣିକ୍ୟ ପାବକ ଘାଟ,
ମୁକୁତା ମର୍କତ ହେମ, ଖଚିତ କାମ ଯେ । ୫ ।
ଜଳ ସୁଧାମୟେ ସ୍ୱାଦ, ହଂସ ଚକ୍ରବାକ ଖେଦ,
ଡାହୁକ ଡାକନ୍ତି ରଙ୍ଗେ, ସୁକାନ୍ତା ସଙ୍ଗେ ଯେ । ୬ ।
କମଳ କୈରବ ଶୋଭା, ମତ୍ତେ ମଧୂଲିଟ ଲୋଭା
କୁସୁମ କେଶର ଜଳ ଅତି ଉଜ୍ଜ୍ୱଳ ଯେ । ୭ ।

---

# ତ୍ରୟୋଦଶ ଛାନ୍ଦ

୧ । ଵଯୋଗିନୀ—ବିରହିଣୀ । ପରଗୁଣ—ପରସ୍ପରଙ୍କ ସୂଚନା ।

୪ । ମନସିଜ ଶରେ—କନ୍ଦର୍ପର ଶରରେ ।

୫ । ତଟଘାଟ—ତୀରପାଖ । ପାବକ—ପାହାଚ । ଘାଟ—ତୁଠ ।
କାମ—କାରିଗରୀ ।

୬ । ସୁଧାମୟେ—ଅମୃତମୟ । ଖେଦ—ପଲ, ଦଳ ।

୭ । କୈରବ—କଇଁ । ମଧୂଲିଟ—ଭ୍ରମର । କୁସୁମ କେଶରେ ଜଳ—ଫୁଲର
କେଶର ଉପରେ ପଡ଼ିଥିବା କାକର ।

ବେଢ଼ିଛୁ ଅଶୋକ ବନ, ହୃଦୟ କରଇ ଛନ୍ନ
ବୃକ୍ଷକେ ସୁବର୍ଣ୍ଣ ବେଢ ସ୍ୱରନ୍ତେ ଭେଦ ସ୍ୱେ । ୮ ।
ମିଳଲେ ଅଶୋକ ମୂଳେ ବ୍ରଜବଧୂ-ବୃନ୍ଦ ମେଳେ
କୁସୁମ ତୋଳଇ ବାଳୀ ଗୁନ୍ଥାଇ ମାଳ ସ୍ୱେ । ୯ ।
ଅଶୋକ ତରୁ ମଣ୍ଡାଇ ତଳେ ସିଂହାସନ ଥୋଇ
କରନ୍ତି ମଦନ ପୂଜା ଦେବୀ ଗିରିଜା ସ୍ୱେ । ୧୦ ।
କାମିନୀ କାମଦାୟିନୀ କାମାକ୍ଷୀ କାମରୂପିଣୀ
କାମର ଜନନୀ ମାତ, ଆଦ୍ୟ ସମ୍ଭୂତ ସ୍ୱେ । ୧୧ ।
କାମନା ମୋ ସିଦ୍ଧ କର କାମ ସମୁଦ୍ରୁଁ ଉଦ୍ଧର,
କାମବୀଜ-ଧର ଦେବୀ ଶିବ ସମ୍ଭବ ସ୍ୱେ । ୧୨ ।
ଏ ରୂପେ କାମନା ସ୍ତବ, କାମେଣ ବନସୁ ଭବ,
ଅଶୋକ ମୂଳରେ ରହି, ବୃକ୍ଷକୁ କହି ସ୍ୱେ । ୧୩ ।
ଅଶୋକ ଅଷ୍ଟମୀ ଆଜ ଅଶୋକ କରୁ ମୋ କାର୍ଯ୍ୟ
ଅଶୋକ କଳିକା ତୋଳି, ପିଉଲ ଗୋଳି ସ୍ୱେ । ୧୪ ।
ତୋହର ନାମ ଅଶୋକ ଖଣ୍ଡ ତୁ ମୋହର ଶୋକ
ଏ କଥା ସବୁ ଦିନକୁ ପ୍ରାଣୀମାନଙ୍କୁ ସ୍ୱେ । ୧୫ ।

---

୮ । ବୃକ୍ଷକେ ସୁବର୍ଣ୍ଣ ବେଢ—ଅଶୋକ ବୃକ୍ଷ ଫୁଲରେ ପୂର୍ଣ୍ଣ ହୋଇ ସୁବର୍ଣ୍ଣ ଓ ରତ୍ନ ମଣ୍ଡିତ ହେବାପରି ଶୋଭାପାଉଅଛି ।

୯ । ବ୍ରଜବଧୂ ବୃନ୍ଦ—ଗୋପବଧୂ ସମୂହ, ଗୋପୀମାନେ ।

୧୦ । ମଦନ—କନ୍ଦର୍ପ । ଗିରିଜା—ପାର୍ବତୀ, ଦୁର୍ଗା ।

୧୧ । କାମଦାୟିନୀ—କାମଦାତ୍ରୀ । କାମରୂପିଣୀ—କାମ ସ୍ୱରୂପିଣୀ । କାମର ଜନନୀ—କାମର ଜନ୍ମଦାତ୍ରୀ । ଆଦ୍ୟ ସମ୍ଭୂତ—ଆଦ୍ୟଶକ୍ତି, ଯେ ସମସ୍ତଙ୍କର ଜନ୍ମଦାତ୍ରୀ ।

୧୨ । କାମବୀଜ ଧର ଦେବୀ—କାମବୀଜ ଧାରଣୀ ଦେବୀ । ଶିବ ସମ୍ଭବ—ମଙ୍ଗଳ ସମ୍ଭବ କରି, ମଙ୍ଗଳମୟୀ, ମଙ୍ଗଳ ଦାତ୍ରୀ ।

୧୩ । କାମେଣ—କାମରେ ।

୧୪ । ଅଶୋକ—ଶୋକଶୂନ୍ୟ । କଳିକା—କଢ଼ି ।

୧୫ । ଖଣ୍ଡ—ଖଣ୍ଡନ କର ।

କାମର ତରୁ ପାଦାନ୍ତ, କୁସୁମଶର ଖରଣ୍ଡ
ଧରଣ ବ୍ରହ୍ମାଣ୍ଡ ପୂର ଅଛୁ ଆବୋର ଯେ । ୧୬ ।
ପଳାଇ ତ ବାଟ ନାହିଁ, ଯେଣେ ଯିବା ଅଛୁ ତହିଁ
ନାରୀଙ୍କି ମାରଣ ବାଣ ଘେନ ପବଣ ଯେ । ୧୭ ।
ଏବେ ବୃକ୍ଷେ କୃଷ୍ଣଙ୍କୁ ଘଅ ପଲ୍ଲବ ପଦ ହଲଅ
ସମସ୍ତେ ମନରେ ପଢ଼ ଆସ ବାହୁଡ଼ ଯେ । ୧୮ ।
ଏବେ କୋକିଳ ମାନେ ଚଳ, ଶ୍ରୀକୃଷ୍ଣ ସମ୍ମୁରେ ମିଳ
ଲେଉଟି ପାଳଟି ଘଇ, ଆଣ କଡ଼ାଇ ଯେ । ୧୯ ।
ମଧୂକର ମାଳା ଯିବ, କୃଷ୍ଣଙ୍କୁ ବେଢ଼ି ଉଡ଼ିବ
କହିବ ଶ୍ରବଣ ଲଗି, ଆସନ୍ତୁ ବେଗି ଯେ । ୨୦ ।
ଆଗୋ ଗୋ ଗନ୍ଧ ପୋଖରି, ତୋ ଗନ୍ଧ ଯାଉ ପ୍ରସରି
ଶ୍ରୀକୃଷ୍ଣ ହୃଦୟେ ପୂରି, ଆଣ ଓଟାରି ଯେ । ୨୧ ।
ସବୁରି ହୃଦ ଆନନ୍ଦ, ଅଟନ୍ତି ପରମାନନ୍ଦ,
କେମନ୍ତେ ରହିବୁ ମୂର୍ଚ୍ଛି, ପିଣ୍ଡକୁ ଲେଛୁ ଯେ । ୨୨ ।
ଏତେକ ବୋଲି ଲେଉଟି, କ୍ରୋଧେ ଗଦଗଦ ଉଠି
ମନ୍ଦିରେ ପ୍ରବେଶ ହୋଇ, ମୁଖ ଶୁଖାଇ ଯେ । ୨୩ ।
ଗର୍ଦ୍ଧିଷ ଉଚରେ ପଡ଼ି, ଶୋଇଲେ ବଦନ ମାଡ଼ି,
କ୍ରୋଧେଣ ସକଳ ସଖୀ, ଗଲେ ଉପେକ୍ଷି ଯେ । ୨୪ ।
ଏଥୁ ଅନନ୍ତରେ ଆନ ଶୁଣ ବଚନ ବିଧାନ
ଦ୍ୱାରିକା ଯୁବତୀ ଯୂଥ, ଦେଖନ୍ତି ନୃତ୍ୟ ଯେ । ୨୫ ।
ସେ ଯେତେ ଗାଇଲେ ଗୀତ ବିଚ୍ଛେଦ ବିବିଧ ମତ
ଚକିତ ସମସ୍ତେ ଶୁଣି, ନ ଆସେ ବାଣୀ ଯେ । ୨୬ ।

---

୧୬ । ତରୁ—ବୃକ୍ଷ । ପାଦାନ୍ତ—ପାଦାତିକ ସୈନ୍ୟ । ଖରଣ୍ଡ—ଶରମୁଣ୍ଡା ।

୧୭ । ଘେନେ ପବଣ—ପ୍ରାଣବାଏ, ପ୍ରାଣନାଶ କରେ ।

୧୮ । ଘଅ—ଡାକ ।

୧୯ । ଚଳ—ଚାଲିଯାଅ । ମିଳ—ମିଳିତ ହୁଅ । ଘଇ—ଡାକି ।

୨୦ । ମଧୂକର ମାଳା—ଭ୍ରମର ଶ୍ରେଣୀ । ଶ୍ରବଣଲଗି—କାନପାଖରେ ଲାଗି ଯାଇ । ବେଗି—ଶୀଘ୍ର ।

୨୨ । ଲେଛୁ—ଗ୍ରୁଡ଼ି ।

୨୪ । ଉପେକ୍ଷି—ଗ୍ରୁଡ଼ି ।

ସମସ୍ତେ ମନେ ବିଚାରି  ଏ କିଶୋରୀ ମାୟା କୁମାରୀ
ଦେବଙ୍କୁ ଦୁର୍ଲଭ ଅତି  ଏହାଙ୍କ ଗତି ଯେ । ୨୭ ।
ଚାତୁରୀ ମାଧୁରୀ ଛଟା,  ଚାହାଣୀ ଚଢ଼ୟା ଅଠା,
ତ୍ରିବଳି ଲଳିତ ଠାଣି,  ତ୍ରିଜଗଜ୍ଜିଣି ଯେ । ୨୮ ।
ହରିଲେ ସକଳ ମନ,  ଜାରିଲେ ଗାରିମା ଜନ
ଗୁପତେ କାହିଁ ଏ ଥିଲେ,  ଗଞ୍ଜି ଅଇଲେ ଯେ । ୨୯ ।
ଶୁଣିଲୁ ନ ଥିଲୁ କର୍ଣ୍ଣେ,  ଦେଖିଲୁ ନାହିଁ ଲୋଚନେ,
ଏମନ୍ତ ଗୀତ କି ନୃତ୍ୟ,  ବାଦ୍ୟ ସଙ୍ଗୀତ ଯେ । ୩୦ ।
ଆମ୍ଭର ପ୍ରଭୁଙ୍କ କଥା  ଗୋପର ଯେତେ ବାରତା,
ଏ କାହୁଁ ଶିଖି ଅଇଲେ,  ଦେଖି କି ଥିଲେ ଏ । ୩୧ ।
ସୁନ୍ଦର ପଣେ ବଳନ୍ତି  ବୁଦ୍ଧିରେ ସର୍ବ ଜିଣନ୍ତି
ବଚନେ ନୋହେ ତୁଳାଇ  ଓହରି ଯାଇ ଏ । ୩୨ ।
ଏ କିକ ହୁଅନ୍ତି ଗୋପୀ  ଅଇଲେ ମାୟା ସ୍ୱରୂପୀ
କପଟେ ଅବା ଶ୍ରୀପତି,  ଅଣାଇଛନ୍ତି ଏ । ୩୩ ।
ଏହାଙ୍କର ତେଜ ଚାହିଁ  ଚଳାଇ ତ ବାଟ ନାହିଁ,
କଏ ଏ କାହାର ନାରୀ,  ଜାଣି ନ ପାରି ଯେ । ୩୪ ।
ନଷ୍ଟଯେ ସରିଲୁ ବୁଦ୍ଧି  ହରଷି ବସିଲୁ ନିଧି,
ଆଉ କି ରହିବେ ହରି,  ଦ୍ୱାରକାପୁରୀ ଯେ । ୩୫ ।

---

୨୮ । ଚଢ଼ୟା—ଚଢ଼େଇଆର ଅଠାକାଠି ବା ଫାଶ । ତ୍ରିବଳି—ଉତ୍ତମ ନାୟିକାମାନଙ୍କ ଉଦରର ତିନିବଳି ବା ଭଙ୍ଗ । ଲଳିତ—ସୁନ୍ଦର । ତ୍ରିଜଗଜ୍ଜିଣି—ତ୍ରିଭୁବନକୁ ଜୟ କରିଥିବା ।

୨୯ । ଜାରିଲେ—ଖର୍ବ କଲେ । ଗାରିମାଜନ—ଗାରିମା ପ୍ରକାଶ କରୁଥିବା ବ୍ୟକ୍ତି, ଗର୍ବୀ । ଗଞ୍ଜି ଅଇଲେ—ଗଞ୍ଜନା ଦେବାକୁ ଆସିଲେ ।

୩୨ । ବଳନ୍ତି—ସମସ୍ତଙ୍କୁ ଅତିକ୍ରମ କରନ୍ତି । ତୁଳାଇ—ତୁଳନା କରି । ଓହରି ଯାଇ—ଅପସରି ଯାଇ ।

୩୩ । ସରୂପୀ—ସ୍ୱରୂପୀ । ଶ୍ରୀପତି—ଶ୍ରୀକୃଷ୍ଣ ।

୩୫ । ନିଧି—ସମ୍ପତ୍ତି, ଶ୍ରୀକୃଷ୍ଣ ।

ଗାୟେତ୍ରୀ ଗୀତରୁ ଜାଣି
ଏତେ ସେ ଗୋପ ତରୁଣୀ,
ଏତେ ସେ ରାଧିକା ପ୍ରୀତି,
ଭବ୍ୟ ମୂରତି ଯେ । ୩୬ ।
ଯାହା କହୁଥିଲେ ହରି
ଆମ୍ଭେ ତା ପ୍ରତେ ନ କରି
ମରଣ ଗଳାରେ ବାନ୍ଧି,
ମଣିଲୁ ନଧି ଯେ । ୩୭ ।
ପରୁଷତ ଶଲ୍ୟ ନାହିଁ
ଭାଷା ଆଉ ଦେବା କାହିଁ
ଜୋକର ମୁହଁରେ ଲୁଣ,
ସରିଲା ଠାଣ ଯେ । ୩୮ ।
କ ଗୁଣେ ରାଜକୁମାରୀ
ଧାତା କଲା ନ ବରୁଷି
ଯେ ଯେତେ କରି ତା ଗୁଣ
ନ କରି ଖୁଣ ଯେ । ୩୯ ।
ଆମ୍ଭ ଜାଣୁ ଆମ୍ଭେ ରାଣୀ
ଗୋପୀ ଗୋପ ଗଉଡୁଣୀ
ଆମ୍ଭେ ଏ ସୃଷ୍ଟିରେ ରାଜା,
ସେ ଆମ୍ଭ ପ୍ରଜା ଯେ । ୪୦ ।
ବସୁରେ ଦାସୀ ପଣକୁ
ଲକ୍ଷିଲେ ନୋହିଲୁ ତାଙ୍କୁ
ଏତେକ ବସୁର ନାରୀ
ହରି ସୁମରି ଯେ । ୪୧ ।
ଏବେ ପ୍ରଭୁ ରକ୍ଷା କରି
ମନରୁ କୋପ ସଂହରି
ବହୁତ ଅପ୍ରାଧ କଲୁ
ଜାଣି ନ ଥିଲୁ ଯେ । ୪୨ ।
ଗରବ ଗଞ୍ଜନ ବାନା
ଶରଣ ରକ୍ଷଣ ସେହ୍ନା
ସବଦା ଆମ୍ଭେ ଶରଣ
କର କାରଣ ଯେ । ୪୩ ।
ବଶ୍ୱକୂଟ ମାୟା ହରି,
ଜେ ତହୁଁ ଉବୁରି ପାରି
କରୁଣା ଯାହାକୁ କର,
ସେ ହୋଇ ପାର ଯେ । ୪୪ ।
ଏବେ ହେ ଆମ୍ଭଙ୍କୁ ନଅ
ତାହାକୁ ସମର୍ପି ଦିଅ,
ତାହାଙ୍କ ଶ୍ରୀମୁଖ ଦେଖି,
ହୋଇବୁ ସୁଖୀ ଯେ । ୪୫ ।

---

୩୭ । ପ୍ରତେ—ପ୍ରତ୍ୟୟ, ବଶ୍ୱାସ ।

୩୮ । ଶଲ୍ୟ—ଶଳ୍ପ ।

୪୧ । ଲକ୍ଷିଲେ—ଲକ୍ଷ୍ୟକଲେ ।

୪୨ । ସଂହରି—ତ୍ୟାଗ କର । ଅପ୍ରାଧ—ଅପରାଧ, ଦୋଷ ।

୪୩ । ଗରବ ଗଞ୍ଜନ ବାନା—ଗର୍ବ ଗଞ୍ଜନ ପତାକା । ଶରଣ ରକ୍ଷଣ ସେହ୍ନା—ଶରଣାଗତଙ୍କୁ ରକ୍ଷା କରିବାର କବଚ ।

୪୪ । ଉବୁରି—ରକ୍ଷା ପାଇ ।

ଅନ୍ତର୍ଗତ ଭାବ ଜାଣି, ପ୍ରସନ୍ନ ସାରଙ୍ଗପାଣି
ଗାପ୍ୟେଣୀ ଗାଇଲେ ଆଗ କ ଧନ ମାଗ ପ୍ୟେ । ୪୬ ।
ଗାପ୍ୟେଣୀ କହିଲେ ଆନ କଛୁ ମାଗୁନାହୁଁ ଧନ
ଆମ୍ଭର ପିଅର ଦେବ, ନାହିଁ ନୋହିବ ପ୍ୟେ । ୪୭ ।
ତୁମ୍ଭର ପଦରେ ସେବା, ନାମ ତାଙ୍କ ଭାବଗ୍ରାହୀ
ନିଜ ତୁମ୍ଭେ ସେହୁ ହୁଅ, ହୋଇଲେ ଯାଅ ପ୍ୟେ । ୪୮ ।
ଏତେ କହି ଅନ୍ତର୍ଦ୍ଧାନ ଅଦୃଶ୍ୟେ ପଶେ ଗଗନ
ପ୍ରବେଶ ଯେ ଯାହା ଅଙ୍ଗ; ଯେ ଯହିଁ ସଙ୍ଗ ପ୍ୟେ । ୪୯ ।
ଗାପ୍ୟେଣୀଙ୍କ ମୁଖୁଁ ଶୁଣି, ଉଚାଟ ସାରଙ୍ଗପାଣି
ନୟନୁ ବହଇ ନୀର ମନ ଅଥିର ପ୍ୟେ । ୫୦ ।
ଭାବେ ଜର ଜର ହୋଇ ରୁକ୍ମଣୀଙ୍କ ମୁଖ ଚାହିଁ,
ବୋଲନ୍ତି ଆଜ ମୋ ଧନ୍ୟ ସୁଫଳ ଜନ ପ୍ୟେ । ୫୧ ।
ତୁମ୍ଭ ଆମ୍ଭ ମନ ଜାଣି ଦୟା କଲେ ଠାକୁରାଣୀ
ଗାପ୍ୟେଣୀମାନଙ୍କ ଭାବ, ଭଲ କ ଠାବ ପ୍ୟେ । ୫୨ ।
ଏବେ ତୁମ୍ଭେ ଚଳ ଯାଅ, ଯେ ଯାହା ବିଧାନେ ରହ
ଜନର ସମୟ ଜାଣି କହିବା ପୁଣି ପ୍ୟେ । ୫୩ ।
ଏହା ଶୁଣି ସର୍ବ ରାଣୀ ନୟନୁ ନ ରହେ ପାଣି
ମସ୍ତକ ପୋଡ଼ି ଯୁବତୀ ଉଭାର ଛନ୍ତି ପ୍ୟେ । ୫୪ ।
ହୃଦୟେ ଶୋକ ସମ୍ଭାଳି, ଆରମ୍ଭେ ରହିଣ ବାଳୀ
ମେଲାଣି ପାଇଣ ଗଲେ, ଗୃହେ ମିଳିଲେ ପ୍ୟେ । ୫୫ ।

---

୪୬ । ଅନ୍ତର୍ଗତ ଭାବ—ଅନ୍ତରର ଭାବ । ସାରଙ୍ଗପାଣି—ଶାର୍ଙ୍ଗଧନ୍ୱା, ଶ୍ରୀକୃଷ୍ଣ । ଗାଇଲେ—ଡ଼ାକଲେ । ଆଗ—ଆଗକୁ ।

୪୭ । ପିଅର—ପିତା

୪୯ । ଅନ୍ତର୍ଦ୍ଧାନ—ଲୁଚିଗଲେ । ଗଗନ—ଆକାଶ ।

୫୦ । ଅଥିର—ଅସ୍ଥିର ।

୫୨ । ଠାବ—ସ୍ଥିର ।

୫୪ । ଉଭାରଛନ୍ତି—ଠିଆ ହୋଇଛନ୍ତି ।

୫୫ । ଆରମ୍ଭେ—ଉଦ୍‌ଯୋଗରେ । ମେଲାଣି—ବିଦାୟ ।

ଲଜ୍ଜାସେ ଗଳିତ ହୋଇ
ଚନ୍ଦ୍ରାସେ ଦୁର୍ବଳ ଦେଖି
ଭୋଜନ ଶୟନ ବନ୍ଦ,
ନାହିଁ ସମ୍ଭାଷ ସେ । ୫୬ ।
ବଳେ ସଖୀମାନେ ଧରି
ଭୋଜନ ବେସନ କରି
ବୁଝାଇ କହନ୍ତି କଥା
ଛଡ଼ାଇ ବ୍ୟଥା ସେ । ୫୭ ।
ଏମନ୍ତେ ଶ୍ରୀ ଜଗନ୍ନାଥ,
ମର୍ଦ୍ଦନ ମାର୍ଜଣା ଗାତ୍ର
ସ୍ନାହାନ ଭୋଜନ ବଧି,
ତାମ୍ବୁଳ ସିଦ୍ଧି ସେ । ୫୮ ।
ପଲଙ୍କ ଉପରେ ପହୁଡ଼ି
ରାଧା ଗୁଣ ମନେ ପଢ଼ି
ଉନ୍ନିଦ୍ରେ ପାହିଲ ରାତି,
ଉଠି ବସନ୍ତି ସେ । ୫୯ ।
ଦେବ କହେ ଏହି ମତି,
ରାଧାଙ୍କ ସ୍ୱରୂପ ଚିନ୍ତି
ବଞ୍ଚିଲେ ଥୋକାଏ ଦିନ,
ଶ୍ରୀ ଭଗବାନ ସେ । ୬୦ ।

ଇତି ଶ୍ରୀ ରହସ୍ୟ ମଞ୍ଜରୀ ତ୍ରୟୋଦଶ ଛାନ୍ଦେ
ରାଧା ବନେ ଗଉରୀ କାମାର୍ଚ୍ଚନ ବନ୍ଧେ,
ଚତୁର୍ଦ୍ଦଶ ଛାନ୍ଦ ବର୍ଣ୍ଣିବେ କେବଣ ଭାବ
କହିବାକୁ ଆଜ୍ଞାହେଉ ଶ୍ରୀ ପଦ୍ମନାଭ ।

—୦—

୫୬ । ସମ୍ଭାଷ—ସମ୍ଭାଷଣ, କଥାବାର୍ତ୍ତା ।

୫୭ । ବେସନ—ବେଶ ।

୫୯ । ପହୁଡ଼ି—ଶୋଇ । ଉନ୍ନିଦ୍ରେ—ଅନିଦ୍ରାହୀନ ଭାବରେ, ଅନିଦ୍ରାରେ ।

## ଚତୁର୍ଦ୍ଦଶ ଛାନ୍ଦ

ରାଗ— ପଞ୍ଚସ୍ୱରମଞ୍ଜରୀ (ଖ୍ୟାମ୍ବକ ବାଣୀରେ ଗାଇବ)

ଏଥୁ ଅପୂର୍ବ ରାତି,
ଚଇତ ପୂର୍ଣ୍ଣିମୀ ରାତି
ସୁମରିଲେ ଶ୍ରୀୟାପତି
ନିଜ ବାହନ ।
ଧ୍ୟାନେ ଥିଲା ଖଗେଶ୍ୱର
ତକ୍ଷଣେ ଉଠିଲା ଧୀର
ଉଡ଼ିଲା ତେଜ ପ୍ରଖର;
ଊର୍ଦ୍ଧ ଗଗନ । ୧ ।
ଆସନ୍ତେ ପକ୍ଷୀ ପବନ
ପ୍ରଳୟ ମେଘ ଗର୍ଜ୍ଜନ
ଜଳଧି ଜଳ ତର୍ଜ୍ଜନ
ଗଗନେ ଉଠି ।
ଆସି ଖୂପରୂପ ଧରି
ପ୍ରଭୁଙ୍କୁ ଦର୍ଶନ କରି
ସନ୍ତୋଷ ହୋଇ ମୁରାରି,
ଆଉଁସେ ପିଠି । ୨ ।
ବୋଲନ୍ତି ଲୋ ଦାସି ଯାଅ
ସବୁନ୍ତ ବେଶ୍ କରାଅ
ବାହନ ଚଳାଇ ଆସ,
ରାଧା ଦର୍ଶନେ ।
ଆଜ୍ଞା ପାଇ ଦାସୀ ଗଲେ,
ସର୍ବ ଅଙ୍ଗ ସାମଲିଲେ
କର୍ପୂର କସ୍ତୁରୀ ଭୁଲେ,
ଗନ୍ଧ ଚନ୍ଦନେ । ୩ ।
ରତନ ବସନ ଶୋଭା
ଅପରୂପେ ଆପ ଲୋଭା
କାମ ରଥବର କି ସେ
ସମରେ ସାଜେ ।
କି ଏ ନବ କଳ୍ପତରୁ
ଅଷ୍ଟ ରତ୍ନେ ଫଳ ଗରୁ
ଚନ୍ଦ୍ରହୁଁ ଅଧିକ ଗୁରୁ
ମୁଖ ବିରାଜେ । ୪ ।

---

## ଚତୁର୍ଦ୍ଦଶ ଛାନ୍ଦ

୧ । ଶ୍ରୀୟାପତି—ଲକ୍ଷ୍ମୀପତି, ଶ୍ରୀକୃଷ୍ଣ । ନିଜ ବାହନ—ଗରୁଡ଼ । ଖଗେଶ୍ୱର—ପକ୍ଷୀ ଶ୍ରେଷ୍ଠ, ଗରୁଡ଼ ।

୨ । ମେଘ—ମେଘ । ଜଳଧି—ସାଗର । ଖୂପରୂପ— ଝଙ୍କରୂପ ।

୩ । ସାମଲିଲେ—ସଜାଇଲେ ।

୪ । ଆପ—ଆପଣ । ରଥବର—ରଥ । ଗରୁ—ଭାର ।

ବିଜୟେ ମହା ମଣ୍ତ୍ରଣୀ
ରୁକ୍ମିଣୀ ରମଣୀ ମଣି
ଯୂଥ ଯୂଥ ଠାକୁରଣୀ
ସଙ୍ଗେ ବିଜୟେ
ଦିବ୍ୟ ବେଶ ସର୍ବାଙ୍ଗଣୀ
ଯାର ଯେତେ ପରିଜନୀ
ସେବାଯୂଧ କରେ ଘେନି
ସର୍ବେ ଚଳାୟେ । ୫ ।

ସକଳ ନୂପୁର ନାଦ,
କଙ୍କଣ ମୁଦ୍ରିକା ବାଦ୍ୟ
ରୁଣୁଝୁଣିତ ଶବଦ
ଘୋର ଚହଳ ।
ପ୍ରଭୁଙ୍କ ପାରୁଶେ ଆସି
ଦର୍ଶନ କଲେ ସୁକେଶୀ
ହେଲେ ତ ଲୁହରି ହସି
ଅତି ଗହଳ । ୬ ।

ଶ୍ରୀହରି ବୋଲନ୍ତି ଆସ
ଗରୁଡ଼ ପୃଷ୍ଠରେ ବସ
ଅପୂର୍ବ ଆଜର ରସ
ଯଶ ପୂରିତ,
ଶୁଣ ତୁ ଆହେ। ଗରୁଡ଼
ଅାମ୍ଭଙ୍କୁ ଘେନିଣ ଉଡ଼
ଶ୍ରୀ ବୃନ୍ଦାବନରେ ଛାଡ଼
ଆଜ ତୁରିତ । ୭ ।

ଶୁଣିଣ କଶ୍ୟପ ସୁତ
ମନରେ ହୋଇ ଉଷତ
ପିଠି ବିସ୍ତାରିଲ ସାତ-
ସସ୍ତ ଯୋଜନ ।
ଶ୍ରୀକୃଷ୍ଣ ସହିତେ ତହିଁ
ବସିଲେ ସମସ୍ତେ ଯାଇଁ
ସୁପାତି ଶେଯ ପଡ଼ାଇ
ଯାର ଯେସନ । ୮ ।

ଉଡ଼ିଲ ଗରୁଡ଼ ପତି
ଅଦୃଶ୍ୟ ଗଗନ ଗତି
ମିଳିଣ କଦମ୍ବ କତି
ଲେଉଟି ପୁଛି ।
ଏବେ କିସ ଆଜ୍ଞା ପ୍ରଭୁ
ବୁଝାଇ କହିବା ସବୁ
ଶ୍ରୀକୃଷ୍ଣ ବୋଇଲେ ବାବୁ
ଶୁଣ କହୁଛି । ୯ ।

---

୫ । ମହାମଣ୍ତ୍ରଣୀ—ମହାମଣ୍ତ୍ରନା । ପରିଜନୀ—ପରିଚାରିକ । ସେବାଯୂଧ-ସେବା ସାମଗ୍ରୀ ।

୭ । ତୁରିତ-ଶୀଘ୍ର ।

୮ । କଶ୍ୟପସୁତ—ଗରୁଡ଼ । ଉଷତ—ଆନନ୍ଦିତ । ପଡ଼ାଇ—ପକାଇ ।

୯ । କତି—ନିକଟରେ ।

ଏବେ ତୁ ଚଳକୁ ପଡ଼ି
କଦମ୍ବ ଗଛରେ ଚଢ଼ି
ବନ ଉପବନେ ଯେତେ
ଡାଙ୍କିବୁ ଗଗନ ମତେ

ଧୀରେ ଧୀରେ ଉଡ଼ି
ପକ୍ଷି ପ୍ରସାର,
ମଥୂର ଗୋପ ସହିତେ
ଅତି ବିସ୍ତାର । ୧୦ ।

ଆକାଶ ପ୍ରାୟ ପରତେ
ନ ଦେଖିବେ କେହି ଚୋତେ
ପୃଷ୍ଠରେ ଯୁବକ ସର୍ବେ
ବୁଲି ବୁଲି ଦେଖୁଥିବେ

ଯାଇବେ ଜନ ସମସ୍ତେ
ଉପର୍ଗେ ରହି
ଅଦୃଶ୍ୟମତେ ରହିବେ
ନିଶ୍ଚଳେ ରହି । ୧୧ ।

ନିବଡ଼ ପିଠ ହୋଇବ
ଯେ ଯହିଁ ଥାଇଁ ଶୁଣିବ
ଯେଉଁଠାରେ ଯେତେ ଲୀଳା
ଦେଖିବେ ସର୍ବ ଅବଳା

ଠାବେ ଠାବେ ସନ୍ଧ ଥିବ
ଦଶିବ ସବୁ ।
ବନ ଉପବନ ଖେଳା
ଯେମନ୍ତେ ବାବୁ । ୧୨ ।

ଏତେ ବୋଲି ହୃଷୀକେଶୀ
କଳ୍ପତରୁ ମୂଳେ ଆସି
ସ୍ମରିଲେ ଶ୍ଳୋକ କୃଷ୍ଣ
ମିଳିଲ ଆସି ବହନ

ଗରୁଡ଼ ପୃଷ୍ଠରୁ ଖସି
ନିଶ୍ଚଳେ ରହି ।
ଜାଣିଲ ପ୍ରଭୁଙ୍କ ମନ
ଉଚ୍ଛନ୍ନ ହୋଇ । ୧୩ ।

ତା ହାତେ ମୋହନ ବଂଶୀ
ଯାଇଥିଲେ ହୃଷିକେଶୀ
କ୍ରୋଧେ ଗଦ ଗଦ ହୋଇ
କହିଲେ ତାଙ୍କୁ ମଣାଇ

ଗୁପତେ ଥୋଇ ବଶ୍ବାସୀ
ଦେଲ ସେ ଆଣି,
ସକଳ ଦୁଃଖ ଜଣାଇ
ନିର୍ମାୟା ବାଣୀ । ୧୪ ।

---

୧୦ । ପକ୍ଷି – ପକ୍ଷ ।
୧୧ । ପରତେ—ପ୍ରତ୍ୟକ୍ଷ । ଉପର୍ଗେ—ଉପରେ ।
୧୨ । ସନ୍ଧ—ଫାଙ୍କ ।
୧୪ । ମଣାଇ—ମନାଇ । ନର୍ମାୟା—ମାୟାଶୂନ୍ୟ ।

ଶୁଣ ମୋ ପ୍ରାଣ ସଙ୍ଗାତ  ତୁମ୍ଭେ ମୋର ପଞ୍ଚଭୂତ
ନିରନ୍ତରେ ମୋର ଚିତ୍ତ  ତୁମ୍ଭଙ୍କ ଠାଇଁ,
ଏବେ ତୁମ୍ଭେ ଚଳିଯାଅ  ଅଳ୍ପଦିନ ମୂର୍ଚ୍ଛିଥାଅ
ଦାମ ସୁଦାମଙ୍କୁ କହ  ସର୍ବ ବୁଝାଇ । ୧୫ ।

ବିଶାଳ ବୃଷଭ ଡାକ  ବୋଧି କହ କିଙ୍କିଣିକ
ଦେବପ୍ରସ୍ଥ ବରୁଥିକ  କହିବୁ ଯାଇ;
ବସୁଦାମ ସୁଦାମଙ୍କୁ  କୁମୁଦ ଜୟନ୍ତକଙ୍କୁ
ଅର୍ଜ୍ଜୁନ ସୁବଳସ୍ତଙ୍କୁ  କହ ତୁ ଯାଇ । ୧୬ ।

ଲବଙ୍ଗ ଲତିକା ଆଗେ  କହିବୁ ମୋହୋ ସରାଗେ
ଖେଳନ୍ତି ସରିବା ଲଗେ  ଥିବ ବିସ୍ମରି ।
ତୁମ୍ଭେ ଷୋଳସସ୍ର ସଙ୍ଗୀ  ମୋର ଯେବେ ଅଭିରଙ୍ଗୀ
ତାହାଙ୍କୁ କହିବୁ ବେଗି  ଗୁପତ କରି । ୧୭ ।

ଆମ୍ଭ ପିତା ମାତା ସେବା  ତୁମ୍ଭଙ୍କୁ ଲାଗଇ ବାବା
ସମୟେ ସମ୍ଭାଳି ଥିବା  ମୋ ବୋଲ ମାନି,
ଦନୁଜ ଦଳ ସଂହାରି  ଧରଣୀର ଭାର ହରି
ଯିବଇଁ ମୁଁ ନିତ୍ୟପୁରୀ  ତୁମ୍ଭଙ୍କୁ ଘେନି । ୧୮ ।

ବୋଧ ପାଇ ସ୍ତୋକକୃଷ୍ଣ  ପ୍ରଣାମ କଲା ବହନ
ଆନନ୍ଦେ ନିଜ ସଦନ  ଚଳିଣ ଯାଇ,
ଏଥୁ ଅନନ୍ତରେ ହରି  ଗାଈକୁ ଯାଇ ଚିଆରି,
ଯିବ ଯୁଗ ସସ୍ର ପୂରି  ପାଇବୁ ସନ୍ଧି । ୧୯ ।

---

୧୫ । ସଙ୍ଗାତ—ମିତ୍ର । ପଞ୍ଚଭୂତ—କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ, ସୃଷ୍ଟିର ଏହି ପଞ୍ଚ ଉପାଦାନରେ ଗଠିତ ଶରୀର । ନିରନ୍ତରେ—ସର୍ବଦା । ଠାଇଁ—ଠାରେ । ମୂର୍ଚ୍ଛିଥାଅ—ଅପେକ୍ଷା କରି ରହ ।

୧୭ । ଲଗେ—ଅଳ୍ପ ସମୟ ମଧ୍ୟରେ । ଅଭିରଙ୍ଗୀ—ଅଭିମନ୍ଦିତ ।

୧୮ । ଦନୁଜ—ଅସୁର । ଦଳ ସଂହାରି—ଶତ୍ରୁଙ୍କୁ ସଂହାର କରି, ଧ୍ୱଂସକରି । ଧରଣୀର ଭାର ହରି—ଧରଣୀର ଭାରକୁ ଉଶ୍ୱାସ କରି, ଧରଣୀର ଦୁଃଖକୁ ଦୂର କରି । ନିତ୍ୟପୁରୀ—ନିତ୍ୟ ବାସସ୍ଥଳୀ, ବୈକୁଣ୍ଠପୁରୀ ।

୧୯ । ଚିଆରି—ସଚେତନ କରି ।

ନିଦ୍ରାବଶଙ୍କ ସଇଣ ଆଜ୍ଞା ଦେଲେ ନାରାୟଣ
ତୁ ଗୋ ନିଦ୍ରାସ୍ୱରୂପିଣୀ ମୋହିବୁ ସବୁ,
ଗରୁଡ଼ ପୃଷ୍ଠରେ ଯେତେ ବ୍ରଜବଧୂ ମିଳି ମୋତେ
ପାହିବା ପର୍ଯ୍ୟନ୍ତ ଏତେ ଘୁଞ୍ଚଣ ଥିବୁ । ୨୦ ।

ଆଗୋ ତୁ ସପନାବନ୍ତ ସପନ ପାତନା-ପାନ୍ତ
ବଞ୍ଚାଇ ତୁ ନେବୁ ରାତ୍ର ଜନମାନଙ୍କୁ
ଏତେକ ତାହାଙ୍କୁ କହି ଗଗନେ ଚନ୍ଦ୍ରଙ୍କୁ ଚାହିଁ
ଆନନ୍ଦେ ଉଗ୍ର କ୍ରୋଧ ହୋଇ ବୋଲନ୍ତି ତାଙ୍କୁ । ୨୧ ।

ଶୁଣ ତୁ ଶଶଲାଞ୍ଛନ ଧରଣୀ ଜଡ଼ କରଣ
ନିର୍ମଳ ତାରକାଗଣ ମଧ୍ୟେ ବିରାଜ,
କାଳନ୍ଦୀ କଦମ୍ବ ଚାହିଁ ଯାହାଙ୍କୁ ଯେମନ୍ତ କହି
କଦମ୍ବ ମୂଳରେ ରହି ହୋଇଲେ ସଜ । ୨୨ ।

ରୁଚିର ଅଙ୍ଘ୍ରି ଯୁଗଳ ଯବା ପୁଷ୍ପ ଶ୍ରେଣୀ ତଳ
ମଞ୍ଜୀର ମଣି ମଞ୍ଜୁଳ ପଦେ ଦୋଳଣି,
କଣୟ କିଙ୍କିଣି କଟି ଶୃଙ୍ଖଳା ପ୍ରଖର ଘଣ୍ଟି
କୁଞ୍ଚିତ ପ୍ରକଟ ଧଟୀ ପୀତ ପଚନୀ । ୨୩ ।

ଶ୍ରୀଅଙ୍ଗେ ଚର୍ଚ୍ଚିତ ଚାରୁ କସ୍ତୁରୀ କର୍ପୂର ଅଗୁରୁ
ସୁଗନ୍ଧ ଆମୋଦ କରୁ ଆନନ୍ଦ ବନ ।
କଣ୍ଠେ କଉସ୍ତୁଭ ମଣି ମକର କିରଣ ଜିଣି
ଶ୍ରବଣେ କୁଣ୍ଡଳମଣି ଜିଣି ତପନ । ୨୪ ।

---

୨୦ । ପାହିବା—ରାତ୍ରି ପାହିବା ।
୨୧ । ପାତନୋପାନ୍ତ—ଫନ୍ଦାପାତ । ବଞ୍ଚାଇ—କଟାଇ, କାଳକଟାଇ ।
୨୨ । ଶଶଲାଞ୍ଛନ—ଶଶଧର, ଚନ୍ଦ୍ର ।
୨୩ । ଅଙ୍ଘ୍ରି—ପାଦ । ଯବାପୁଷ୍ପଶ୍ରେଣୀ—ଯବାଫୁଲ ପରି ଲାଲବର୍ଣ୍ଣ ତଳ । ମଞ୍ଜୀର—ନୂପୁର । ଦୋଳଣି—ଦୋଳାୟିତ । କଣୟ—ସୁନା । ଧଟୀ—ଧଡ଼ି । ପୀତପଚନୀ ପୀତାମ୍ବର ।
୨୪ । କର୍ପୂରଅଗୁରୁ—କର୍ପୂର ଓ ଅଗୁରୁ । କଣ୍ଠେ ·· ··ତପନ—ଶ୍ରୀକୃଷ୍ଣଙ୍କର କଣ୍ଠରେ ଶୋଭାପାଉଥିବା କଉସ୍ତୁଭମଣି ତାଙ୍କ କର୍ଣ୍ଣରେ ଥିବା ମକର କୁଣ୍ଡଳର ମଣିର ତେଜ ଓ ସୂର୍ଯ୍ୟଙ୍କର ତେଜକୁ ପରାଜିତ କରୁଅଛି ।

ନିରୁପାମ ନାସାପୁଟ ସିନ୍ଧୁ ଫଳ ଝୁଟ-ଝୁଟ
ସୁରଙ୍ଗ ଅଧର ତଟ ପରେ ବିରାଜେ
ଲୋଚନ ଅନଙ୍ଗ ଧନୁ ତରଙ୍ଗେ ତରଳେ ତନୁ
ଅଳକାବଳି ଯେସନ ଭୃଙ୍ଗ ପଙ୍କଜେ । ୨୫ ।

କପାଳେ ଚନ୍ଦନ ବିନ୍ଦୁ ନିନ୍ଦିତ ଶରଦ ଇନ୍ଦୁ
ସଙ୍କୋଚେ କୁମୁଦ ବନ୍ଧୁ ବଳିତ ତାଏ.
ମଉଳି-ମଣ୍ଡିତ-ଚୂଳ ମାଳତୀ ବେଢ଼ି ଉଜ୍ଜ୍ୱଳ,
ଶିଖୀ ଶିଖଣ୍ଡ ଚଞ୍ଚଳ ମଳୟ ବାଏ । ୨୬ ।

ଅଙ୍ଗଦ କଙ୍କଣ କରେ ମୋହନ ମୁରଲୀ ଧରେ
ସଧୀରେ ମଧୁରେ ସ୍ଫୁରେ ଅଧର ତଳେ,
ନବୀନ କିଶୋର ଅଙ୍ଗ ଅନଙ୍ଗ ତରଙ୍ଗ ରଙ୍ଗ
ଦେବ ଶନ୍ତ୍ରେ ତ୍ରିଭଙ୍ଗ କଦମ୍ବ ମୂଳେ । ୨୭ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଚତୁର୍ଦ୍ଦଶ ଛାନ୍ଦେ,
ପ୍ରିୟ ପ୍ରିୟା ସଦନ ପ୍ରବେଶ ବନ୍ଧେ,
ପଞ୍ଚଦଶ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ଉତ୍ତର,
କହିବାକୁ ଆଜ୍ଞାଦେଉ ଶ୍ରୀ ନନ୍ଦକିଶୋର ।

---

୨୫ । ନିରୂପାମ—ନିରୂପମ । ସିନ୍ଧୁଫଳ—ମୁକ୍ତା । ଅନଙ୍ଗଧନୁ—କନ୍ଦର୍ପର ଧନୁ । ତରଙ୍ଗେ—ତରଙ୍ଗାୟିତ ଗତିରେ । ଅଳକାବଳି—ଚୂର୍ଣ୍ଣକୁନ୍ତଳ । ଭୃଙ୍ଗ—ଭ୍ରମର । ପଙ୍କଜେ—ପଦ୍ମରେ ।

୨୬ । ବଳିତ ତାଏ—ତାପରେ ବଳି ରେଖାଯୁକ୍ତ ।

୨୭ । ଅଙ୍ଗଦ—ବାହୁ । ସ୍ଫୁରେ—ପ୍ରକାଶିତ ହୁଏ । ଅନଙ୍ଗ—କନ୍ଦର୍ପ । ତରଙ୍ଗ-ରଙ୍ଗ—ତରଙ୍ଗାୟିତ ଲୀଳା । ତ୍ରିଭଙ୍ଗ—ତ୍ରିଭଙ୍ଗଠାଣି ।

# ପଞ୍ଚଦଶ ଛାନ୍ଦ

ରାଗ—କଲ୍ୟାଣ ଆହାରୀ

ନବ କିଶୋର କିଶୋରୀ ପ୍ରାଣନାଥ
ବିମ୍ବାଧରେ ବଂଶୀ ସ୍ପର୍ଶିଲେ,
ତ୍ରିଭଙ୍ଗ ଛନ୍ଦେ କଦମ୍ବମୂଳେ ରହି
ମଧୁର ଧ୍ୱନି ଆଳପିଲେ ।
ଧୁନି ଶୁଭିଲା ତିନି ପୁର,
ସୁସ୍ୱର
ସଚରାଚର ଜନ ମନ ହରିଲା
ସମାଧି ଟଳିଲା ଶିବର । ୧ ।

ସପତସାଗର ଲହରୀ ସ୍ତମ୍ଭିତ
ଯମୁନା ଉଜାଣି ବହିଲା
ଶୁଷ୍କ ତରୁବର ନବ ପଲ୍ଲବିତ
ପାଷାଣ ତରଳ ଗଳିଲା
ଗଗନେ
ଉଡ଼ନ୍ତା ଚଢ଼ାଇ ସ୍ତମ୍ଭିଲେ,
ଗମ୍ଭୀର ଜଳୁଁ ମତ୍ସ୍ୟମାନେ ଉନ୍ମତ୍ତେ
ଡେଇଁଯାଇ କୂଳେ ପଡ଼ିଲେ । ୨ ।

---

## ପଞ୍ଚଦଶ ଛାନ୍ଦ

୧ । ନବକିଶୋର—ଶ୍ରୀକୃଷ୍ଣ । କିଶୋରୀ—ଶ୍ରୀରାଧା । ଆଳପିଲେ—ଆଳାପକଲେ । ଧୁନି—ଧ୍ୱନି ।

୨ । ସ୍ତମ୍ଭିତ—ସ୍ଥଗିତ । ଉଜାଣି—ବିପରୀତ । ଗଳିଲା—ବିଗଳିତହେଲା ।

ପଶୁ ଜନ୍ତୁମାନେ ମୁଖେ ଗ୍ରାସ ଘେନ
ଆକାଶକୁ ଚାହିଁ ରହିଲେ
ବେଦବର ବେଦ ପଢ଼ୁଁ ପାସୋରିଲେ
ଧ୍ୱନି ଶୁଣି ମୋହ ହୋଇଲେ,
ସୁସ୍ୱର
ପାହିଗଲା ରାଗ ଗାନ୍ଧାର,
ନବ ଜଳଶୋଷ ଚନ୍ଦ୍ରା ମେହ୍ନୁ ଉଡ଼ିଲା
ଘୁଞ୍ଚିଲା ମଦନ ଅନ୍ଧାର । ୩ ।

ଜାତପୁରେ ରହି- ଥିଲେଙ୍କେ ସୁନ୍ଦରୀ
ଅଳପ ନିଦ୍ରା ଯାଇଥିଲା
ବଂଶୀ-ଆଳାପ- ଧ୍ୱନି କର୍ଣ୍ଣେ ଶୁଣନ୍ତେ
ସପନ ମଣି ଚମକିଲା
ସୁନ୍ଦରୀ—
ଉଲଟି ପଡ଼ିଲା ତଳରେ
ନାବୁ କ ମୀନ ଛୁଟିକ ଡେଇଁ ଆସି
ପଡ଼ିଗଲା ନଦୀ ଜଳରେ । ୪ ।

ଭେଦିଲା ଧ୍ୱନି ହୃଦୟ ଜରଜର
ଉଚସ୍ୱରେ କାନ୍ଦି ଉଠିଲେ,
ବେଭଳ ମତ୍ତ ଆରତ ହତଗ୍ୟାନେ
ବାକଳେ ଲୋଟି ସାଉଁଟିଲେ,
ସୁନ୍ଦରୀ
ବାଞ୍ଛୁରୀ ରବ କ୍ଷଣେ ଶୁଣି,
ଏ ତ ବିପରୀତ କାହାର ଚରିତ
କୃଷ୍ଣ ଗଲା ବନୁ ନ ଜାଣି । ୫ ।

---

୩ । ବେଦବର—ବ୍ରହ୍ମା । ମେହ୍ନୁ—ମେଘ । ମଦନ ଅନ୍ଧାର—ପନ୍ଦର୍ପ କ୍ଲେଶ ।
୫ । ବେଭଳ ମତ୍ତ—ବିହ୍ୱଳମତି । ଲୋଟିସାଉଁଟିଲେ—ପଡ଼ି ଉଠିଲେ ।

ବ୍ରଜ କୁମାରେ ଏଥେ ଯେତେ ଅଛନ୍ତି
କାହାର ବଂଶୀ ଏ ନୋହଇ,
ଏଥର କୋଟି ଅଂଶ କ୍ଳେଶ ମାତ୍ରକୁ
ଲକ୍ଷିଲେ ସମ ଅଛୁ କାହିଁ
ଏ ଧୂନ
ଏ ମହା ମଧୁ ଯାମିନୀରେ,
କାହାପାଇଁ ଅବା କେହୁ ବଜାଇବ
ଯମୁନା ପୁଳିନ ବନରେ । ୬ ।

ଏତେବେଳେ ଆସି ସଂସିଦ୍ଧ ହୋଇଲା
ଯାହା କହିଥିଲେ ଅମ୍ବିକା,
ଏମନ୍ତ ବଚ୍ଚୁରୁ ବଂଶୀ ଡାକ ଦେଲା
ରାଧିକା, ରାଧିକା, ରାଧିକା
ସୁନ୍ଦରୀ--
ଶୁଣି କର କୋଡ଼ ହୋଇଲି
କେଶବାସ ଅସ- ମ୍ଭାଳ ହୋଇ ବାଳୀ
କଦମ୍ବମୂଳକୁ ଧାଇଁଲି । ୭ ।

ଦେଖିଲେ ଦିବ୍ୟ- ମୂରତି ଗୋପୀନାଥ
ରହିଁ ମଥା ପୋତି ରହିଲେ
କଶୋରବର ବଂଶୀ କରୁଁ ପକାଇ
ଧାଇଁ ଚଢ଼ ଭିଡ଼ ଧଇଲେ,
ସୁନ୍ଦରୀ
କ୍ରୋଧେ ଗଦ ଗଦ ବଦନ୍ତି,
କେ ତୁମ୍ଭେ କାହାକୁ ବଳେ ଧରୁଅଛ
ମୁହିଁ ଅନାଥିନୀ ଯୁବତୀ । ୮ ।

---

୬ । କ୍ଳେଶ—ସାମାନ୍ୟ । ଲକ୍ଷିଲେ—ଲକ୍ଷ୍ୟକଲେ, ତୁଳନା କଲେ ।
୭ । ସଂସିଦ୍ଧ—ସଂପୂର୍ଣ୍ଣ । କୋଡ଼—ଅସ୍ତବ୍ୟସ୍ତ ।

ଏହ୍ନମନ୍ତ ପର— ପୂର୍ବେ ଜଣେକ
ଗୋପ ନବରେ ରହିଥିଲା,
ଏହି ବନେ ପଶି ବଂଶୀ ବଜାଇ ସେ
ସବୁନ୍ତ ନାଶ କରିଗଲା,
ଏବେ ହେଁ—
ତୁମ୍ଭେ ଆସିଅଛ କାହିଁକି,
ତୁମ୍ଭେ ପୁଣି ନାଶ କରିବ କାହାକୁ
ପଚ୍ଛର ଅଇଲୁ ଚହିଁକ । ୯ ।
ଛୁଡ଼ ଛୁଡ଼ ବୋଲି କ୍ରୋଧେ ଅସମ୍ଭାଳେ
ବୋବାଇ ଉଠିଲେ ସୁନ୍ଦରୀ
ଦେଖି ଶ୍ରୀହରି ଲୋତକ ନ ରହଇ
ହୃଦେ ଭିଡ଼ିଲେ ଗାଢ଼ କରି,
ମୁରାରି—
ମୁଖ ଚୁମ୍ବି ଶୋକ ହରିଲେ,
ଗଳାରେ ଲମ୍ବାଇ ଚିକୁର କୁରୁଳ
କବରୀ ବାନ୍ଧି ସାମଳିଲେ । ୧୦ ।
ଅଞ୍ଚଳେ ମୁଖ ପୋଛି ଦେଇ ବୋଲନ୍ତି
ଶୁଣିମା ମୋର ପ୍ରାଣେଶ୍ୱରୀ
ମୋର ମନ କଥା ତୁମ୍ଭେ କି ନ ଜାଣ
କେତେ କହିବା ଫେଡ଼ିକରି,
ସୁନ୍ଦରି
ଦେଖ ମୋ ଦେହ ରୂପ କାନ୍ତି,
ଝୁରି ଝୁରି ତନୁ ଝଡ଼ି ଯାଉଅଛି
କେବଳ ରହିଛି ଜୀବନ୍ତି । ୧୧ ।

---

୯ । ଏହ୍ନମନ୍ତ—ଏହିପରି । ଚହିଁକ—ସେହିକଥା ।
୧୦ । ବୋବାଇ ଉଠିଲେ—ଚିତ୍କାର କରି ଉଠିଲେ । ଚିକୁରକୁରୁଳ—ଚୂର୍ଣ୍ଣ-କୁନ୍ତଳ । ସାମଳିଲେ—ଆଉଁସିଲେ ।
୧୧ । ଜୀବନ୍ତି—ଜୀବନ ।

ରାଧିକା ବୋଇଲେ ନାଗରମାନଙ୍କ
ସାଗର ସାଗର ଏ ବୁଦ୍ଧି,
ମାମୁ ମାର ଦୋଷ ମେଣ୍ଟାଇ ପାରନ୍ତ
ମାଈଁଙ୍କ ଗଳା ଧରି କାନ୍ଦ,
ନାଗର
ସେହି ମାୟାଧର ନୁହ କି,
କୋଟି ରାଜଜେମା ଯାହାକୁ ଖଟନ୍ତି
ସେ ପୁଣି ଝୁରେ ନର୍ମାଖୀକି । ୧୨ ।

ଶ୍ରୀକୃଷ୍ଣ ବୋଲନ୍ତି ଚନ୍ଦ୍ର ଦେବତାର
କୋଟି କୋଟି କନ୍ୟା ଅଛନ୍ତି
ଯାମନୀ କନ୍ୟା ତା କ୍ଷଣହେଁ ନ ଥିଲେ
ଗୁଡ଼ଇ ତାର ଜ୍ୟୋତି କାହିଁ ?
ସୁନ୍ଦରି
ଶଚୀ ବନ୍ଧୁ ଇନ୍ଦ୍ର ନୁହଇ,
ରାଧାକୃଷ୍ଣ ବୋଲି ଯୁଗ ଯୁଗାନ୍ତରେ
ଶାହାସ୍ତ୍ର ପୁରାଣେ ଲହଇ । ୧୩ ।

[ରାଧା ବୋଇଲେ ରାଧାକୃଷ୍ଣ ବୋଲଇ
ସେଇନ୍ତା ହୋଇ କି ରହିବ
ରାତି ରାତି ହୋଇ ଲୁଚି ଆସିଅଛ
ରାଜ ନ ପାହୁଁ ପଳାଇବ,
ନାଗର
ଏଥୁଁ ମରଣ ମଣି ଭଲ,
କ୍ଷଣକର ସୁଖ ସପନ-ସମ୍ପତ୍ତି
ପୁଣି କିଁ ସେହି କଲବଲ । ୧୪ ।]

---

୧୩ । କନ୍ୟା—ନାରୀ, ସ୍ତ୍ରୀ । ଶାହାସ୍ତ୍ର—ଶାସ୍ତ୍ର । ଲହଇ—ଲେଖଇ ।
୧୪ । ସେଇନ୍ତା—ସ୍ନେହଭାବ । ମଣି—ମଣେ, ଭାବେ ।

ଶ୍ରୀଧର ବୋଇଲେ ଏହି ଜାଣି ସଖି
ଅନେକ ଯୁଗଯାଏଁ ଥିବ,
ବହୁତ ହାସ ବିଳାସ ରାସ ରସ
ଏହି ବୃନ୍ଦାବନେ ହୋଇବ,
ସୁନ୍ଦରି
ମନେ କିଛି ଚିନ୍ତା ନ କର,
ତୁମ୍ଭର ପାଇଁ ନାନା ପାଞ୍ଚ କରିଅଛୁଁ
ଏଥିକୁ ହୁଅ ତତପର । ୧୫ ।
ଶୁଣି ସୁନ୍ଦରୀ ହୃଦୟୁ ଉଲ୍ଲସିତ
ଯୌବନୁଁ ବସନ ଖସିଲା
ମୁଖେ ମୁଖ ଚୁମ୍ବି ଭୁଜେ ଭିଡ଼ି ବାଳୀ
ଲମ୍ବି ଚଢ଼ି ତଳେ ବସିଲା,
ଗରୁଡ଼,
ଦେଖି ମୁଖ କଲା ପିଠିକି,
ପୃଷ୍ଠପରେ କୃଷ୍ଣ- ସାରୀ ଗୃହୁଁ ଥିଲେ
ପକ୍ଷୀ ଉହାଡ଼ିଲା ଦୃଷ୍ଟିକି । ୧୬ ।
ରାଧାକୃଷ୍ଣ ପ୍ରୀତି ସୁରତି ପ୍ରବନ୍ଧ
ଚୁମ୍ବନ ଆଲିଙ୍ଗନ ଖେଳା,
କାମ ସମୁଦ୍ରେ ବେନି ଜନ ବୁଡ଼ିଲେ
ଭାସିଣ ଗଲା ଗ୍ୟାନ-ଭେଳା
ସୁଜନେ,
ଚେତନା ବଳେ ପହଁରିଲେ,
ଜଳ ଦ୍ରବଲେ ଉତୁରି ନ ପାରନ୍ତି
ଯୋଗେ ଭେଳା ପାଇ ତରିଲେ । ୧୭ ।

---

୧୫ । ପାଞ୍ଚ—ଫନ୍ଦା ।

୧୬ । ଯୌବନୁଁ—ବକ୍ଷସ୍ଥଳରୁ । ମୁଖକଲା ପିଠିକି—ପଛକୁ ମୁହଁ ବୁଲାଇଲା । ଉହାଡ଼ିଲା—ଢାଙ୍କିଲା, ଆଢୁଆଳ କଲା ।

୧୭ । ଉତୁରି—ଉଦ୍ଧାର ।

ସୁରତି ଅନ୍ତେ                                    ସନ୍ତୋଷ ହେଲା ଜନ
କାମ ମନୋରଥ ପୂରିଲା ।
କେଶ ବସନ ବାସ                                    ପରିଧାପନ
ମନ ମଥ ଅପସରିଲା,
ସୁଜନେ,
ରାଧାକୃଷ୍ଣ ପଦ୍ମଚରଣ
ନିରେଖି ଦେବ                                    ନିରନ୍ତରେ ଆରତ
ଫୁକାରି ମାଗଇ ଶରଣ । ୧୮ ।

ଇତିଶ୍ରୀ ରହସ୍ୟମଞ୍ଜରୀ ପଞ୍ଚଦଶ ଛାନ୍ଦେ
ରାଧିକାରମଣ ସୁଖ ପ୍ରସନ୍ନ ବନ୍ଦେ,
ଷଷ୍ଠଦଶ ଛାନ୍ଦ ବର୍ଣ୍ଣିବେ କେବଣ କେବଣ ଉଚାଟ
କହିବାକୁ ଆଜ୍ଞା ହୋଉ ଶ୍ରୀନନ୍ଦଭଟ୍ଟ ।

---

୧୮ । ପରିଧାପନ—ପରିଧାନ । ମନମଥ—କନ୍ଦର୍ପ । ଅପସରିଲା—ଦୂରହେଲା ।
ନିରେଖି—ନିରୀକ୍ଷଣ କରି, ଧ୍ୟାନକରି । ଫୁକାରି—ଡାକି ।



## ଷଷ୍ଠଦଶ ଛାନ୍ଦ

ରାଗ- ଆନନ୍ଦ ଭୈରବ (ଖେମଟା ରାଗେଣ ଗୀୟତେ)

ଶ୍ରୀ ଗୋପୀକାନ୍ତ, ଗୋପୀଙ୍କ ଧନ,
ଗୋପୀ ନାମ ଧରି ଦେଲେ ବଇଁଶୀ ସ୍ୱନ । ୧ ।
ଆସ ଗୋ ଦୂତି, ଏ ମୋର କନ୍ତି,
ରତନ ବସନ ଗନ୍ଧ ଚନ୍ଦନ ଘେନ୍ତି । ୨ ।
ଆସ ବିମଳା ଗୋ କରିବା ଖେଳା,
ତୁମ୍ଭର ମଣ୍ଡଳୀ ମୁଖ୍ୟ ନବ ଅବଳା । ୩ ।
ଆସ ମାଧବୀ, ଗୋ ସୁଖ ସାଧବୀ
ତୁମ୍ଭର ମଣ୍ଡଳୀ ମୁଖ୍ୟ ଯେତକ ଦେବୀ । ୪ ।
ହେ ବୃନ୍ଦାବତୀ, ଆସ ତଡ଼ିତି,
ତୁମ୍ଭ ସଖୀ ଅନୁଚରୀ ଯେତେ ଯୁବତୀ । ୫ ।
ଆସ ଲଳିତା ଗୋ ଚନ୍ଦ୍ର କଳିତା,
ଦିବ୍ୟ ଅଷ୍ଟ ସହସ୍ର ଅଷ୍ଟ ଶତ ପଣିକା । ୬ ।
ବୀଣା କାରିଣୀ, ବେନି ତରୁଣୀ
ବହନ ଚଳାଇ ଆସ ଦ୍ୱାରଧାରିଣୀ । ୭ ।
ଉନ୍ମଦା ସଖି (ଗୋ) ଆସ ସୁମୁଖି,
ସହସ୍ରେକ ସଖୀ ତୁମ୍ଭ ସଙ୍ଗତେ ଲେଖି । ୮ ।
ଶ୍ରୁତିସ୍ୱରୂପୀ ବିବିଧରୂପୀ,
ବତିଶି ସହସ୍ର ତୁମ୍ଭ ମଣ୍ଡଳୀ ଗୋପୀ । ୯ ।

---

## ଷଷ୍ଠଦଶ ଛାନ୍ଦ

୧ । ଗୋପୀକାନ୍ତ—ଗୋପୀବଲ୍ଲଭ ।
୨ । କନ୍ତି—ପାଖକୁ । ଘେନ୍ତି—ଘେନ ।
୫ । ତଡ଼ିତି—ଶୀଘ୍ର ।
୮ । ସୁମୁଖୀ—ସୁନ୍ଦରମୁଖୀ ।

ଆସ ଗୋ ଚଳ, ମାଧବ ବାଳ,
ବତିଶିସହସ୍ର ଲକ୍ଷ ଭୁମ୍ଭ ମଣ୍ଡଳୀ । ୧୦ ।
ପ୍ରସନ୍ନା ବାଳ, ଆସ ସମ୍ଭାଳ,
ଛତିଶସହସ୍ର ଲକ୍ଷ ଭୁମ୍ଭ ମଣ୍ଡଳୀ । ୧୧ ।
ମୁନି ସିଦ୍ଧାଙ୍ଗି, ଆସ ଗୋ ବେଗି,
ଅଠାଶୀସହସ୍ର କନ୍ୟା ନବାନୁରାଗୀ । ୧୨ ।
ରାସ ଭିଆଣ, ଯୁମର ଆଣ,
ଯେ ଯାହା ବାଦ୍ୟ ଆୟୁଧ ପରିରମ୍ଭଣ । ୧୩ ।
ଯେବଣ ବେଗେ ଆସ ସଂଯୋଗେ,
ନୀପତରୁ ମୂଳେ ସଖି ଭେଟ ମୋ ଆଗେ । ୧୪ ।
ମୁରଲୀ ଧ୍ୱନି (ସେ) ଏସନ ପୁଣି,
ଉଛନ୍ନ ହୋଇଲେ ସବୁ ଗୋପତରୁଣୀ । ୧୫ ।
ନ ରହେ ମନ, ନାହିଁ ଗିଆନ,
ଯେବନଲେ ଆଗ୍ୟାଁ ପ୍ରମାଣେ ରାସବିଧାନ । ୧୬ ।
ମତିବିହ୍ୱଳେ (ସେ) ଧାଇଁଲେ ମେଳେ,
ଦେଖିଲେ ଦିବ୍ୟ ମୂରତି କଦମ୍ବମୂଳେ । ୧୭ ।
ରାଧାଙ୍କୁ ଦେଖି ହସିଲ ସଖୀ,
ବୋଇଲ ସଲଳେ ହଂସ ଭସିଲ ନିକ । ୧୮ ।
ଦୂତିକା ବାଣୀ ରାଧିକା ଶୁଣି,
ହସି ମୁଖ ବନ୍ଦ କଲେ ନବତରୁଣୀ । ୧୯ ।

---

୧୨ । ମୁନିସିଦ୍ଧାଙ୍ଗୀ—ସିଦ୍ଧମୁନିଙ୍କର ଅଙ୍ଗ ବନ୍ଧନ କାରିଣୀ ।

୧୩ । ରାସଭିଆଣ—ରାସକ୍ରୀଡ଼ାପର୍ବର । ଆୟୁଧ—ଦ୍ରବ୍ୟ, ସରଞ୍ଜାମ । ପରିରମ୍ଭଣ ପରିଶୋଭିତ ।

୧୪ । ସଂଯୋଗେ-ଏକ ସଙ୍ଗରେ । ନୀପତରୁ—କଦମ୍ବ ବୃକ୍ଷ ।

୧୬ । ଗିଆନ—ଜ୍ଞାନ । ରାସବିଧାନ—ରାସଦ୍ରବ୍ୟମାନ ।

୧୭ । ମତିବିହ୍ୱଳେ—ବିହ୍ୱଳିତ ମତିରେ ।

୧୯ । ବନ୍ଦକଲେ—ବୁଜାଇଲେ ।

ଏମନ୍ତେ କହ୍ନ, ଦୂତିକା ପାଇଁ,
ଶ୍ରୀ ଚରଣ ପଖାଳ ଉଦକ ପିବଇ । ୨୦ ।
ଦେଖି ଶ୍ରୀହରି ସାଉଁଟି ଧରି,
ଦକ୍ଷିଣ ହୃଦପୁଷ୍ପରେ ଉଡ଼ିଲେ ନାରୀ । ୨୧ ।
ବାମେ ରାଧିକା, ଯାମେ ଦୂତିକା,
ମଧ୍ୟେଣ ଶ୍ରୀକୃଷ୍ଣ ଶୋହେ ବେଢ଼ି ଗୋପିକା । ୨୨ ।
ହରି ଶବଦ କରି ଆନନ୍ଦ,
ଖଟିଲେ ଯେ ଯାହା ସେବା ଗୋପିକା ବୃନ୍ଦ । ୨୩ ।
ଦେଖି ଶ୍ରୀପତି, ଉତ୍କୁକମତି,
ଗୋଟିଏ ଗୋଟିଏ ଆଣି କୋଳ କରନ୍ତି । ୨୪ ।
ଲୋଭେ ଯୁବତୀ ମୁଖ ଚୁମ୍ବନ୍ତି,
ମଧୁଲୋଭେ ମାଛି ଯେସନେ ଜଡ଼ ପଡ଼ନ୍ତି । ୨୫ ।
ଆସି ନ ପାରି ରହିଲେ ପୂରି,
ମନ ଜାଣି ହରି ହୃଦ ବିସ୍ତାର କରି । ୨୬ ।

ଏକଇ ମୁଖ, ସଭିଙ୍କୁ ସୁଖ,
ବହୁତ କାଳର ଗଲା ବିରହ ଦୁଃଖ । ୨୭ ।

ସନ୍ତୋଷ ହୋଇ, ଶ୍ରୀମୁଖ ଚାହିଁ,
ବୋଲନ୍ତି ଅଇଲ ପ୍ରଭୁ ମଲା ଜିଆଇଁ । ୨୮ ।

ଶ୍ରୀଅଙ୍ଗ ଛୁଇଁ, ତୁମ୍ଭେ ମୋ ଆଖି,
ଆଖିଠାରେ ହେଲା ସଖି କାହାର ଦେଖି । ୨୯ ।

---

୨୦ । ପଖାଳ—ଧୋଇ । ଉଦକ—ଜଳ । ପିବଇ—ପିଅଇ ।
୨୧ । ସାଉଁଟିଧରି—ଟୋଳିଧରି ।
୨୨ । ଯାମେ—ଦକ୍ଷିଣରେ ।
୨୪ । ଉତ୍କୁକମତି—ଉତ୍ସୁକମତି ।
୨୫ । ମାଛି—ମହୁମାଛି । ଜଡ଼ପଡ଼ନ୍ତି—ଜଡିତ ହୁଅନ୍ତି ।
୨୮ । ମଲାଜିଆଇଁ—ମଲାଲୋକକୁ ବଞ୍ଚାଇବା ପାଇଁ ।
୨୯ । ଛୁଇଁ—ଛୁଇଁ ।

ଜାଣ ତ ତାହା, ଗୋ କହିବା କାହା,
ପଡ଼ିଗଲ ମଧୁବନେ ପ୍ରମାଦ ଯାହା । ୩୦ ।
ତହୁଁ ଫଳ ଇ, ସର୍ବ ଚଳାଇଁ,
ସମୁଦ୍ର ମଧ୍ୟରେ ଗଡ଼େ ବାନ୍ଧିଲୁ ନେଇ । ୩୧ ।
ଥାନ ନଚଳ, ବସୁର ଥଳ,
ବଶ୍ୟା ବେଶରେ ଗଲ ଏତେକ କାଳ । ୩୨ ।
ଆମ୍ଭର ଅସ୍ଥୈ, ତୁମ୍ଭର ଜସ୍ଥୈ,
ଏକଥା ବସୁର ସଖି କର ସଦସ୍ଥୈ । ୩୩ ।
ଏବେ ଗୋ ଯାଅ, ସୁବେଶ ହୁଅ,
ଯେ ଯାହା ମଣ୍ଡଳେ ପଞ୍ଚା ପଞ୍ଚାରେ ରହ । ୩୪ ।
ଆଗ୍ୟାଁ ପ୍ରମାଣେ, ନାୟିକାଗଣେ,
ଆବୋରୁ ପଦ୍ମଦଳ ଯେ ଯାହା କୋଣେ । ୩୫ ।
ଆବର ସଖି, ଯେତେକ ଦେଖି,
ଏକ ଅଧିଷ୍ଠାଶୀ ମୂଳେ ସହସ୍ର ଲେଖି । ୩୬ ।
ସେ ସଖୀମାନେ, ଗଲେ ବହନେ,
କୁସୁମ ତୋଳିବା ଅର୍ଥେ ପଶିଲେ ବନେ । ୩୭ ।
କଦମ୍ବମୂଳେ କର୍ଣ୍ଣିକା ଦଳେ,
ଗୋଟିଏ ସୂର୍ଯ୍ୟର ଜ୍ୟୋତି ଅତି ଉଜ୍ଜ୍ୱଳେ । ୩୮ ।
ତଥି ମଧ୍ୟରେ, ପଦ୍ମ କେଶରେ,
ବିଜୟ ପରମାନନ୍ଦ ଉଲଙ୍କ ପରେ । ୩୯ ।

---

୩୦ । ପ୍ରମାଦ—ବିପଦ ।

୩୧ । ସର୍ବଚଳାଇ—ସମସ୍ତଙ୍କୁ ନେଇ । ଗଡ଼େ—ଏକଗଡ଼, ଦୁର୍ଗ । ବାନ୍ଧିଲୁ—ଗଢ଼ିଲୁ, ଏଠାରେ ଦ୍ୱାରକାପୁରକୁ ଲକ୍ଷ୍ୟ କରାଯାଇଅଛି ।

୩୨ । ଥାନ—ସ୍ଥାନ । ନଚଳ—ନିଶ୍ଚଳ । ବଶ୍ୟାବେଶରେ—ସଂସାରିକ କର୍ମରେ

୩୩ । ଅସ୍ଥୈ—ସ୍ଥିରତା

୩୪ । ପଞ୍ଚାପଞ୍ଚାରେ—ଦଳ ଦଳ ହୋଇ ।

୩୫ । କୋଣେ—ସୂକ୍ଷ୍ମ ପ୍ରାନ୍ତରେ, ନିର୍ଦ୍ଦିଷ୍ଟ ସ୍ଥାନରେ, ନିଭୃତ ସ୍ଥାନରେ ।

୩୮ । କର୍ଣ୍ଣିକାଦଳେ—ପଦ୍ମ ମଧ୍ୟସ୍ଥ ବୀଜକୋଷରେ ।

ସୁଧାଙ୍କ ସଙ୍ଗେ, ଦୁତିକା ରଙ୍ଗେ,
କର୍ପୂର ଚନ୍ଦନ ଗୋଳି ବୋଳନ୍ତି ଅଙ୍ଗେ । ୪୦ ।

ରଞ୍ଚିଲେ ଚୂଳ, ଗୋ ମଣ୍ଡିଲେ ଫୁଲ;
ମୟୂର ଶିଖଣ୍ଡ ବାନ୍ଧେ ଚନ୍ଦ୍ରମଣ୍ଡଳ । ୪୧ ।

ଚନ୍ଦନ ଚିତା, ଘଟେ ରଞ୍ଚିତା,
ନବଘନ ଜଳଦେ କି ଏ ଚନ୍ଦ୍ର ଉଦିତା । ୪୨ ।

ଅଳକା ଶୋଭା, କିସ କହିବା,
ଭ୍ରୂଲତା ଅତନୁ-ଧନୁ-ଗଞ୍ଜନ-ଆଭା । ୪୩ ।

ନୟନ ବାଣ, ସେ ବନ୍ଧେ ପରାଣ,
ଖଞ୍ଜିଲେ ବାରିଧିଫଳ ନାନାପୂଟେଣ । ୪୪ ।

କୁଣ୍ଡଳମଣି, ଗଣ୍ଡେ ମଣ୍ଡଣି,
କଣ୍ଠରେ ଖଞ୍ଜିଲେ ସୂର୍ଯ୍ୟ ଉଜ୍ଜ୍ୱଳ ମଣି । ୪୫ ।

ବଳଣ ଭୁଜେ, (ସେ) ମର୍କତେ ରାଜେ,
ଅଙ୍ଗଦ କଙ୍କଣ ବେନି କରେ ବିରାଜେ । ୪୬ ।

କଟିରେ ଧଟୀ; ଗୀତ ପ୍ରକଟି,
କୁଞ୍ଜ କାଛୁ ପିନ୍ଧାଇଲେ ବଞ୍ଚିଲେ ଘଣ୍ଟି । ୪୭ ।

ରତ୍ନମେଖଳା, କିଙ୍କିଣୀମାଳା,
ସଜଳ ଜଳଦେ କି ଏ ତଡ଼ିତ ଖେଳା । ୪୮ ।

---

୪୧ । ରଞ୍ଚିଲେ—ରଚନା କଲେ, ବାନ୍ଧିଲେ । ମୟୂରଶିଖଣ୍ଡ—ମୟୂରଚନ୍ଦ୍ରିକା ।
୪୨ । ନବଘନଜଳଦେ—କୃଷ୍ଣମେଘରେ ।
୪୩ । ଅଳକା—ଚୂର୍ଣ୍ଣକୁନ୍ତଳ । ଭ୍ରୂଲତା—ଭୂରୁ । ଅତନୁଧନୁ—କନ୍ଦର୍ପର ଧନୁ । ଗଞ୍ଜନ—ନିନ୍ଦା । ଆଭା—ସୌନ୍ଦର୍ଯ୍ୟ ।
୪୪ । ବାରିଧିଫଳ—ମୁକ୍ତା ।
୪୬ । ବଳଣ-ବଳିତ, ବର୍ତ୍ତୁଳ । ରାଜେ—ଶୋଭାପାଏ ।
୪୭ । ଧଟୀ—କଟିବସନ । ପୀତ—ପୀତବସନ । ପ୍ରକଟି—ପ୍ରକାଶିତ ।
୪୮ । ତଡ଼ିତ—ବିଜୁଳି ।

ଅଙ୍ଘ୍ରି ଯୁଗଳେ ମଞ୍ଜୀର ଦୋଳେ,
ସେ ପାଦକମଳେ ଦେବ ମନଭ୍ରସଳେ । ୪୯ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଷଷ୍ଠଦଶ ଛାନ୍ଦେ,
ଗୋପିକାପଟଳ ମନ ଉଲ୍ଲାସ ବନ୍ଦେ,
ସପ୍ତଦଶ ଛାନ୍ଦ ବର୍ଣ୍ଣିନେ କେବଣ ଚରିତ
କହିବାକୁ ଆଜ୍ଞାହେଉ ଏଥିର ଯେ ଚରିତ ।

---

୪୯ । ଅଙ୍ଘ୍ରିଂଯୁଗଳେ—ପଦଦ୍ୱୟରେ । ମଞ୍ଜୀର—ନୂପୁର । ପାଦକମଳେ—ପାଦ ପଦ୍ମରେ । ମନଭ୍ରସଳେ—ମନଭ୍ରମର ।



# ସପ୍ତଦଶ ଛାନ୍ଦ

ରାଗ—ବଙ୍ଗଳା କଉଶିକ ।

ରାଧା ଅଙ୍ଗତେଜ ଉଜ୍ଜଳ ଜ୍ୟୋତି,
ଛବି ଛଟକ ଗତ ଭ୍ରାନ୍ତ ମୂର୍ତ୍ତି ।
ଦେଖି ମୋହ ଗଲେ ନୃପ କୁମାରୀ
ହେଲେ ହଜିଲା ଗ୍ୟାନ ସବୁଙ୍କରି ।
ଶ୍ୟାମା ହେ, ସେ କେତେହେଁକ ବେଳେ,
ଚେତନା ପାଇ ଉଠିଲେ ସକଳେ । ୧ ।

ଏକ ଉପରେ ଆରେକ ଆଉଜି,
ବସିଲେ ସବୁନ୍ତ ନୟନ ବୁଜି ।
ଚାହିଁ ଲୋଡ଼ିଲେ ନ ପାରନ୍ତ ଚାହିଁ,
ମୋହେ ଢଳଢଳ ବେଭଳ କାହ୍ନି ।
ଶ୍ୟାମା ହେ, ପୁଣି ପୁଣି ଚାହିଁ ଉଠି,
ସ୍ୱପ୍ନ ପ୍ରାୟେ ବଳ ବଳାଇ ଉଠି । ୨ ।

କ୍ଷଣେ କ୍ଷଣେ ଗ୍ୟାନ ହଜିଲା ଯେଣୁ,
ଚେତି ପ୍ରଭୁଙ୍କୁ ଚିନ୍ତା କଲେ ତେଣୁ ।
ବୋଇଲେ ପ୍ରଭୁ ରକ୍ଷାକର ତୁମ୍ଭେ,
ତୁମ୍ଭେ ନ ରଖିଲେ ମରିଲୁ ଆମ୍ଭେ ।
ପ୍ରଭୁ ହେ, ଦେଖି ଆସିଛ ଯାହା,
କୃପା କଲେ ସିନା ଦେଖିବୁଁ ତାହା । ୩ ।

---

୧ । ଛବି ଛଟକ—ରୂପ ଶୋଭା । ଭ୍ରାନ୍ତ—ଶୋଭା । କେତେହେଁକ ବେଳେ—କେତେବେଳକେ ।

୨ । ଆରେକ—ଅନ୍ୟ ଏକ । ଚାହିଁ ଲୋଡ଼ିଲେ—ଚାହିଁବାକୁ ଇଚ୍ଛା କଲେ । ବେଭଳ—ବିହ୍ୱଳ ।

ଶଶୀରେ ଆମ୍ଭର ଧଇର୍ଯ୍ୟ ରହୁ,
ମୋହ ଛାଡ଼ି ଦିବ୍ୟ ଚେତନା ହୋଉ ।
ଯେବେ ଏ ହୃଦୟ ଦୃଢ଼ ହୋଇବ,
ମନ ଅଚଳରେ ଲୋଚନ ରହିବ ।
ପ୍ରଭୁ ହେ, ତେବେ ଲଭିବୁ ସୁଖ,
ହରିବୁ କୋଟିଏ ଜନ୍ମର ଦୁଃଖ । ୪ ।
ପ୍ରିୟାଙ୍କ ମନ ଜାଣି ଭାବଗ୍ରାହୀ,
ଡାକ ଦେଲେ ଶୂନ୍ୟ ମଣ୍ଡଳେ ରହି ।
ଯେଉଁ ରୂପ ଦେଖି ହୋଇଲ ମୋହ,
ସେହି ରୂପରେ ମନ ବୁଦ୍ଧି ଦିଅ ।
ପ୍ରିୟେ ଗୋ, ସେହି କୃପା କରିବେ,
ତାଙ୍କ ତେଜ ତୁମ୍ଭ ହୃଦେ ଭରିବେ । ୫ ।
ଯେବେ ତୁମ୍ଭ ହୃଦ ଦୃଢ଼ ହୋଇବ,
ମନ ନିଚଳେ ଲୋଚନେ ରହିବ ।
ଦେଖିବ ତାଙ୍କ ସର୍ବ ଭାବଲୀଳା,
ଯଉଁଠାରେ ଯେତେ ହୋଇବ ଖେଳା ।
ପ୍ରିୟେ ଗୋ ! ମନ ନିର୍ମାୟା କର,
ନିର୍ଭୟେ ହୋଇ ତାଙ୍କୁ ଚିତ୍ତେ ଧର । ୬ ।
ଶୁଣି ଶୂନ୍ୟରୁ ବାଣୀ ଗଜଗାମା,
ଚିନ୍ତିଲେ ମନେ ରାଧା ରୂପସୀମା ।
ନିର୍ଭୟେ ହୋଇଣ ଝାସି ପଶିଲେ,
ରାଧା-ରୂପ-ତେଜେ ଯାଇଁ ମିଶିଲେ
ଗର୍ଗଂମୁନି ହେ, ମନେ ବିଶ୍ୱାସ ହୋଇ,
ସେହି ତେଜ ହୃଦେ ପୂରାଇ ରହି । ୭ ।

---

୪ । ଧଇର୍ଯ୍ୟ—ଧୈର୍ଯ୍ୟ । ହୋଉ—ହେଉ । ଅଚଳରେ—ନିଶ୍ଚଳରେ ।

୫ । ଭରିବେ—ପୂର୍ଣ୍ଣ କରିବେ । ୬ । ନିଚଳେ—ନିଶ୍ଚଳ ହୋଇ । ନିର୍ମାୟା—
ମାୟା ଶୂନ୍ୟ । ନିର୍ଭୟେ—ନିର୍ଭୟ ।

୭ । ଝାସି ପଶିଲେ —ଏକାଗ୍ର ଚିତ୍ତରେ, ଦୃଢ଼ତାର ସହିତ ପ୍ରବେଶ କଲେ ।

ରୁକ୍ମଣୀ ଆଦି ଅଷ୍ଟ ପାଟବଂଶୀ,
ଗରୁଡ଼ ପୃଷ୍ଠରେ ସମସ୍ତେ ବସି ।
ଗୁପତେ ଦେଖନ୍ତି ଉପରେ ଥାଇ,
ବୋଲନ୍ତି ରାଧିକା ଅଟନ୍ତି ଏହି ।
ସଦେହ ଗୋ, ଧନ୍ୟ ଧନ୍ୟ ମହିମା,
ଏମନ୍ତ ସେଛି ବୃଷଭାନୁ ଜେମା । ୮ ।
ଜମ୍ବୁନଦରୁ ଜମ୍ବୁନଦ ଆଣି,
ଶଚୀପତି ତହିଁ ଦେଲା ଢାଙ୍କୁଣି ।
ଗାଳ ପକାଇ ଢାଳିଲା ତୁରିତ,
କଟାକ୍ଷ ବାଣେ ବନ୍ଧି କଲା ହତ ।
ସହେ ଗୋ, ଏହି ଉହାଡ଼େ ଥାଇ,
ତାକୁ ଖାଆଇଲା ଅମୃତ ଦେଇ । ୯ ।
କୋଟି କୋଟି ଚନ୍ଦ୍ର କଳଙ୍କ କାଟି,
ସୁଧା ସିନ୍ଧୁରେ ବୁଡ଼ାଇବା ମାଡ଼ି ।
କୋଟିଏ କଲେ କାଢ଼ି ସବୁ ମେଦ,
କାମକୁନ୍ଦରେ କୁନ୍ଦିଥିବ ବିଧି ।
ସହେ ଗୋ, ଚନ୍ଦ୍ର ଏ ରୂପେ କୋଟି,
ରାଧିକା ମୁଖ ଚନ୍ଦ୍ରକୁ ନ ଘଟି । ୧୦ ।

ଧନ୍ୟ ଏ କୁଟିଳ-କୁନ୍ତଳ-ଶୋଭା
କାଞ୍ଚନ ମଣ୍ଡିକ ମର୍କତ-ପ୍ରଭା ।
ଧନ୍ୟ ଏ ଚଟୁଳ ପଟ ନିର୍ମଳା,
ଭୂଲତା ଭଙ୍ଗିମା ନୟନ ଖେଳା ।

---

୯ । ଜମ୍ବୁନଦରୁ—ସ୍ୱର୍ଣ୍ଣଦୀ, ସ୍ୱର୍ଣ୍ଣନଦୀ । ଜମ୍ବୁନଦ—ସୁନା । ଶଚୀପତି—ଇନ୍ଦ୍ର । ତୁରିତ—ଶୀଘ୍ର । କଟାକ୍ଷ ବାଣେ—କଟାକ୍ଷରୂପକ ବାଣରେ । ବନ୍ଧି—ବିଧାତା ।

୧୦ । ସୁଧା ସିନ୍ଧୁ—ଅମୃତ ସାଗର । ମେଦ—ଏକାଠି କରି । କାମକୁନ୍ଦ—କନ୍ଦର୍ପର ଶାଣ । ଘଟି—ତୁଳନୀୟ ।

ସହେ ଗୋ, ଧନ୍ୟ ଶୋଭା ଏ କର୍ଣ୍ଣ,
ବନ୍ଧୁକ ପୁଷ୍ପ ପାଏ ଗଣ୍ଡବର୍ଣ୍ଣ । ୧୧ ।
ଧନ୍ୟ ଏ ଚିବୁକ ଧନ୍ୟ ଏ ଓଷ୍ଠ,
ଅଧର କି ? ବିମ୍ବ ଅରୁଣନଷ୍ଟ ।
ଧନ୍ୟ ଏ ମୃଦୁହାସ ବଦନ ଶୋଭା;
ନାସିକା ଦଣ୍ଡ ଝଟ ଝଟ ଆଭା ।
ସହେ ଗୋ, ଧନ୍ୟ ସୁଗୃରୁ ବାଣୀ,
କନ୍ଦର୍ପ ଅଇଲ ବୀଣା ବାଜେଣୀ । ୧୨ ।
ଧନ୍ୟ ଏ ସୁନ୍ଦର ସାରଙ୍ଗ ଗଳା,
ଧନ୍ୟ ଏ କୁଚ କୁମ୍ଭ ଘଞ୍ଜଶିଳା ।
ଧନ୍ୟ ଏ ଭୁଜ ପାଣି କୋକନଦ,
ଧନ୍ୟ ଏ ସୁନ୍ଦର ପଙ୍କଜ ପାଦ ।
ସହେ ଗୋ, ଧନ୍ୟ ଏ ନଖ ଚନ୍ଦ୍ରିକା,
ଚନ୍ଦ୍ର ପରିଯନ୍ତେ ଉଡ଼ୁଛି ଶିଖା । ୧୩ ।
ଜିଣିଛି ରମ୍ଭା କି ଜଘନ ଯୁଗ,
ନିତମ୍ବ ତଟ ସିଂହାସନନଙ୍ଗ ।
ଧନ୍ୟ ଏ ତ୍ରିବଳି ଲଳିତ ମଧ୍ୟା,
କାମ ଡମ୍ବରୁ କି ହୋଇଛି ଅଧା ।
ସହେ ଗୋ, ଧନ୍ୟ ରଙ୍ଗ ପତନୀ
କୁଞ୍ଚି ପିନ୍ଧିଅଛି ରଙ୍ଗେ ସଜନୀ । ୧୪ ।

---

୧୧ । କୁଟିଳ କୁନ୍ତଳ—କୁଞ୍ଚିତ କେଶ । କାଞ୍ଚନ ମୂର୍ତ୍ତି—ସୁନାର ପ୍ରତିମା । ମର୍କତ ପ୍ରଭା—ମରକତ ମଣି, ଅର୍ଥାତ୍ କୃଷ୍ଣ ବର୍ଣ୍ଣର ଦ୍ୟୁତି । ଚଟୁଳ—ସୁନ୍ଦର । ଛଟ—ଛବି । ବନ୍ଧୁକ—ବନ୍ଧୁଲି ।

୧୨ । ବିମ୍ବ—ବିମ୍ବଫଳ । ଅରୁଣ—ବାଳସୂର୍ଯ୍ୟ । ମୃଦୁହାସ—ଦରହାସ । ବୀଣା ବାଜେଣୀ—ବୀଣା ବଜାଇ ।

୧୩ । ସାରଙ୍ଗଗଳା—କମ୍ବୁକଣ୍ଠ । ଘଞ୍ଜଶିଳା—କଠିନ । କୋକନଦ—ରକ୍ତପଦ୍ମ । ପଙ୍କଜପାଦ—ପଦ୍ମପାଦ । ପରିଯନ୍ତେ—ପର୍ଯ୍ୟନ୍ତ । ଶିଖା—ଜ୍ୟୋତି ।

୧୪ । ରମ୍ଭା—କଦଳୀଗଛ । ନଙ୍ଗ—ଅନଙ୍ଗ । ଲଳିତମଧ୍ୟା—ସୁନ୍ଦର କ୍ଷୀଣକଟି । ରଙ୍ଗପତନୀ—ରଙ୍ଗ ପାଟଲୁଗା ।

ଘଣ୍ଟି ଘାଗୁଡ଼ି ରତ୍ନ ଓଡ଼ିଆଣୀ,
କେତେଠାରେ କେତେ ରତ୍ନ ଖଞ୍ଜିଣି ।
ବଦ ମୁଦ୍ରିକା ବଳୟ ବାହୁଟି,
ହାର ତାଟଙ୍କନାକଚଣା କଣ୍ଠି ।
ସହେ ଗୋ, ଏତ କାମକାଛେଣୀ,
କାଛୁ ସଜ କଲ କଉଁ ରମଣୀ । ୧୫ ।
ଆରପାଖ ଅଛୁ ସେ ପଦ୍ମ ଦୃଷ୍ଟି
ଏହି ତ ସଖୀ ଶୋଭ ସେଇମନ୍ତ ।
ରାଧା ବନ୍ଧଲେ ସୁଜାଣ ପଣକୁ,
ତେଣୁ ସେ ଦୃଷ୍ଟି ବୋଲନ୍ତି ଏହାଙ୍କୁ ।
ସହେ ଗୋ, ଦୁଇ ପାଶରେ ଦୁଇ,
ଏକୁ ଆରେକ କୃଷ୍ଣ ମନ ମୋହି । ୧୬ ।
ଧନ୍ୟ ଏ ସୁନ୍ଦର ଦୁଇ ମୂରତି,
ଏବେ ସେ ଏହାଙ୍କ ମନଧିରତି ।
ଧନ୍ୟ ଏ ଆମ୍ଭର ଜୀବନ ସଖୀ
ପ୍ରଭୁଙ୍କ ପ୍ରସାଦେ ଏ ସୁଖ ଦେଖି ।
ସହେ ଗୋ, ଧନ୍ୟ ଗୋପିକାବୃନ୍ଦ,
କେସନେ ମୂ ରୁଛୁଥିଲେ ଗୋବନ୍ଦ । ୧୭ ।
ଧନ୍ୟ ଏ କଦମ୍ବ କଳପ ତରୁ,
କଳ୍ପ କଳ୍ପାନ୍ତରେ ଅଟଳ ମେରୁ ।
ଗରୁଡ଼ ଖର ଏହି ଅଛୁ ସହି,
ଯେଉଁ ଗରୁଡ଼ ଗରୁ କୋଟି ମହୀ ।
ସହେ ଗୋ, ଧନ୍ୟ କାଳନ୍ଦୀ ନଦୀ
କରିଲେ କାମନା ହୋଇବ ସିଦ୍ଧି । ୧୮ ।

---

୧୫ । ଓଡ଼ିଆଣୀ—କଟିମେଖଳା । ଖଞ୍ଜିଣି—ଖଚିତ । ବଦ—ବାହୁ ଅଳଙ୍କାର ।
କାଛେଣୀ—କଷଟି ପଥର । କାଛୁ—କଷି ।

୧୭ । ଧିରତି—ଧୃତି, ଧୈର୍ଯ୍ୟ । ମୁରୁଛୁଥିଲେ—ଗ୍ରୁଡ଼ିଥିଲେ ।

୧୮ । ଗରୁ—ଖର ।

ଧନ୍ୟ ଏ କଳ୍ପ ଦ୍ରୁମ ସର୍ବ ଶୋଭା,
ଯଥା ଅଙ୍ଗ ତେଜ ସୁବର୍ଣ୍ଣ ଆଭା ।
ସର୍ବ ବୃକ୍ଷମୂଳେ କାଞ୍ଚନ ବେଦ,
ଅଷ୍ଟରତ୍ନ ମାନ ଅଛନ୍ତି ଭେଦ,
ସହେ ଗୋ, ଧନ୍ୟ ଏ ଫୁଲ ଫଳ
କ୍ରୀଡ଼ନ୍ତି ଶୁକ ପିକ ଭୃଙ୍ଗ କୁଳ । ୧୯ ।

କାଳନ୍ଦୀ ଜଳ ଶୀତଳ ସୁଗନ୍ଧ,
ଭେଦି ପବନ ବହେ ମନ୍ଦ ମନ୍ଦ ।
ତରୁଣ ତମାଳ ଦଳ ତରଳେ,
କସ୍ତୁରୀ ଗନ୍ଧ କି ମର୍ଦ୍ଦିତ ଦଳେ ।
ସହେ ଗୋ, ସର୍ବ ପୁଷ୍ପଙ୍କ ବାସ,
ବନ ଉଚ୍ଛୁଳ ବହେ ଦଶ ଦଶ । ୨୦ ।

ପୁଷ୍ପ-ତରୁବର-ପରାଗ ଖସେ,
କଏ ଗୁଚେର ଅବିର ବରଷେ ।
ଘଞ୍ଚ ବଗ୍ରେଳ ସଞ୍ଚ ବୃକ୍ଷ ସାଜେ,
ଲତାଲିଙ୍ଗିତ କାନ୍ତ କାନ୍ତା ବଜେ ।
ସହେ ଗୋ, ଧନ୍ୟ ଧନ୍ୟ ଏ ବନ,
ତପୁ ଶୃଙ୍ଗାର ଯାଏ ଅଛି ସ୍ଥାନ । ୨୧ ।

---

୧୯ । କାଞ୍ଚନ ବେଦ—ସୁବର୍ଣ୍ଣ ବେଦୀ । ଭେଦ—ଖଚିତ, ମିଶ୍ରିତ ।

୨୦ । ବାସ—ସୁଗନ୍ଧ । ଦଶଦଶ—ଦଶଦିଗ ।

୨୧ । ପରାଗ—ପୁଷ୍ପ ରେଣୁ । ଗୁଚେର୍ର—ପିଚକାରୀ । ଘଞ୍ଚ—ଗହଳ । ବଗ୍ରେଳ—ଗୁଡ଼ ଗୁଡ଼ । ସଞ୍ଚ—ସୁନ୍ଦର । ଲତା··· ବଜେ—ବୃକ୍ଷ ଦେହରେ ମାଡ଼ିଥିବା ଲତାକୁ ଲକ୍ଷ୍ୟ କରି କାନ୍ତ କାନ୍ତାଙ୍କର ଆଲିଙ୍ଗନ ପାଶବନ୍ଧ ରୂପ କଳ୍ପିତ । ତପୁଁ—ତପସ୍ୱୀଙ୍କଠାରୁ । ଶୃଙ୍ଗାର—ପ୍ରେମିକ । ତପୁଁ ··· ··· ସ୍ଥାନ—ଏହି ବନରେ ତପସ୍ୱୀଙ୍କଠାରୁ ଆରମ୍ଭ କରି ପ୍ରେମିକଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ସ୍ଥାନ ଅଛି ବା ଏହି ବନରେ ତପସ୍ୟାଚରଣ ଓ ଶୃଙ୍ଗାର ଲୀଳା କରିବା ସ୍ଥାନ ଅଛି ।

କେତେଠାରେ କେତେ ଦେବତା ସ୍ଥାନ,
ଯୋଗୀ ତପସ୍ୱୀ ମୁନି ଧରେ ଧ୍ୟାନ !
ମେଡ଼ ମଣ୍ଡପ ଦେଉଳ ଅଟାଳି,
ମର୍କତ ମାରଗ କାଞ୍ଚନେ ଝଳି ।
ସହେ ଗୋ, ସୁର ଗନ୍ଧର୍ବେ ଆସି,
ଗନ୍ଧର୍ବ ସଙ୍ଗେ ନୃତ୍ୟ ଗୀତ ଘୋଷି । ୨୨ ।

ଯହିଁ ବିହାର କରେ ଗୋପୀ କାହ୍ନୁ,
କସ ପଟାନ୍ତର ଦେବା ସେ ସ୍ଥାନ ।
ଶୁଣୁଥିଲୁ ଯାହା ଦେଖିଲୁ ତାହା,
ତେବେ ବଡ଼ପଣ କହିବୁଁ କାହା,
ସହେ ଗୋ, ଏତେ ବସ୍ତୁର ଆଗ
ଦାସୀ ପଣକୁ ନକ ନୋହି ଯୋଗ୍ୟ । ୨୩ ।

ଏବେ ଗୋ ସଖି ଏମନ୍ତ ବସ୍ତୁର,
ନ ଯିବା ଆମ୍ଭେ ଦ୍ୱାରକଣ ପୁଷ୍ଟ ।
କେମନ୍ତେ ଆମ୍ଭଙ୍କୁ ରାଧା ଜାଣିମେ,
ତାଙ୍କ ପରିଜନ ସଙ୍ଗେ ଗଣିମେ ।
ସହେ ଗୋ, ତେବେ ଲଭିବା ଭବ,
କୃପା କରିଲେ ପ୍ରଭୁ ପଦ୍ମନାଭ । ୨୪ ।

ଦେଖ ଦେଖ ସେହି ଶ୍ରୀ କୃଷ୍ଣ ରୂପ,
ଏ ରୂପ କାହିଁ କରିଥିଲେ ଗୋପ୍ୟ ।
ଏବେ ଧରିଲେ ନିଜ ରୂପ ସାର,
ରାଧା ରୂପକୁ ଏ ସମ ସୁନ୍ଦର ।

---

୨୨ । ଦେବତା ସ୍ଥାନ—ଦେବ ମନ୍ଦିର ବା ଦେବତାଙ୍କ ବନେ ସ୍ଥଳୀ । ଅଟାଳୀ—ଅଟ୍ଟାଳିକା । ମର୍କତ—ମର୍କତ ମଣି । ମାରଗ—ମାର୍ଗ, ପଥ । ଝଳି—ନିର୍ମଳ, ଦ୍ୟୁତି ପୂର୍ଣ୍ଣ ।

୨୩ । କାହ୍ନୁ—କାହ୍ନୁ, ଶ୍ରୀକୃଷ୍ଣ । ପଟାନ୍ତର—ଉପମା, ତୁଳନା ।

୨୪ । ପରିଜନ—ସେବକ ।

ସହେ ଗୋ, ଦେବ ନର୍ତ୍ତିସୁ ଭଣି,
ଭନ୍ନ ନୋହ ତୁମ୍ଭେ ରାଧା ରୁକ୍ମଣୀ । ୨୫ ।

ଇତି ଶ୍ରୀ ରହସ୍ୟ-ମଞ୍ଜରୀ ସପ୍ତଦଶ ଛାନ୍ଦେ,
ରାଧିକା ଦର୍ଶନରୂପ ରୁଚିର ବନ୍ଧେ,
ଅଷ୍ଟାଦଶ ଛାନ୍ଦ ବର୍ଣ୍ଣନେ କେବଣ ଆନନ୍ଦ,
କହିବାକୁ ଆଜ୍ଞା ହେଉ ଶ୍ରୀ ପରମା ନନ୍ଦ ।

---

୨୫ । ଗୋପ୍ୟ—ଗୋପନ । ସମସୁନ୍ଦର—ସମତୁଲ ଭାବରେ ସୁନ୍ଦର ।

—*—

# ଅଷ୍ଟାଦଶ ଛାନ୍ଦ

ରାଗ—ବସନ୍ତ ରାଗେଣ ଗୀୟତେ ।

(ସଖି ଗୋ) ଦ୍ୱାରକା ଯୁବତୀ          ମୋହି ହୋଇଛନ୍ତି
ରାଧାରୂପ-ଶୋଭା ଚାହିଁ,
ଏମନ୍ତେ ଦୃଷ୍ଟି ଫୁଲ ବନେ ପଡ଼ିଲା
ଗୋପୀ ଫୁଲ ତୋଳାଠାଇଁ ଗୋ ।
ଦେଖ ଦେଖ ସଖି          ଏହୁ ବୃନ୍ଦାବନେ
ବିହରନ୍ତି ଗୋପବାଳୀ,
ବିବିଧ ବର୍ଣ୍ଣେ          ପୁଷ୍ପମାନ ତୋଳନ୍ତି
ନାନାରଙ୍ଗେ କୁତୁହଳୀ ଗୋ । ୧ ।
(ସଖି ଗୋ) ସହଜେ ଗତି-          ନୃତ୍ୟରଙ୍ଗେ ଚାଲନ୍ତି
ବିଚିତ୍ର ଭଙ୍ଗିମା ହୋଇ,
କଥା କହନ୍ତି          ଗୀତ ସ୍ୱରେ ଆଳପି
ସ୍ୱଚ୍ଛନ୍ଦେ ହସକୁ ଦେଇ ଗୋ ।
ହସନ୍ତି ଭାଷନ୍ତି          ରସନ୍ତି ମିଶନ୍ତି
ତୋଷନ୍ତି ଏକୁ ଆରକେ,
କୃଷ୍ଣକୁ ଭାବନ୍ତି          ବସନ୍ତେ ଗାବନ୍ତି
ମଦନ-ମନ-ଉଳ୍ଲୁକେ ଗୋ । ୨ ।
(ସଖି ଗୋ) କେହୁ ବୃକ୍ଷେ ଉଠି          କୁସୁମ ତୋଳନ୍ତି
ମୁଖ ପଦ୍ମ ଗନ୍ଧ ପାଇ,
ପୁଷ୍ପ ତେଜି ଭୃଙ୍ଗ          ବଦନ ଚୁମ୍ବନ୍ତେ
ବୃକ୍ଷରୁ ପଡ଼ିଲା ଡେଇଁ ଗୋ ।

---

## ଅଷ୍ଟାଦଶ ଛାନ୍ଦ

୧ । ଫୁଲ ତୋଳା ଠାଇଁ—ଫୁଲ ତୋଳା ସ୍ଥାନରେ । ବିହରନ୍ତି—ବିହାର କରନ୍ତି । ନାନାରଙ୍ଗେ କୁତୁହଳୀ—ନାନାରଙ୍ଗରେ କୌତୁକ ରତ ।

୨ । ଆଳପି—ଆଳାପ କରି । ରସନ୍ତି—ରସମଜ୍ଜିତ ହୁଅନ୍ତି । ମଦନ୍-ମନ ଉଲ୍ଲୁକେ—କନ୍ଦର୍ପର ମନକୁ ଆଗ୍ରାହାନ୍ୱିତ କରିବା ପାଇଁ ।

ପଳାନ୍ତେ ଗୋଡ଼ାନ୍ତି          ଚୁମ୍ବନ୍ତେ ଛଡ଼ାନ୍ତି
ଛଡ଼ାନ୍ତେ ପଶନ୍ତି ବାସେ,
କେଶ ବସନ ଦୂରେ          ଫେଡ଼ ଖାଉନ୍ତେ
ଦୂରେ ସଖୀଜନ ହସେ ଗୋ । ୩ ।
(ସଖି ଗୋ) କୋଟି କୋଟି ଚନ୍ଦ୍ର          ଉଦେ କି ହୋଇଛୁ
ଉଜ୍ଜ୍ୱଳ ଏ ବୃନ୍ଦାବନ,
ମୁଖ ଚନ୍ଦ୍ର ଜ୍ୟୋତି          ରସାଣିଲ୍ଲି କ୍ଷିତି
ସ୍ଫଟିକ ପୀତ ଯେସନ ଗୋ
ଗୋଟି ଗୋଟି ହୋଇ          ବାରି ଦିଶୁଛନ୍ତି
ଯାହାର ଯେମନ୍ତ ବର୍ଣ୍ଣ ।
ଫୁଲ ଫଳ ତରୁ          ଲତା ଖଗ ମୃଗ
ସର୍ବଦ୍ରବ୍ୟ ରୂପ ଚିହ୍ନ ଗୋ । ୪ ।
(ସଖି ଗୋ) ଗୋପୀ ଅଭିରଙ୍ଗୀ          କେତେ ଜାଣେ ଭଙ୍ଗି
ଛବି ଛଟକକୁ ଦେଖ,
ଗୃହିଁବା ଗ୍ଭତୁରୀ          କନ୍ଦର୍ପ କଭୁରୀ
ପୁରୁଷ ହୃଦକୁ ଯୋଖ ଗୋ ।
ଦେଖ ଦେଖ ସଖି          ଗ୍ଭହାଣୀ ତେରଛ
ବାଣେ ପାଷାଣ ତରଳିବ,
କାଷ୍ଠ ପ୍ରତିମା          ଭେଦି କାନ୍ଦ ଉଠିବ
ମଦନ ସରେ ମଜ୍ଜିବ ଗୋ । ୫ ।

---

୩ । ମୁଖ ପଦ୍ମ ଗନ୍ଧ—ଗୋପୀମାନେ ପଦ୍ମିନୀ ଜାତୀୟା ନାୟିକା ହୋଇଥିବାରୁ ସେମାନଙ୍କ ମୁଖରୁ ପଦ୍ମଗନ୍ଧ ନିର୍ଗତ ହୁଏ । ଭୃଙ୍ଗ—ଭ୍ରମର । ପଳାନ୍ତେ ଗୋଡ଼ାନ୍ତି । ଛଡ଼ାନ୍ତି—ଛଡ଼ାଇ ଦିଅନ୍ତି, ନିବାରଣ କରନ୍ତି । ବାସେ—ଲୁଗାରେ ।

୪ । ରସାଣିଲ୍ଲି—ଉଜ୍ଜ୍ୱଳତା ପ୍ରକାଶ କଲି । କ୍ଷିତି—ପୃଥିବୀ । ସ୍ଫଟିକ—କାଚ । ପୀତ—ହଳଦିଆ । ବାରି—ଭିନ୍ନ । ଖଗ—ପକ୍ଷୀ ।

୫ । ଅଭିରଙ୍ଗ—ରଙ୍ଗ ନିପୁଣା । ଛବିଛଟକ—ରୁଚି ଛଟକ, ହାବଭାବ, ରୂପ ବିଳାସ । ଯୋଖ—ଯୋଖି । ତେରଛ—ତୀର୍ଯ୍ୟକ, ବଙ୍କ । ମଦନ ସରେ—କନ୍ଦର୍ପର ପୁଷ୍କରଣୀରେ ।

(ସଖି ଗୋ) ବାବୁ ! ଏ ସଖୀ ଶ୍ରୀକୃଷ୍ଣ ବନୁ ଦୁଃଖୀ
ରୂପେ ପଟାନ୍ତର ନାହିଁ,
ଏହାଙ୍କ ରୂପ ଗୁଣ କହି ଲୋଡ଼ିଲେ
ଧଇର୍ଯ୍ୟ ରହିବ କାହିଁ ଗୋ ।
ପୁରୁଷ ହୋଇ କେ ହୃଦୟ ଧରିବ
ନାୟିକ ନାୟି ନମୂର୍ଚ୍ଛି,
କୋଟିଏ ବ୍ରହ୍ମାଣ୍ଡେ ଗୋଟିଏ ଏରୂପେ
ଖୋଜିଗଲେ କାହିଁ ଅଛି ଗୋ । ୬ ।

(ସଖି ଗୋ) ବିଚିହ ଗତ ଆଡ଼- ଚିତ ମାରିଣ
ବୃକ୍ଷରେ ବସନ୍ତ ଡେଇଁ
ବିବିଧ ପୁଷ୍ପ ନାନା ରଙ୍ଗେ ଦୋଳନ୍ତ
ଗୋବିନ୍ଦର ଗୀତ ଗାଇ ଗୋ ।
ରଙ୍ଗଣୀ ଚୂତ- ଅଙ୍କୁର, ଅରବିନ୍ଦ
ନିଗନ୍ଧ କୁନ୍ଦ ପୁନ୍ନାଗ
ଜାତି, ଯୂଥୀ, ମଲ୍ଲୀ ମାଳତି, ସେବତି
ଧାତୁକୀ, ମୃଦୁ, ଲବଙ୍ଗ ଗୋ । ୭ ।

(ସଖି ଗୋ) ଟଗର, ତଗ୍‌ଯଟ ପାଟଳୀ, ପଳାଶ,
କଦମ୍ବ, ରଙ୍ଗ ବଧୁଲି
ଚମ୍ପା, ନାଗେଶ୍ୱର, ମଦନା, ମାଧବୀ
ସୁଖଭଦ୍ରା ଲଜ୍ଜାକୁଳୀ ଗୋ ।

---

୬ । କହି ଲୋଡ଼ିଲେ—କହିବାକୁ ଇଚ୍ଛାକଲେ ।

୭ । ଚୂତ ଅଙ୍କୁର—ଆମ୍ବ ବଉଳ । ଅରବିନ୍ଦ—ପଦ୍ମ । ନିଗନ୍ଧ—ସୁଗନ୍ଧ ଫୁଲ । ଜାତି—ଜାଈ । ଯୂଥୀ—ଯୂଈ । ଧାତୁକୀ—ଧାତକୀ, ଧାଇଫୁଲ । ମୃଦୁ—ଘୃତକୁମାରୀ । ଲବଙ୍ଗ—ଦେବପୁଷ୍ପ, ମଧୁମାଳତି ।

୮ । ମଦନା—ମାଧବୀଜାତୀୟ ଫୁଲ । ସୁଖଭଦ୍ରା—ଭଦ୍ରମୁଖା । ଲଜ୍ଜାକୁଳୀ—ଲଜକୁଳୀ ।

ବାରେହା ଦାଢ଼ କରୁଣା କୋକନଦ
କୁରୁବକ ମୁଚକନ୍ଦ,
ମୃଦୁ ଶିରୀଷ କଞ୍ଚନ କୁରୁ ବେଳୀ
ରଙ୍ଗ ଦୁଲ୍ଲଳ କୁମୁଦ ଗୋ । ୮ ।

(ସଖି ଗୋ) ଗଙ୍ଗ ଶିଉଳି ସୁରଙ୍ଗ ଅରବିନ୍ଦ
ସୁନାରୀ, ପାରିଜାତକ,
ନୀଳ-ଉତ୍ପଳ, ମନ୍ଦାର କର୍ଣ୍ଣିକାର
ସୁଗନ୍ଧ ମଲ୍ଲି ଅଶୋକ ଗୋ ।
ଶତବର୍ଗ ଛୁରିଅନା ରଙ୍ଗମଲ୍ଲି,
ମୃଦୁଳା ଏ ଚନ୍ଦ୍ରବମ୍ପା,
ଅପରାଜିତା ବଉଳ- ବୃନ୍ଦ ତାଗ-
ଝଲକ ଏ ମଧୁସ୍ରବା ଗୋ । ୯ ।

(ସଖି ଗୋ) ଦୟଣା, ତୁଳସୀ ମାଧବୀ ମରୁଆ
କୁଟିଳା କାମଦାୟିନୀ
ଏ ରୂପେ ନାନା ପୁଷ୍ପ ତୋଳି ଆସନ୍ତି
ଆନନ୍ଦେ ଗୋପ କାମିନୀ ଗୋ ।
ଶ୍ରୀକୃଷ୍ଣ ପାଇଁ ସୁଗନ୍ଧ ପୁଷ୍ପ ବାଛି
ବସି ଗୁନ୍ଥିଲେ ସୁନ୍ଦରୀ,

---

ବାରେହା ଦାଢ଼—ବରାହ ଦନ୍ତ ଭଳି ଫୁଲ । କରୁଣା—ବାସନ୍ତୀ ଫୁଲ । କୋକନଦ—ରକ୍ତପଦ୍ମ, ରକ୍ତ କଇଁ । କୁରୁବକ—ଦାସକେରେଣ୍ଟା । ମୃଦୁ—କୋମଳ । ରଙ୍ଗ ଦୁଲ୍ଲଳ କୁମୁଦ—ଲାଲ ଓ ମନୋହର ରକ୍ତ ପଦ୍ମ ।

୯ । ସୁରଙ୍ଗ—ଲାଲ । ନୀଳ ଉତ୍ପଳ—ନୀଳ କଇଁ । କର୍ଣ୍ଣିକାର—କନିଅର । ଶତବର୍ଗ—ଗେଣ୍ଡୁ ଫୁଲ । ମୃଦୁଳା—କୋମଳା । ଚନ୍ଦ୍ର ବମ୍ପା—ଚନ୍ଦ୍ର କିରଣ ପରି ଶୁଭ୍ର ଫୁଲ । ତାଗ ଝଲକ ତାରାଭଳି ଶୋଭା ପାଉଥିବା ଫୁଲ । ମଧୁସ୍ରବା—ବହୁତ ମଧୁଥିବା ଫୁଲ ।

ଶ୍ୱେତ ରକ୍ତ ନୀଳ　　　　ପୀତ ଶ୍ୟାମ ଶ୍ୟାମ
ବୈଜୟନ୍ତୀ ମାଳା କରି ଗୋ । ୧୦ ।
(ସଖି ଗୋ) ଅତି ଯତ୍ନ କରି　　　　ଥୋକାଏ ଗୁନ୍ଥିଲେ
ରାଧିକା ଦୂତିକା ପାଇଁ,
ଅଷ୍ଟଷ୍ଟାକ୍ଷୀ ଗୋପୀ-　　　　ମାନଙ୍କୁ ଥୋକାଏ
ଗୁନ୍ଥି ସଜାଡ଼ିଲେ ସବୁ ଗୋ
ଆପଣା ଅର୍ଥେଣ　　　　ଥୋକାଏ ଗୁନ୍ଥିଣ
ସୁବେଶ ହୋଇଲେ ବେଗେ,
ଗନ୍ଧ ଚନ୍ଦନ　　　　କର୍ପୂର ମୃଗମଦ
ସାମଳିଲେ ସର୍ବ ଅଙ୍ଗେ ଗୋ । ୧୧ ।
(ସଖି ଗୋ) ଗନ୍ଧପୁଷ୍ପ ଘେନ　　　　କବରୀ ରଞ୍ଜିଲେ
ବେଢ଼ି କେତକୀ ପାଖୁଡ଼ା,
ନିର୍ମଳ କପୋଳେ　　　　ରଞ୍ଜିଲେ ଅଳକା
ବଳି ମଞ୍ଜି କଣ୍ଡୀ ଝୁଡ଼ା ଗୋ,
ବଦନ ଚନ୍ଦ୍ର ଉପରେ　　　　ଶୋଭା କଲା
କେଡ଼ି ଘନ ତଳେ ଛାୟା,
କୈରବ ଶ୍ରେଣୀ　　　　ବେଣୀମାନେ ମଣ୍ଡିଲେ
ମଦନ-ମନ-ବିକାର ଗୋ । ୧୨ ।
(ସଖି ଗୋ) ନବ ବକୁଳ　　　　ଅବତଂସ ଅଶୋକ
କେ ଖଞ୍ଜେ ପଦ୍ମ ଚମ୍ପକ,
କୁରୁଅନା-କଣ୍ଡୀ　　　　ନାଶାରେ ଖଞ୍ଜିଲେ
କର୍ଣ୍ଣେ କର୍ଣ୍ଣିକାର କାପ ଗୋ,

---

୧୦ । କୁଟିଳା—ଟଗର ଜାତୀୟ ଫୁଲ । ବୈଜୟନ୍ତୀମାଳା—ପଞ୍ଚବର୍ଣ୍ଣ ଫୁଲରେ ଗୁନ୍ଥା ହୋଇଥିବା ଆଜାନୁଲମ୍ବିତ ମାଳା ।

୧୧ । ଅର୍ଥେଣ—ଅର୍ଥରେ, ନିମିତ୍ତ । ସାମଳିଲେ—ଲେପିଲେ ।

୧୨ । ଅଳକାକଳି—ଚୂର୍ଣ୍ଣକୁନ୍ତଳ । ଘନତଳେ—ମେଘତଳେ । କୈରବ—କଇଁଫୁଲ । ମଦନମନ ବିକାର—କନ୍ଦର୍ପର ମନକୁ ବିକାରଗ୍ରସ୍ତ କରିବା ଭଳି ।

କଣ୍ଣେ ଖଞ୍ଜିଲେ    ହାର ମଲ୍ଲି ମାଧବୀ
ନବୀନ-କଳିକା ଗୁନ୍ଥି,
ନାଗେଶ୍ୱର ପୁଷ୍ପେ    ମେଖଳା ସାଜିଲେ
ଯେମନ୍ତେ ମୋହିବେ ପତି ଗୋ । ୧୩ ।

(ସଖି ଗୋ) ନାନା କୁସୁମେ    ତାଡ଼ ଚୁଡ଼ୀ ସାଜିଲେ
ଭୁଜ ଲତାକୁ ବନାଇ,
ବସନ୍ତ ପୁଷ୍ପଦ୍ରୁମ    ହାସ୍ୟେ ହସିଲେ
ସମସ୍ତେ ହଅ ଅନାଇ ଗୋ,
ମଦନଶର-    ଭଲ୍ଲମାନ କଏ
ସମରେ ଅଛନ୍ତି ସାଜି ?
ପୁଷ୍ପଲତାରେ କି    କୋକିଳ ଭାଷୁଛି
ବାଣୀ ଶୁଣି ମନ ମଜ୍ଜି ଗୋ । ୧୪ ।

(ସଖି ଗୋ) ଧନ୍ୟ ଏ ଗୋପୀ    ବସନ୍ତ ବହୁରୂପୀ
ଆମ୍ଭ ଜୀବନ ହିଁ ଧନ୍ୟ,
କେତେ କାଳ ବସି    କେତେ ତପକଲୁଁ
ଦେଖିଲୁଁ ଚର୍ମନୟନ ଗୋ ।
ପାଷାଣ ପ୍ରତିମା    ଦେଖିଲେ କାନ୍ଦିବ
ଏହାଙ୍କ ବସନ୍ତ ଭ୍ରାନ୍ତି,
ଏ ଭାବ ଗୁଣିକି    ପ୍ରଭୁ ନ କାନ୍ଦିବେ
ଏକେ ସେ ଭାବମୂରତି ଗୋ । ୧୫ ।

---

୧୩ । ନବସ୍ତବକ—ସଦ୍ୟ ପ୍ରସ୍ଫୁଟିତ । ଅବତଂସ—ମୁକୁଟ । କାପ—କାନର ଅଳଙ୍କାର । କଳିକା—କଢ଼ି । ମେଖଳା—କଟିଭୂଷଣ ।

୧୪ । ଭଲ୍ଲ—ଶରମୁଣା ।

୧୫ । ବସନ୍ତଭ୍ରାନ୍ତି—ବସନ୍ତ ଶୋଭା । ଗୁଣି—ସ୍ମରଣ କରି, ମନେପକାଇ ।

(ସଖି ଗୋ) ଦିବ୍ୟ ସୁବେଶ ହୋଇ ସର୍ବ ଗୋପିମା
ପ୍ରବେଶ ହୋଇଲେ ଯାଇ,
ଯେ ଯାହା ନାୟିକା- ମାନଙ୍କୁ ମଣ୍ଡିଲେ
ବିବିଧ କୁସୁମ ଦେଇ ଗୋ ।
ରାଧିକା ଦୂତିକା ଏ ଦୁଇ ସଖୀଙ୍କି
ସମସ୍ତେ ସୁବେଶ କରି,
ସୁଶୀତଳ ଜଳେ ଚତୁଃସମ ଗୋଳି
ଶ୍ରୀଅଙ୍ଗେ ବୋଳିଲେ ବାଳୀ ଗୋ । ୧୬ ।
(ସଖି ଗୋ) ହାର ତାଡ଼ ଚୂଡ଼ୀ ମୁଦ୍ରିକା ମେଖଳା
ତାଟଙ୍କ ନାସା ବସଣୀ,
ଅଳକା ଅବତଂସ କେଶ ମଣ୍ଡିଲେ
କୁସୁମେ ସର୍ବ ତରୁଣୀ ଗୋ ।
ନୂପୁର ବରଚରଣେ ଖଞ୍ଜି ବାଳୀ
ପ୍ରଣମ୍ୟ ହୋଇ ଶୋଇଲେ,
ତୁମ୍ଭ କୃପାରୁ ପ୍ରଭୁ ଭାବ ଲଭିବୁଁ
ଶ୍ରୀଆଜ୍ଞା ହୋଉ ବୋଇଲେ । ୧୭ ।
(ସଖି ଗୋ) ହସି ରାଧିକା ସଖୀଙ୍କି ଠାରିଦେଲେ
ସଖି ହସି କୋଳ ଦେଇ,
ଏମନ୍ତ କର୍ମ୍ମା କହ ପ୍ରାଣସଜନି
ତୁମ୍ଭେ ତାଙ୍କ ନିଜ ଦେହ୍ମ ଗୋ ।
ପ୍ରଭୁଙ୍କ ନିମନ୍ତେ କି ପୁଷ୍ପ ଆଣିଛ
ଆଣ ସୁବେଶ କରିବା,
ସବୁ ଦେଇ ମାଳେ ମାଳେ ଗୋପ୍ୟ କଲେ
ସ୍ୱହସ୍ତେ କରିବେ ସେବା । ୧୮ ।

---

୧୬ । ଚତୁଃସମ— ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମ ।
୧୭ । ବରଚରଣେ—ଶ୍ରେଷ୍ଠ ପାଦରେ । ପ୍ରଣମ୍ୟ ହୋଇ—ପ୍ରଣାମ କରି ।
୧୮ । ଦେହ୍ମ—ଦେହ । ଗୋପ୍ୟକଲେ—ଗୋପନ କଲେ, ଲୁଚାଇ ରଖିଲେ ।

(ସଖି ଗୋ) ବାମ ଦକ୍ଷିଣେ ରତ୍ନ ବେଦୀ କଶୋଗ୍ର,
ସାଜଲେ କଶୋର ମୂର୍ତ୍ତି,
ବିବିଧ କୁସୁମ ଶ୍ରୀଅଙ୍ଗେ ମଣ୍ଡିଲେ
ବେଢ଼ି ସକଳ ଯୁବତୀ ଗୋ ।
ମାଳାମାନ ଧରି ଉଭାର ରହିଲେ
ଶ୍ରୀକୃଷ୍ଣ ଗୁନ୍ଥିବା ପାଇଁ
ହସି ଗୁହାଁନ୍ତେ ସମସ୍ତେ ମାଳ ଦେଲେ
ଶ୍ରୀହରି ହୃଦେ ଲମ୍ବାଇ ଗୋ । ୧୯ ।
ଏମନ୍ତ କେତେ କେତେ ରଙ୍ଗେ ଯୁବତୀ
ମୋହିଲେ ଦିବ୍ୟ ମୂରତି,
ବିବିଧ ବିନୋଦ ହାସ ପରିହାସ
ଯାହାର ଯେମନ୍ତ ଖ୍ୟାତି ଗୋ,
ଶ୍ରୀ ଗୋପୀନାଥଙ୍କ ମହିମା ଦୁର୍ଲଭ
ପ୍ରେମିକଙ୍କୁ ପ୍ରେମରଜ୍ଜୁ ,
ମହାରସେ ପଶି ଦେବ ଭାସିଗଲ,
ଯେ ଅବା ଯେମନ୍ତେ ବୁଝୁ ଗୋ । ୨୦ ।
(ଗାହା) ଇତଶ୍ରୀ ରହସ୍ୟ ମଞ୍ଜରୀ ଅଷ୍ଟାଦଶ ଛନ୍ଦେ
ଗୋପିକା ନକର ଫୁଲ ବିନୋଦ ବନ୍ଧେ
ଉନବିଂଶ ଛନ୍ଦ ବର୍ଣ୍ଣନେ କେବଣ ରଙ୍ଗ
କହିବାକୁ ଆଜ୍ଞା ହୋଉ ଏଥିର ପ୍ରସଙ୍ଗ । ୧୮ ।

---

୧୯ । ଉଭାର—ଠିଆହୋଇ ।

୨୦ । ପ୍ରେମରଜ୍ଜୁ—ପ୍ରେମର ବନ୍ଧନ । ମହାରସ—ଶ୍ରୀକୃଷ୍ଣ ଓ ଗୋପୀମାନଙ୍କର ଲୀଳାରସ ।

# ଊନବିଂଶ ଛାନ୍ଦ

ମହ୍ଲାର ରାଗେଣ ଗୀୟତେ ।

କେଳିକଳାନିଧି କଦମ୍ବ ମୂଳେ
ଗୋପ କଦମ୍ବ ନିତମ୍ବିନୀ ମେଳେ । ୦ ।
ରଞ୍ଚିଲେକ ରାସମଣ୍ଡଳୀ ଲୀଳା,
ବାଦ୍ୟ ବିନୋଦେ ନୃତ୍ୟରଙ୍ଗେ ଖେଳା ।
ନଟବରନାଗର ମଧ୍ୟେ ବିରାଜେ,
ମୋହନ ବଂଶୀ ବିମ୍ବାଧରେ ବାଜେ । ୧ ।
ହୁଙ୍କାର ଆଳପି ରାଗ ସଞ୍ଚାରେ
ଚେଚେନା ଚେନାଚେ ତାନ ଉଚ୍ଚାରେ ।
ତାନ ଭେଦ ତାଳ କପୋଳେ ଦିଏ;
ସଙ୍ଗୀତ ସୁସ୍ୱରେ ଗୋପିନୀ ଗାଏ । ୨ ।
କାମଜ ଛତିଶ ସହସ୍ର ଲକ୍ଷେ;
ତନ୍ତ୍ରିକ ଲକ୍ଷକ ସହସ୍ର ବଂଶେ,
ଅଠାଶି ସହସ୍ର ଫୁକାର ସାଜେ,
ଗୁଳଶି ସହସ୍ର ଚର୍ମଜ ବାଜେ । ୩ ।

---

# ଊନବିଂଶ ଛାନ୍ଦ

୦ । କେଳିକଳାନିଧି—ଶ୍ରୀକୃଷ୍ଣ । କଦମ୍ବ—ସମୂହ । ନିତମ୍ବିନୀ—ସୁନ୍ଦର ନିତମ୍ବ ଶୋଭିତା ଗୋପୀ ।

୧ । ରଞ୍ଚିଲେ—ରଚନାକଲେ, ସୃଷ୍ଟି କଲେ । ନଟବରନାଗର—ଶ୍ରୀକୃଷ୍ଣ ।

୨ । ହୁଙ୍କାର—ଓଁକାର । ଆଳପି—ଆଳାପ କରି, ଆରମ୍ଭ କରି । ସଞ୍ଚାରେ—ସଞ୍ଚରିତ ହୁଏ, ଖେଳଯାଏ ।

୩ । କାମଜ—କାମୋଦ୍ଦୀପକ । ତନ୍ତ୍ରିକ—ତାରବାଦ୍ୟ । ଫୁକାର—ମୁଖବାଦ୍ୟ । ଚର୍ମଜ—ମୃଦଙ୍ଗାଦି ବାଦ୍ୟ ।

ଧେଁକ୍ ଧେଁକ୍ ଥେଇ ଥେଇ ଦୁନ୍ଦୁଭି ଗାଜେ
ଝିଙ୍କିଡ଼ି ଗିଡ଼ଗିଡ଼ ଥେଇଥେଇ ସାଜେ ।
ଝେଁ ଝଙ୍କ ଝଙ୍କ ଝଙ୍କ ଝଞ୍ଜାଳ ଝାଙ୍କେ,
ଝେଁ ଗୁଣା ହିଣା ଋଣା ଗୁଣିତ ଗୁଣାଙ୍କେ । ୪ ।
ଝମକ ଝମକ ତାଳେ ଝମକେ
କଙ୍କିଣୀ ରୁଣଝୁଣ ଚତୁ ଚମକେ ।
ଠଣଉଣ ଘର୍ଘର ଘଣ୍ଟିରେ ନାଦେ
ମୁଖରିତ ମଞ୍ଜୀର ପାଦେ ବିବାଦେ । ୫ ।
ଭେଷ୍ମ ମୃଦଙ୍ଗ ନାନା ବାଦ୍ୟ ନାଦେ,
ବ୍ରହ୍ମାଣ୍ଡ ପୂରି ବ୍ରହ୍ମ ଲୋକ ଭେଦେ ।
ଭୂମି ଭେଦି ତାଳ ପାତାଳେ ପଶେ,
କଣ୍ଠମେଳି ବାଦ୍ୟ ପଞ୍ଚମ ରସେ । ୬ ।
କୁତବେଲି ଚୂମ୍ବରି ସହସ୍ରେ ପଡ଼େ
ଚନ୍ଦ୍ରଉଦଆ ଦାଉ ଦାଉ ଝଡ଼େ ।
ପୁଷ୍ପରି ଆଲଟ ସହସ୍ରେ ଢାଳ
ସହସ୍ରେ ଫୁଲ ଛତ୍ରଧରେ ତୋଳ । ୭ ।
ସହସ୍ରେ ଦର୍ପଣ ଗ୍ଭମୁରେ ଧରେ,
ମୁଖେ ମଧୁପାନ ତାମ୍ବୂଳ କରେ,
ଚନ୍ଦନ ମୁଦା ଜାହା କରେ ଶୋଭେ
ବନ୍ଧଧ ବନ୍ଦେ କୃଷ୍ଣମନ ମୋହେ । ୮ ।
ଗାବନ୍ତ ବାବନ୍ତ ନୃତ୍ୟନ୍ତ ବାଳା
ଉନ୍ମଦ ମଦନ-ଶରେ ବେଭ୍ଳେଳା,
ଗତ ଭ୍ରାନ୍ତ ସ୍ମୃତି ମାଧୁରୀ ସାଜେ,
ସୂର ଘୋର ଯୁଦ୍ଧ ଗାତିମା ଗାଜେ । ୯ ।

---

୬ । ତାଳ—ଝାଞ୍ଜ, ବାଦ୍ୟର ତାଳ ।
୮ । ଗ୍ଭମୁରେ—ସମ୍ମୁଖରେ । ତାମ୍ବୁଳ ପାନ । ଚନ୍ଦନମୁଦା—ଚନ୍ଦନ ଡବା ।
୯ । ଉନ୍ମଦ—ମଦୋନ୍ମତ୍ତ । ବେଭ୍ଳେଳା—ବିହ୍ୱଳା । ଗାଜେ—ଗର୍ଜନ କରେ ।

ଝଲମଲ ଝଟକଇ ତାଟଙ୍କ ଗଣ୍ଡେ,
ବିଦ୍ୟୁତ ଖେଳା କି ଜୀମୂତ ମଣ୍ଡେ,
ରଙ୍ଗିମା ଅଧରେ ଭଙ୍ଗିମା ଗାଏ,
ଲୋଚନ ବନ୍ଦେ କୃଷ୍ଣମୁଖ ଚାହେଁ । ୧୦ ।

ହେରି ଶ୍ରୀହରି ମୁଖ ପୂର୍ଣ୍ଣଇନ୍ଦୁ,
ଉଚ୍ଛୁଳି ଉଠେ ଗୋପୀ ପ୍ରେମସିନ୍ଧୁ,
କାଞ୍ଚୀଦାମ ତୁଟି କାଞ୍ଚୁଲି ଖସେ
ଯୌବନ ହେରାଇ ତାଙ୍କରୁ ବାସେ । ୧୧ ।

ପୁଣି ଝମଇ ପୁଣି ପୁଣି ତାଙ୍କି,
ଯେମନ୍ତେ ଯୌବନ ଢଶେ ହରଙ୍କି,
କୃଷ୍ଣଙ୍କୁ ନଚାହିଁ ସଖୀଙ୍କି ଚାହେଁ;
ଗୀତ ଭିତରେ ଅନୁଆନ କହେ । ୧୨ ।

ଚିବୁକ ଧରି ସଖୀ ମୁଖ ଚୁମ୍ବେ,
ନିବିଡ଼ ଗାଢ଼ କରି ପରିରମ୍ଭେ ।
କେହୁ ନିତମ୍ବ ଛଟେ କରଭରେ
ବାସନୀବିବନ୍ଧ ସଶିଳ କରେ । ୧୩ ।
କାହାର କାଞ୍ଚୁଲି କେ ଫିଙ୍ଗି ନଏ
ଯୌବନେ ଯୌବନ ହାଟବୋଡ଼ ହଏ ।
ନିବିଡ଼ ଆଲିଙ୍ଗନେ ଭଙ୍ଗେ ହ୍ରସ୍ତା,
କମ୍ପାଇ ଯୌବନ ଜଘନ ଦେହା । ୧୪ ।

---

୧୦ । ଜୀମୂତ—ମେଘ ।
୧୧ । ହେରି—ଦେଖି । ପୂର୍ଣ୍ଣଇନ୍ଦୁ—ପୂର୍ଣ୍ଣଚନ୍ଦ୍ର । ପ୍ରେମସିନ୍ଧୁ—ପ୍ରେମର ସାଗର । କାଞ୍ଚୀଦାମ—ଗୋଠ । କାଞ୍ଚୁଲି—ବକ୍ଷବନ୍ଧନୀ । ହେରାଇ—ଦେଖାଇ । ବାସେ—ଲୁଗାରେ ।
୧୨ । ଅନୁଆନ—ଏଣୁତେଣୁ ।
୧୩ । ପରିରମ୍ଭେ—ଆଲିଙ୍ଗନ କରେ । ନୀବାବନ୍ଧ—ଖେସଣି । ସଶିଳ—ଶିଥିଳ ।

ବାଞ୍ଛନ୍ତ ନାରୀ ହର ପରିରମ୍ଭେ
ଜୀବନ ଯୌବନ ନ ରହେ ଦମ୍ଭେ ।
ଜର୍ଜରିତ ହୋଇ ସ୍ତମ୍ଭିଣ ରହେ
ଲୋଚନ ଭେଦ କୃଷ୍ଣମୁଖ ଧ୍ୟାଏ । ୧୫ ।
ନୃତ୍ୟ ଗୀତ ଅନ୍ତ ଦେଖି ମୁରାରି,
ଜାଣିଲେ ମଦନେ ଉନ୍ମତ୍ତ ନାରୀ ।
ଗୋପୀ ଗୋଟିକେ କୃଷ୍ଣ ଗୋଟି ଏକ
ଏକରୁ ମୂର୍ତ୍ତି ହୋଇଲେ ଅନେକ । ୧୬ ।
ରାହି ଚନ୍ଦ୍ରାବଳୀ ପାରୁଶେ ଦୁଇ,
ତାଙ୍କ ମଧ୍ୟେ ଆଦ୍ୟରୂପ ରହି ।
ଯେତେକ ଗୋପୀ ତେତେ କୃଷ୍ଣ ବ୍ୟାପି
ଠାବେ ଠାବେ ଲୀଳା ଅନନ୍ତ ରୂପୀ । ୧୭ ।

ବିବିଧ ବନ୍ଧେ ପରିରମ୍ଭ ଲୀଳା,
ଶୃଙ୍ଗାର ରସେ ଗୋପୀ କୃଷ୍ଣ ଖେଳା ।
ଏକ ନ ଜାଣନ୍ତି ଆରେକ ଭେଦ,
ମୋହିନୁ କୃଷ୍ଣ ଆନ ନାହିଁ ଖେଦ । ୧୮ ।
ଅଷ୍ଟକମଳ ଅଷ୍ଟ ମଧ୍ୟଦଳେ,
କାଳୀର ଆଳ ହ୍ରଦଲତା କୂଳେ ।
ଗହନ ଗୁଳ୍ମ କୁସୁମ କାନନେ
ସକଳ ଗୋପୀ ଘେନ କେଳି କାହ୍ନେ । ୧୯ ।
ପଦ୍ମ ଦୁଇଦଳେ କୁଞ୍ଜ-କୁଟୀରେ
ରାଧାକୃଷ୍ଣ ଅଗ୍ନିକୋଣେ ବିହରେ ।
ଜାଣି ଗରୁଡ଼ ନିରୋଧିଲ ସନ୍ଧି
ନୃପନନ୍ଦମାଙ୍କ ଦୃଷ୍ଟି ନିରୋଧି । ୨୦ ।

---

୧୫ । ସ୍ତମ୍ଭିଣ—ସ୍ତମ୍ଭିତ ହୋଇ । ଧ୍ୟାଏ—ଧ୍ୟାନକରେ, ମନେକରେ ।
୧୬ । ରହି— ରାଇ, ରାଧିକା ।
୧୯ । କାଳୀର ଆଳହ୍ରଦ—କାଳିନ୍ଦୀ ହ୍ରଦ ।
୨୦ । ଦୁଇଦଳେ— ଦ୍ୱିତୀୟ ପାଖୁଡ଼ାରେ ।

ରାସ ଅଶେଷ ଅଭିଳାଷ ଲୀଳା,
ଏଥି ଭିତରେ କେତେ ଯୁଗ ଗଲା ।
ଗୋଟିଏ ଗୋଟିଏ ବୋଧ କରାଇ,
ଅନେକ କୃଷ୍ଣ ଏକା ମୂର୍ତ୍ତି ହୋଇ । ୨୧ ।
ହରି ଚରିତ ଏ ବିବିଧ ଭାବ,
ଯାହା ନଜାଣେ ଧାତାନନ୍ତ ଶିବ,
ମୋ ଛାର ପାମର କସି କହିବ,
ପିମ୍ପୁଡ଼ି ହୋଇ କି ସିନ୍ଧୁ ପିଇବ । ୨୨ ।
ନିକୃଷ୍ଟ ଜନ ମୋର କସ ବୁଦ୍ଧି
ଯହୁଁ କୃପା କଲେ କରୁଣାନିଧି,
ତେଣୁ ସନ୍ଥଜନେ କହିଲେ ଏତେ,
ବୋଲଇ ଦେବ ଶକ୍ତି ମୋର କେତେ । ୨୩ ।
(ଗାହା) ଇତିଶ୍ରୀ ରହସ୍ୟମଞ୍ଜରୀ ଊନବିଂଶ ଛାନ୍ଦେ,
ବିବିଧ ବିନୋଦ ବିଳାସ କୀର୍ତ୍ତିବନ୍ଧେ
ବିଂଶଛାନ୍ଦ ବର୍ଣ୍ଣନେ କେବଣ ସନ୍ତୋଷ
କହିବାକୁ ଆଜ୍ଞା ହୋଉ ଏଥିର ନିର୍ଦ୍ଦେଶ ।



୨୨ । ଧାତାନନ୍ତ—ବିଧାତା ଓ ଅନନ୍ତ ।
୨୩ । ନିକୃଷ୍ଟ—ହୀନ ।

## ବଂଶ ଛାନ୍ଦ

(ରାଗ ଭୈରବ—ଅଜବଜାପ ବାଣୀରେ ଗାଇବ)

ରାସ ରହସ୍ୟ ଅନ୍ତରେ କଥା
ଶୁଣି ରସିକ ରସ ପଣ୍ଡିତା,
ନୀପତରୁମୂଳେ ବସେ ଗୋପୀନାଥ,
ବ୍ରଜବନ୍ଧୁ ବୃଷଭାନୁ ସୁତା, ହେ ସୁଜନେ । ୧ ।
ରାଧାଙ୍କୁ ହାତେ ସ୍ତୁ ନାଗବଲ୍ଲୀ,
ଦୂତୀକରେ ଶୋହେ ଚନ୍ଦ୍ର ଝରି,
ତାମ୍ବୁଳ ଭୁଞ୍ଜାଇ ମୁଖ ପଖାଳନ୍ତି,
କେବା ପାରୁଛି କେବା ସ୍ନାନସାରି, ହେ ସୁଜନେ । ୨ ।
କେତି ସେବନ୍ତି କରନ୍ତି ବାଳୀ
କରେ କୁବେଲ ଭ୍ରମର ତାଳି,
ପୁଷ୍ପ ବଞ୍ଚି ଧରି କେ ବଞ୍ଚନ୍ତି,
କେହୁ ଫୁଲଛଡ଼ୀ ଧରେ ଢୋଳି, ହେ ସୁଜନେ । ୩ ।
ରାଧା ଚବୁକ ଧରି ମୁରାରି
ଗର୍ବି ବୋଲନ୍ତି ଶୁଣ ସୁନ୍ଦରି,
ଏବେତ ତୁମ୍ଭ ଆମ୍ଭ ମନ ପୂରିଲା,
ଆମ୍ଭେ ଯାଉଛୁ ଦ୍ୱାରକାପୁରୀ, ଗୋ ସୁନ୍ଦରି । ୪ ।
ଆଉ ଅଳପ ଦିନର କଥା,
ମୃତ୍ୟୁପୁରେ କି ଥିବା ସର୍ବଥା,
ଦନୁଜ ବନାଶି ନିଜ ପୁରେ ଯିବା,
କେବେ ଉଶ୍ୱାସି ଅବମାବ୍ୟଥା; ଗୋ ସୁନ୍ଦରି । ୫ ।

---

## ବଂଶ ଛାନ୍ଦ

୧ । ଅନ୍ତରେ—ପରବର୍ତ୍ତୀ । ନୀପତରୁ—କଦମ୍ବ ବୃକ୍ଷ ।
୨ । ନାଗବଲ୍ଲୀ—ପାନ ।
୫ । ମୃତ୍ୟୁପୁରେ—ସଂସାରରେ । ଦନୁଜ—ଅସୁର । ନିଜପୁରେ—ବୈକୁଣ୍ଠପୁରକୁ

ତୁମ୍ଭେ କଣ୍ଟୁବନ ଏଥେ ଥାଅ,
ମୋତେ ନ ଦେଖି ବ୍ୟଥା ନ ପାଅ,
ଅନ୍ତରେ ମୋର ତୁମ୍ଭ ତହିଁ ମନ,
ମୋତେ ଦ୍ୱାରକାକୁ ଆଜ୍ଞା ଦିଅ, ଗୋ ସୁନ୍ଦର । ୬ ।
ଏହୁ ବରଦ ବଂଶୀଟି ନିଅ,
ଗୋଷ୍ଠେ ସ୍ତୋକକୃଷ୍ଣ ହସ୍ତେ ଦିଅ,
ବଂଶୀ ଥିଲେ ଆମ୍ଭେ ତୁମ୍ଭ ହସ୍ତେ ଅଛୁ,
ବଂଶୀ ତୁମ୍ଭ ଆମ୍ଭ ସଖୀ ସହ; ଗୋ ସୁନ୍ଦର । ୭ ।
ଆଉ କଥାଏ ଶୁଣ ସୁନ୍ଦର,
ଯାହା ଚଢ଼ିଲ ଦ୍ୱାରକା ପୁରୀ,
ନିରନ୍ତରେ ତୁମ୍ଭ ଗୁଣ ଗୁଣୁଗୁଣୁ
ଆମ୍ଭ ଝଡ଼ିଗଲ ନିଜ ଶିରୀ; ଗୋ ସୁନ୍ଦର । ୮ ।
ସର୍ବସୁଖମାନ କଲୁ ତେଜ୍ୟା,
ଦିବ୍ୟ ପଲଙ୍କ ସୁପାଣ୍ଡୁ ଶଯ୍ୟା,
ନଗ୍ର ନରନାରୀ ସମସ୍ତେ ଚକିତ,
କଥା ବ୍ୟାପିଲ ରଜା ପରଜା, ଗୋ ସୁନ୍ଦର । ୯ ।
କେହି ଉତ୍ତର ତ ଶକ୍ୟ ନାହିଁ,
ଏହିମତେ କେତେ ଗଲ ବହି,
ସମସ୍ତେ ହୋଇ ରୁକ୍ମିଣୀଙ୍କି ପେଷିଲେ,
କଥା ତଦନ୍ତ ପାଇବା ପାଇଁ, ଗୋ ସୁନ୍ଦର । ୧୦ ।
ନାନା ଉପାୟେ ପ୍ରକାରେ ଦେବୀ
ବଳେ ପେଲି ଧରି ପାଦେ ସେବି,
ବହୁତ ହୋଧି କରି ବାମା ବୋଇଲେ,
ନ କହିଲେ ଆଜ ମୁଁ ମରିବି ହେ ଗୋବିନ୍ଦ । ୧୧ ।

---

୬ । ଏଥେ—ଏଠାରେ । ତୁମ୍ଭତହିଁ—ତୁମ୍ଭଠାରେ ।

୯ । ତେଜ୍ୟା—ତ୍ୟାଗ ।

୧୦ । ଶକ୍ୟ—ଶକ୍ତି । ପେଷିଲେ- ପଠାଇଲେ । ତଦନ୍ତ—ଖବର ।

ବାଳୀ ମୃତ୍ୟୁବ୍ରତ କଲେ ଯେଣୁ,
ତାଙ୍କୁ ନକହି କହିଲୁ, ତେଣୁ,
ବୋଇଲୁ ଆମ୍ଭେ ଏତେ ସର ହୋଇଲୁଁ,
ବ୍ରଜନାଥ ଗୁଣ ଗୁଣୁଗୁଣୁ ; ଗୋ ସୁନ୍ଦର । ୧୨ ।

ଶୁଣି ସ୍ତମ୍ଭୀଭୂତ ହୋଇ ବାଳୀ,
ସମସ୍ତେ ହେଁ ହୋଇ କଲେ ମେଳ,
ଆମ୍ଭେ ସେ ଏଡ଼େ ଅସୁନ୍ଦର ହୋଇଲୁଁ,
ଏକା ସୁନ୍ଦର ଗୋପଗୁଆଳୀ; ହେ ଗୋବିନ୍ଦ । ୧୩ ।

ତୁମ୍ଭ ରୂପଗୁଣ ଉପଲକ୍ଷି,
ତାଙ୍କୁ ଛଳଣ କହିଲୁଁ ସଖି,
ଶୁଣି ସମସ୍ତେ ସର୍ବସୁଖ ତେଜିଲେ,
ବସି ଭକନ୍ତି ଯେହ୍ନେ କର୍ମାଖୀ; ଗୋ ସୁନ୍ଦର । ୧୪ ।

ଏଥୁଁ ଅନ୍ତରେ ଗାଏଣୀ ଆସି
ତୁମ୍ଭ ଗୁଣ ଗାଇଲେ ବିଶେଷି,
ତାଙ୍କ ତହୁଁ ଶୁଣି ପରତେ ପାଇଲେ,
ମୋହେ ଭଳିଲେ ସର୍ବ ସୁକେଶୀ, ଗୋ ସୁନ୍ଦର । ୧୫ ।

ତହୁଁ ବହୁତ ବିନତି ହୋଇ,
ଆମ୍ଭ ଶ୍ରୀମୁଖରେ ସର୍ବ ଜଣାଇ,
ବୋଇଲେ ଆମ୍ଭଙ୍କୁ ଅନୁଗ୍ରହକର,
ତାଙ୍କ ଶ୍ରୀମୁଖ ବାରେ ଦେଖାଇ; ହେ ଗୋବିନ୍ଦ । ୧୬ ।

ତାଙ୍କ ସାତ୍ତ୍ୱିକ୍ୟ ଶରଧା ଶୁଣି,
ଆମ୍ଭେ ହେଳ ଆସିଅଛୁ ପୁଣି,
ମନଜାଣି ତାଙ୍କୁ ଅନୁଗ୍ରହ କର,
ତୁମ୍ଭେ ପ୍ରସନ୍ନ ହୁଅ ତରୁଣି ; ଗୋ ସୁନ୍ଦର । ୧୭ ।

---

୧୪ । ଉପଲକ୍ଷି—ଲକ୍ଷ୍ୟକର । ଛଳଣ—ଛଳେଇକରି ।
୧୭ । ସାତ୍ତ୍ୱିକ୍ୟ—ସାତ୍ତ୍ୱିକ ।

ରାଧା ବୋଇଲେ ସେ କାହିଁଛନ୍ତି,
ତୁମ୍ଭୁ ବୋଇଲେ ଗଗନପତି,
ଏକ ସଙ୍ଗ ହୋଇ ସମସ୍ତେ ଅଇଲୁ,
ବନ୍ଧ ଆଣିଲା ଏ ଖଗପତି; ଗୋ ସୁନ୍ଦରୀ । ୧୮ ।
ଶୁଣି ସମସ୍ତେ ଚକିତ ହୋଇ,
ବାଳୀ ଗଗନକୁ ଦେଖିଲେ ଚାହିଁ ।
ଜାଣି ଗରୁଡ଼ ଉଡ଼ି ଆସି ବସିଣ,
ରାଧା ଶ୍ରୀଚରଣେ ପ୍ରଣମଇ, ସେ ଗରୁଡ଼ । ୧୯ ।
ତୋତେ ଦେଖିଲି ଆଜ ମୋ ଧନ୍ୟ
ଯାହା ଶୁଣିଥିଲି ବେଣ୍ଣ କର୍ଣ୍ଣ,
ଲୁଚ ହୋଇ ଯିବ ଉଠ ମୋର ବାପ,
ଉଠ ଉଠ ତୁ କୃଷ୍ଣବାହାନ, ହୋ ଗରୁଡ଼ । ୨୧ ।
ରାଧା ଗରୁଡ଼କୁ ତୋଳି ଧରି,
କୃଷ୍ଣ ବାମେ ରହିଲେ ଈଶ୍ୱରୀ
ଦେଖିଲେ ଦୂରେ ଦର୍ଶନ କରୁଛନ୍ତି,
ଭୂମି ଲୋଟିଣ ବ୍ରଜ କୁମାରୀ; ହେ ସୁଜନେ । ୨୨ ।
ରାଧା ବୋଇଲେ ଉଠ ଗୋ ମାତ,
ଲୁଚ୍ଛ ହୋଇଯିବ ପ୍ରାଣମିତ,
ଶୀଘ୍ର ହୋଇ ଉଠି ଆସ ଜୀବଧନ,
ମୋର ପ୍ରାଣର ଶକ୍ତି-ସଙ୍ଘାତ; ଗୋ ସଜନ । ୨୩ ।
ରାଧା ବଚନ ଅମୃତ ଶୁଣି,
ଅଙ୍ଗ ପୁଲକେ ସବୁ ତରୁଣୀ,
ଭପୁ ସବୁ ଗୁଡ଼ ଉଠି ଉହ୍ୱାରିଲେ,
ସର୍ବେ ଶିରେ ଦେଇ ବେଣୁପାଣି; ହେ ସୁଜନେ । ୨୪ ।

---

୧୮ । ଗଗନପଥ—ଆକାଶରେ ଅଛନ୍ତି ।
୨୨ । ବ୍ରଜକୁମାରୀ - ଅଷ୍ଟପାଟଦେଈ ।
୨୩ । ଲୁଚ୍ଛ ହୋଇଯିବ—ଦୁଃଖରେ ମଉଳିଯିବ ।
୨୪ । ଉହ୍ୱାରିଲେ—ଠିଆହେଲେ ।

ରାଧା ଲାବଣ୍ୟ ବଦନ ଦେଖି
ଭାବେ ଜଡ଼ିଲେ ସର୍ବ ସୁମୁଖୀ,
ଲବଣୀ ପିତୁଳୀ ପ୍ରାୟେ ହୋଇଛନ୍ତି,
ଜଳେ ଛଳଛଳ ବେନି ଆଖି; ହୋ ସୁଜନେ । ୨୫ ।
ରାଧା ବୋଇଲେ ଆଜ ମୋ ଧନ୍ୟ
ମୁହିଁ ଦେଖିଲି ତୁମ୍ଭ ବଦନ,
ମନଜାଣି ଆଣି ଭେଟ କରାଇଲେ,
ପ୍ରଭୁ କୃପାସିନ୍ଧୁ ଭଗବାନ; ମୋ ମିତଣି । ୨୬ ।
ତୁମ୍ଭେ ଜଗନ୍ନାଥଙ୍କ ଭାବମା,
ତୁମ୍ଭେ ତ୍ରିଜଗଜନ ଜନମା,
ପ୍ରଭୁଙ୍କ କଥାଟି ତୁମ୍ଭଙ୍କୁ ଲାଗଇ,
ଆଉ କେବେହେଁ ନୋହିବ ମାନ, ଗୋ ମିତଣି । ୨୭ ।
ପ୍ରଭୁମନ ଜାଣି ସେବାଥିବ
ସର୍ବ ସଖୀ ହୋଇ ଏକ ଭାବ,
ସଦା ଆନନ୍ଦେ ଦିନ କାଳ ହରିବ,
ପ୍ରଭୁ ଯେମନ୍ତେ କଷ୍ଟ ନୋହିବ; ଗୋ ମିତଣି । ୨୮ ।
ଏତେ କହି ଥନ ଥନ ଆଖି,
ବେଢ଼ି ହୋଇଲେ ଗଦଗଦ ସଖୀ
ତକ୍ଷଣେ ଅଞ୍ଚଳେ ଲୋତକ ପୋଛିଣ,
ଶୋକ ସମ୍ଭାଳିଲେ ଚନ୍ଦ୍ରମୁଖୀ; ହେ ସୁଜନେ । ୨୯ ।
ଦେଖି ରୁକ୍ମିଣୀ ସଖୀଙ୍କ ଠାର
ଆଗେ ସେବିଲେ ରମ୍ଭାର ଧର,
ଯେ ଯା'ହା ସେବା ଆପ୍ରୁଧ କରେ ଦେଇ,
ସେବା ଖଟିଲେ ରାଜକୁମାରୀ ହେ ସୁଜନେ । ୩୦ ।

---

୨୫ । ଲାବଣ୍ୟ ବଦନ—ସୁନ୍ଦର ମୁଖ । ଜଡ଼ିଲେ—ମୋହିତ ହେଲେ । ସୁମୁଖୀ—ସୁନ୍ଦର ମୁଖୀ, ଅଷ୍ଟପାଟ ରାଣୀ । ଲବଣୀ ପିତୁଳୀ—ଲହୁଣୀର ପିତୁଳା, ନବନୀତ ପ୍ରତିମା ।

୨୭ । ଭାବମା—ସ୍ତ୍ରୀ । ମାନ—ଅଭିମାନମା ।

ପୁଣି ବୋଲେ ଝଷ୍ଟକ କୁମାର୍ଗ
ତୁମ୍ଭେ ଆମ୍ଭଙ୍କୁ ପ୍ରଭୁ ଦୋ'ସର;
ଆମ୍ଭ ଘର ନିରବଧି ଅପରାଧୀ
ତୁମ୍ଭ ପାଦକୁ ନୋହୁ ଯେ ସର; ଗୋ ଈଶ୍ୱର । ୩୧ ।

ତୁମ୍ଭେ ଠାକୁରାଣୀ-ପଣେବଡ଼
ଆମ୍ଭେମାନେ ଭବ ବୁଦ୍ଧି ଜଡ଼,
ତୁମ୍ଭ ପ୍ରଭୁଭାବ ଆମ୍ଭେ କି ଜାଣିମୁଁ,
ଆମ୍ଭ ହୃଦୟ ନୁହଇ ଦୃଢ଼; ଗୋ ଈଶ୍ୱର । ୩୨ ।

ତୁମ୍ଭ ପ୍ରସନ୍ନେ ଏଣିକି ଅବା
ଦେଖି ଯାଉଛୁଁ ଜାଣିମୁଁ ସେବା,
ଯହିଁ ଥିଲେ ଆମ୍ଭେ ତୁମ୍ଭ ପରିଚର୍ଯ୍ୟା,
ଆମ୍ଭ ଅପ୍ରାଧ କ୍ଷମା କରିବ'; ଗୋ ଈଶ୍ୱର । ୩୩ ।

ଏତେ କହିଣ ଚରଣ ଧରି,
ରାଧା ପାଦେ ନମିଲେ ସୁନ୍ଦରୀ,
ତୋଳି କୋଳକରି ହାତ ଧରି ନେଇ,
ରାଧା ସମର୍ପି ଦେଲେ ମୁରାରି ହେ ସୁଜନେ । ୩୪ ।

ମୋର ପ୍ରାଏ୍ଟେ ଏହାଙ୍କୁ ଦେଖିବ,
ଦୋଷ କଲେ ତାହା ଉପେକ୍ଷିବ,
ଆଉ ଯେତେ ନାରୀ ସବୁ ସମକରି,
ପ୍ରଭୁ ଏହାଙ୍କ ସଙ୍ଗେ ଲେଖିବ; ହେ ଗୋବିନ୍ଦ । ୩୫ ।

---

୩୧ । ଝଷ୍ଟକ କୁମାର୍ଗ—ରୁକ୍ମିଣୀ । ତୁମ୍ଭେ···ଦୋସର—ଆମ ଚକ୍ଷୁରେ ପ୍ରଭୁଙ୍କ ପରେ ତୁମ୍ଭର ସ୍ଥାନ ଦ୍ୱିତୀୟ ।
୩୧ । ନିରବଧି—ସର୍ବଦା ।
୩୨ । ଭବବୁଦ୍ଧି—ଜାଗତିକ ମାୟା ।
୩୨ । ପରିଚର୍ଯ୍ୟା—ସେବକା । ଅପ୍ରାଧ—ଅପରାଧ, ଦୋଷ ।
୩୫ । ଉପେକ୍ଷିବ -ଉପେକ୍ଷା କରିବ, ଦୋଷ ଧରିବ ନାହିଁ । ସମକରି—ସମାନ କରି । ଲେଖିବ—ବିବେଚନା କରିବ ।

ଆମ୍ଭ ନର୍ମାଖୀ ଗୋପୀଙ୍କ କଥା,
ପ୍ରଭୁ ମନୁ ନ ଛାଡବ ଚିନ୍ତା,
ଦୋଷକୁ ଉଚିତ ଯ ହା ବନ୍ଧୁ ଅଛୁ,
ତାହାକେ କରପାରେ ଅନ୍ୟଥା; ହେ ଗୋବିନ୍ଦ । ୩୬ ।

ଏତେ କହି କଥା ଗର୍ବେ ଭରି,
ବାହ୍ୟେ ହରଷ ଆରମ୍ଭ କରି,
ପକ୍ଷି ବର ପ୍ରାୟେ ପାଖେଛୁଟି ଅଇଲେ,
ରାଧାସଙ୍ଗେ ଦେଖି ବ୍ରଜନାରୀ, ସୁଜନେ । ୩୭ ।

ବେଢ଼ି ବୋଲନ୍ତି ସକଳ ଗୋପୀ,
ବାବୁ ଗରୁଡ଼ ଏବଡ଼ ତପୀ,
ପକ୍ଷୀରୂପ ଧରି ପ୍ରଭୁଙ୍କ ବିଶ୍ୱାସ,
ଯେସନ୍ତେ ରାମଚନ୍ଦ୍ର ହନୁ କପି, ଗୋ ସଜନି । ୩୮ ।
କେହୁ ବୋଲନ୍ତି ଏଥିଲା କାହିଁ,
ଏତ ଏତେକ ଆଣିଛୁ ବହି,
ରୂପ ଗୋପ୍ୟକରି ସାମାନ୍ୟ ଦିଶୁଛି,
ଦେଖ ବସିଛି ମଉନ ହୋଇ; ଗୋ ସଜନି । ୩୯ ।

କଥା କହଇ କେମନ୍ତ କରି,
ଶୁଣି ନ ପାରିଲୁଁ ଗୋପନାରୀ,
ଜାଡ଼ କାଲ ପ୍ରାୟେ ହୋଇ ବସିଅଛି,
ଯେସନ୍ତେ ଯୋଗଇନ୍ଦ୍ର ଧ୍ୟାନ ଧରି, ଗୋ ସଜନି । ୪୦ ।

ଦେଖ ଦେଖ ଗୋ ସୁନ୍ଦର ଡୋଳା,
କି ଏ ମାଣିକ୍ୟରଙ୍ଗ ପୋଯ୍ୟେଲା,
ଅଧର ସୁନ୍ଦର ଅରୁଣ ରେଖା କି,
ଦାଢ଼ି କସ୍ତୁରୀ କଣ୍ଡାର କଳା; ଗୋ ସଜନି । ୪୧ ।

---

୪୦ । ଯୋଗାଇନ୍ଦ୍ର ଧ୍ୟାନ—ଯୋଗୀନ୍ଦ୍ର ଧ୍ୟାନ, ଯୋଗୀଶ୍ରେଷ୍ଠଙ୍କର ଧ୍ୟାନ ।
୪୧ । ପୋଯ୍ୟେଲା—ପୋହଲା । କସ୍ତୁରୀକଣ୍ଡାର—କସ୍ତୁରୀ ଘଷା ହୋଇଥିବା ।

ଦେଖ ସୁନ୍ଦର ଏ ଉଚ୍ଚ ନାକ,
ଦଣ୍ଡା କାଣ୍ଡର ପ୍ରାୟେ ସଲଖ,
ନାକତଳେ ନଶମୋଡ଼ ଦେଇ ଅଛୁ,
ଏତ ଛର୍ବିଙ୍କ ଉପବେ ଶ୍ଲେଖ; ଗୋ ସଜନି । ୪୨ ।
ଦେଖ ଦେଖ ଗୋ ସୁନ୍ଦର ଗଳା,
ସେତ କମ୍ବୁର ପ୍ରାୟେ ଧବଳା,
ଏତେ ବୋଲି ଗୋପୀ ଶ୍ରଦ୍ଧାପାଇ ଅତି,
ସର୍ବେ ଲମ୍ବାଇଲେ ପୁଷ୍ପମାଳା; ଗୋ ସଜନି । ୪୩ ।
ତୁମେ ପ୍ରଭୁଙ୍କ ସମ୍ମୁଖେ ଥାଅ,
ଦେବ-ଗୁହ୍ୟ ଭ୍ରମାନ ଜଣାଅ,
ଥରେଥରେ ଆମ୍ଭ କଥା ଜଣାଇବୁ,
ଚୋରଧର କହୁଅଛୁଁ ପାଇଁ, ହେ ଗରୁଡ଼ । ୪୪ ।
ଶୁଣି ଗରୁଡ଼ ନୁଆଁଇ ମଥା,
ଆଖିବୁଜି ନ କହିଲି କଥା,
ଗୋପୀଙ୍କି ଉପେକ୍ଷି ଯିବାକୁ ଗୋବନ୍ଦ,
ପ୍ରଭୁ ହୃଦପଦ୍ମେ ବଡ଼ ବ୍ୟଥା; ହେ ଦଇବ । ୪୫ ।
ରାଧାମୁଖ ଚୁମ୍ବି ହୃଷୀକେଶି,
ଯାଇଁ ଗରୁଡ଼ ପୃଷ୍ଠରେ ବସି,
ରାଧାଙ୍କୁ ଆଜ୍ଞାମାଗି ରାଜକୁମାରୀ,
ସର୍ବେ ଆସନେ ବସିଲେ ଆସି, ହେ ସୁଜନେ । ୪୬ ।
ଗୋପୀ ଚାହୁଁ ଚାହୁଁ ଖଗପତି,
ଉଡ଼ି ଗଲାକ ଗଗନଗତି,
ପଲକ ନପଡ଼ୁ ଦ୍ୱାରକା ମିଳିଲି,
ଆସି ପ୍ରସର ହୋଇଲି ରାତି, ହେ ସୁଜନେ । ୪୭ ।

---

୪୨ । ଛର୍ବି—ଛର୍ବିସ୍ଥ । ଶ୍ଲେଖ—ଶ୍ରେଷ୍ଠ ।
୪୩ । କମ୍ବୁ—ଶଙ୍ଖ ।
୪୪ । ପାଲି—ପାଦ ।
୪୭ । ପ୍ରସର ହୋଇଲି—ପାହୁଆସିଲି ।

ଜାଣି ତାମ୍ରଚୂଡ଼ ଦେଲ ରଡ଼ି
ପ୍ରଭୁ ପଲଙ୍କେ ଷଟଣେ ପହୁଡ଼ି
ଅନ୍ତପୁରେ ସବୁରାଣୀ ପହୁଡ଼ିଲେ,
ଗଲେ ଗରୁଡ଼ ପୁରକୁ ଉଡ଼ି; ହେ ସୁଜନେ । ୪୮ ।

ରାତ୍ର ନପାହୁଁ ଉଠି ଶ୍ରୀହରି,
ପ୍ରଭୁ ନିତ୍ୟକର୍ମମାନ ସାରି,
ମର୍ଦ୍ଦନ ସ୍ନାହାନ ଅମୃତ ଭୋଜନ,
ପ୍ରଭୁ ତାମ୍ବୁଳ ଭୋଜନ କରି; ହେ ସୁଜନେ । ୪୯ ।

ପ୍ରଭୁ ରତ୍ନ ସିଂହାସନେ ବିଜେ,
ସଭା ମଣ୍ଡଳମଧ୍ୟେ ବିରାଜେ,
ଧାନ ଦେବ ସର୍ବଦୁଖ ଜଣାଇଲ,
ମୋତେ ରକ୍ଷାକର ଦେବରାଜେ; ହେ ଗୋବିନ୍ଦ । ୫୦ ।

ଗାହା— ଇତିଶ୍ରୀ ରହସ୍ୟମଞ୍ଜରୀ ବିଂଶଛନ୍ଦେ,
ସର୍ବ ସଂବୋଧ ବାଞ୍ଛାପୂର୍ଣ୍ଣ, ବନ୍ଦେ,
ଏକବିଂଶ ଛନ୍ଦ ବର୍ଣ୍ଣନେ କେବଣ କେବଣ ବୋଧ,
କହିବାକୁ ଆଜ୍ଞା ହୋଉ ଏଥିର ପ୍ରବନ୍ଧ ।



---

୪୮ । ତାମ୍ରଚୂଡ଼—କୁକୁଡ଼ା । ପହୁଡ଼—ଶୋଇ ।

# ଏକବିଂଶ ଛାନ୍ଦ

ରାଗ ଗୁଣ୍ଡକେରୀ- ବାଣ ଭୈରବ

ଏଥି ଅନ୍ତରେ ଶୁଣ ଅପୂର୍ବରସହେ
ଅନ୍ତେଶ୍ୱର ପୁରେ ମହାଦେବୀ,
ନିତ୍ୟକର୍ମ ଆଦି କରି ଯେ ବିଧିବିଧାନ ହେ
ନିଯୋଗ ବିବିଧଭାବେ ସେବି । କି ସନ୍ତହେ ।
ଭୋଜନ ଶୟନ ଅନ୍ୟ ରୀତି
ଏମନ୍ତ କେତେହେଁ ଦିନ ଅବସାନ ଗଲହେ
ଗୋବିନ୍ଦ ବିଜୟେ ଏକ ରାତି । ୧ ।

ବିବିଧ ମଣିମନ୍ଦିରେ ସୁବର୍ଣ୍ଣ ପଲଙ୍କେ ହେ
ବିମନେ ରୁକ୍ମଣୀ ଥିଲେ ଶୋଇ ।
ଶ୍ରୀହରି ପଲଙ୍କେ ବସି ଦେହେ କର ଦେଲେ ହେ
ଉଠି ଦେବୀ ଚଳେ ଉଭା ହୋଇ । କି ପ୍ରଭୁହେ ।
କକାଯେଁ ଅଇଲ ମୋତେ କହ ।
ତୁମ୍ଭେ ସର୍ବେଶ୍ୱର ଆମ୍ଭେ ମାନବୀ ମାତର ହେ ।
କି କାରଣେ ଛୁଁଅ ଆମ୍ଭ ଦେହ । ୨ ।

---

ଏକବିଂଶ ଛାନ୍ଦ

୧ । ନିଯୋଗ—ସେବକ । ଅବସାନ—ଅତୀତ ।
୨ ।ବିମନେ—କ୍ଷୁଣ୍ଣମନରେ ।

ଅତି ଅଭାଜନ ଆମ୍ଭେ ଅଯୋଗ୍ୟ ଯୁବତୀ ହେ
ହସ୍ତ ଅଗ୍ରେ ଛୁଇଁ ନ ଯୋଗାଇ ।
ଆମ୍ଭେ ମହାପାପୀ ପୂର୍ବେ ତପ କରି ନାହୁଁ ହେ
ଶ୍ରୀ ଅଙ୍ଗ ଛୁଇଁବୁ ଅବା କାହିଁ । କ ପ୍ରଭୁ ହେ ।
ଆମ୍ଭେ ମୀଚ ନବହ ନକୁଛ ।
ପ୍ରଭୁ ମାନଙ୍କର ଏହୁ ଅତି ଅବେଭାର ହେ
ଜଉ ତେଜ ମୀଚନାଘ ଇଛ । ୩ ।
ପୁଣ୍ୟରେ ମିଶଇ ପୁଣ୍ୟ ପାପେ ନ ମିଶଇ ହେ
ପାପଲଗି ପୁଣ୍ୟ ହୋଇଯେ ଖୀନ ।
ଅଭାବ ଯୁବତୀ ସଙ୍ଗେ ଭାବ ବଢ଼ାଇଲେ ହେ
ଅସଙ୍ଗ ସଙ୍ଗତେ ଯଶମ୍ଳାନ । କ ପ୍ରଭୁ ହେ ।
କ ବସ୍ତୁ ଅଇଲ୍ ମୋ ପାଶ
ଅଲଗା ସେବକା ଆମ୍ଭେ ବଲଗେ ସେବୁବୁହେ
ନ ଛୁଇଁବୁ ନିଜ ଶେଯ ବାସ । ୪ ।
ନ ଜାଣି ଅଗ୍ୟାନେ ପଡ଼ ଦୃଷ୍ଟି କରିଥିଲୁ ହେ
ତୁମ୍ଭେ ହେ ଉପ୍ରୋଧେ ନେଇଥିଲ ।
ଆମ୍ଭର ଅପ୍ରାଧ ଦେଖି ଖଣ୍ଡି ପକାଇଲ ହେ
ଯେହୁ ଯେତେ ତେତେକେ ରଖିଲ । କ ପ୍ରଭୁହେ ।
ଭଲ କଲ ରଖିଲ ଆମ୍ଭର
ସହଜେ ସାନ ଲୋକକୁ ବଡ଼ପଣ ହେଲେ ହେ
ନ ରଖଇ ପ୍ରଭୁଙ୍କ ବେଭାର । ୫ ।

---

୩ । ଅଭାଜନ—ଅଯୋଗ୍ୟ, ସାନସାନ । ନବହ—ନବଳ । ନକୁଛ—ହୀନ । ଅବେଭାର—ଉପଯୁକ୍ତ ବ୍ୟବହାର ନୁହେଁ ।

୪ । ଖୀନ—କ୍ଷୀଣ । ଅଭାବ ଯୁବତୀ—ପ୍ରୀତିଭାବ ନଥିବା ଯୁବତୀ । ବଲଗେ—ବଳେଇହରେ ।

୫ । ଦୃଷ୍ଟି କରିଥିଲୁ—ଦୃଷ୍ଟି ପକାଇଥିଲୁ, ଆଖି ରଖିଥିଲୁ । ଉପ୍ରୋଧେ—ଦୟାରେ । ଅପ୍ରାଧ—ଅପରାଧ । ଖଣ୍ଡି ପକାଇଲ—ବିନାଶ କଲ । ତେତେକେ—ସେତିକରେ ।

ଏତେବୋଲି ମହାସତୀ ଗଦଗଦ ହୋଇ ହେ
ଶୋକେ କହି ନପାରନ୍ତି ବାଣୀ ।
ଲୋଚନୁ ଲୋତକ ଦେଖା ଥୋପା ଥୋପା ପଡ଼େ ହେ
ଦେଖି କୋଳ କଲେ ଚକ୍ରପାଣି । କ ସନ୍ଥହେ ।
ପଲଙ୍କେ ବସାଇ ଶୁଭ୍ରକେଶୀ ।
ଚଞ୍ଚଳେ ଲୋତକ ପୋଛି ହୃଦରେ ଭିଡ଼ଣ ହେ
ମୁଖ ଚୁମ୍ବି କହନ୍ତି ଆଶ୍ୱାସି । ୬ ।

ସୁ ବୋଧ ସମ୍ଭାଳ ତୁମ୍ଭେ ଶୁଣ ପ୍ରିୟା ଗୋ
ତୁମ୍ଭେ ଅଟ ଯୁବତୀ ରତନ ।
ରୂପ ଗୁଣ ବୁଦ୍ଧି ଶୁଦ୍ଧି ଆସ୍ଥର ବସ୍ଥରେ ଗୋ
ସର୍ବଗୁଣେ ସର୍ବଦା ସମ୍ପୂର୍ଣ୍ଣ । କ ସଖି ଗୋ ।
ତୁମ୍ଭେ ସର୍ବବ୍ରହ୍ମାଣ୍ଡ ମଣ୍ଡନୀ ।
ତ୍ରିଭୁବନ-ଜନମନ ଆନନ୍ଦଦାୟିନୀ ଗୋ
ସର୍ବ-ଦୁଖ-ଦାରିଦ୍ର ଖଣ୍ଡନୀ । ୭ ।

ଆମ୍ଭେ ନାରାୟଣ ଅଟୁ ତୁମ୍ଭେ ନାରାୟଣୀ ଗୋ
ଆମ୍ଭେ ବ୍ରହ୍ମା ତୁମ୍ଭେ ବ୍ରହ୍ମାୟଣୀ ।
ଆମ୍ଭେ ରୁଦ୍ର ଅବତାର ତୁମ୍ଭେ ରୁଦ୍ରାୟଣୀ ଗୋ
ସର୍ବଭୂତେ ତୁମ୍ଭେ ବିହାରଣୀ । କ ସଖି ଗୋ ।
ତୁମ୍ଭେ ଅଟ ତ୍ରିପୁର ଈଶ୍ୱରୀ ।
ଦଶ ଅବତାର ଆମ୍ଭେ ଭୃତ୍ୟ ଛଳେ ଧରୁ ଗୋ
ତୁମ୍ଭେ ଲକ୍ଷ୍ମୀ ରୂପେ ମନୋହାରୀ । ୮ ।

ତୁମ୍ଭ ଆମ୍ଭ ରାଧା ତନ ଭିନ୍ନାଭିନ୍ନ ନାହିଁ ଗୋ
ରତି ପ୍ରୀତି ସ୍ମୃତି ଏକ ଦେହ ।
ତୁମ୍ଭେ ରତି ରାଧା ପ୍ରୀତି ଆମ୍ଭେ ଶ୍ରୁତି ଜାଣ ଗୋ ।
ଏଥେ କାହିଁ ଅଛଇ ସନ୍ଦେହ । କ ସଖି ଗୋ ।

---

୮ । ସର୍ବଭୂତେ—ସକଳ ଆତ୍ମାରେ ।

ତନ ସୁଖ ଆତ୍ମାକୁ ପ୍ରବେଶ ।
ଶ୍ରୁତିରୁ ଜନମ ପ୍ରୀତି ପୀରତିରୁ ରତି ଗୋ
ରତିଠାରେ ଠୁଳ ସର୍ବରସ । ୯ ।
ଜୀବ ପରମ ପ୍ରକୃତି ଏକ ଦେହେ ସ୍ଥିତି ଗୋ
ଲୀଳା ଅର୍ଥେ ଭିନ୍ନ ଜନ୍ମ ଯେଣୁ ।
ଏ ମୋହ ସଂସାରେ ପଡ଼ି ଅଗ୍ୟାନ ହୋଇଲ ଗୋ
ତୁମ୍ଭଙ୍କୁ ନ ଜାଣ ତୁମ୍ଭେ ତେଣୁ । ସଖିଗୋ ।
ଘୁଞ୍ଚଏବେ ବିଅର୍ଥ ସନ୍ତାପ ।
ଇହଗ୍ୟାନ ତେଜ ପ୍ରିୟେ ପରମକୁ ଚେତ ଗୋ
ତୁଟୁ ସର୍ବ ମାୟା ମୋହ ଚାପ । ୧୦ ।
ରୁକ୍ମଣୀ ବୋଇଲେ ପ୍ରଭୁ ଅଗ୍ୟାନର ଗ୍ୟାନ ହେ
ଅଚେତର ଚେତନା ପୁରୁଷ ।
ଯେତେ କହୁ ଅଛ ପ୍ରଭୁ ତେତେ ମୁଁ ବୁଝଇ ହେ
ତେଣୁ ମୋ ଭ୍ରାନ୍ତି ଯେ ବିଶେଷ । କି ପ୍ରଭୁହେ ।
ଅଧିକ ମୁଁ କହୁନାହିଁ ଆନ ।
ତୁମ୍ଭ ଆତ୍ମ ରାଧା କାହିଁ କେମନ୍ତ ପ୍ରମାଣ ହେ
ଦେଖାଇବ ମୋତେ ମୂଳସ୍ଥାନ । ୧୧ ।
ଶ୍ରୀହରି ବୋଇଲେ ସଖି ଦୁର୍ଗମ କହିଲ ଗୋ
ନିଗୂଢ଼ ପରମ ପ୍ରେମଧାମ,
ନକ୍ଷତ୍ର ପ୍ରାୟେକ ସଖି ଖସିବା ନିଶ୍ରମ ଗୋ
ପାଲଟି ବସିବା ଅତିଶ୍ରମ । କି ସଖି ଗୋ ।
ଆସିବା ନିକଟ, ଯିବା ଦୂର,
ଅନେକ ଜନମ ସାଧି ସଂସିଦ୍ଧ ହୋଇଲେ ଗୋ
ତେବେ ଲଭି ପାରି ସେହୁ ପୁର । ୧୨ ।

---

୧୦ । ଜୀବ ପରମ—ଜୀବାତ୍ମା ଓ ପରମାତ୍ମା ।
୧୦ । ବିଅର୍ଥ—ଅର୍ଥହୀନ । ସନ୍ତାପ—ଦୁଃଖ । ଇହଗ୍ୟାନ—ଜାଗତିକ ଜ୍ଞାନ ।
୧୧ । ଭ୍ରାନ୍ତି—ଭ୍ରମ । ମୂଳସ୍ଥାନ—ଆଦିସ୍ଥାନ ।
୧୨ । ନିଶ୍ରମ—ମୂଲ୍ୟହୀନ । ସଂସିଦ୍ଧ—ସ୍ୱୟଂସିଦ୍ଧ, ସ୍ୱୟଂ ସଂପୂର୍ଣ୍ଣ ।

ବନା ଯନ୍ତ୍ର ମନ୍ତ୍ର ଭେଦ ନ ଜାଣିକ ସିଦ୍ଧି ଗୋ
ବନାଗୁରୁ କୃପାରୁ କ ପାଇ
ତଥି ଉପଦେଶଗୁରୁ ହିପୁର ସୁନ୍ଦରୀ ଗୋ
ଚତୁର୍ଦ୍ଦଶ ପ୍ରମାଣେ ତା କହି । କ ସଖିଗୋ ।
ତାଙ୍କ ଯାଇ ଯାଇ ପାରିଯେବେ ।
ଯନ୍ତ୍ର ମନ୍ତ୍ର ସର୍ବ ଭେଦ ସେ ଯେବେ କହିବେ
ସିଦ୍ଧି କଲେ ଲଭିପାରି ତେବେ । ୧୩ ।
ସୁର ମହେଶ୍ୱର ବ୍ରହ୍ମା ବିଷ୍ଣୁ କୋଟି କୋଟି ଗୋ
ତାଙ୍କ ଯାଏ ଯାଏତ ନପାରି
ଅଶେଷ ଦୁର୍ଗମ ପଥ ନିଗମେ ଅଗମ୍ୟ ଗୋ
ଭେଦଶକ୍ୟ ନୋହଇ କାହାରି । କ ସଖି ଗୋ ।
ଯେବେ ତୁମ୍ଭେ ଦୃଢ଼ କଲ ମନେ ।
ପାରିକ ନପାରି ସଖି ଗମନ କରିବା ଗୋ
ସତ୍ୟକରି କହୁଛୁ ବଚନେ । ୧୪ ।
କ୍ଷୋଭ ଏବେ ଗୁଡ଼ ପ୍ରିୟେ ହସି କଥା କହ ଗୋ
ରବି-ଚନ୍ଦ୍ର ମୟୁଖ ବିକାଶୁ ।
ସୁର ଘୋର ଅନ୍ଧକାର ତିମିର ବିନାଶୁ ଗୋ
ସଂକୁଚେଣ ପିକ ଝାଡ଼େଝାସୁ । କ ସଖି ଗୋ ।
ତୁଙ୍ଗ ଭର ଅମ୍ବର ଉପେଖ ।
ଅଦଢ଼ ହୃଦୟ ମୋର ଉଡ଼ କର ଦଢ଼ ଗୋ
ବଦନ ଚୁମ୍ବିଣ ପ୍ରାଣରଖ । ୧୫ ।

---

୧୩ । ଚତୁର୍ଦ୍ଦଶ ପ୍ରମାଣେ—ଚତୁର୍ଦ୍ଦଶ ବିଦ୍ୟାରେ; ସ୍ୱରବେଦ, ଷଡ଼ଅଙ୍ଗ, ଧର୍ମଶାସ୍ତ୍ର ମୀମାଂସା, ତର୍କ ଓ ପୁରାଣ ।

୧୪ । ନିଗମେ—ତନ୍ତ୍ରଗ୍ରନ୍ଥରେ । ଅଗମ୍ୟ—ଗମନ ଅସମ୍ଭବ । ଭେଦଶକ୍ୟ—ଭେଦିବାକୁ ଶକ୍ତ ।

୧୫ । ମୟୁଖ—କିରଣ । ସଂକୁଚେଣ—ସଙ୍କୁଚିତ ହୋଇ । ଝାଡ଼େ—ଥରଣୀରେ । ଝାସୁ—ପଶୁ । ତୁଙ୍ଗଭର—ଉଚ୍ଚ ବକ୍ଷସ୍ଥଳ । ଅମ୍ବର—ଲୁଗା । ଉପେକ୍ଷ—କାଢ଼ । ଅଦଢ଼—ଯାହା ଦୃଢ଼ ନୁହେଁ । ଦଢ଼—ଦୃଢ଼ ।

ଶୁଣି ଶଶୀମୁଖୀ ମନେ ମନସିଜ ବୋଧେ ହେ
ବେକ୍ତ ବେଳ ବଢ଼ିଲ ଉଲ୍ଲାସ
ଲକ୍ଷ୍ମୀ ନାରାୟଣ ସୁଖ ସମୁଦ୍ରେ ମଜ୍ଜିଲେ ହେ
କହେ ଦେବ ଦୁର୍ଲ୍ଲଭ ଯେ ଦାସ । କ ସନ୍ତୁହେ ।
ଶ୍ରୀହରି ମହିମା ଅଗୋଚର,
ସଞ୍ଚିପି କହି ଲୋଡ଼ିଲେ ଶକ୍ୟଟି କାହାର ହେ
କହିଲେ କି ସରଇ ସାଗର । ୧୬ ।

ଗାହା— ଇତିଶ୍ରୀ ରହସ୍ୟମଞ୍ଜରୀ ଏକବିଂଶ ଛାନ୍ଦେ
କାନ୍ତରତି ଗମନେ କାନ୍ତା ଅଭିମାନ ବନ୍ଧେ,
ଦ୍ୱାବିଂଶଛାନ୍ଦ ବର୍ଣ୍ଣନେ କେବଳ ଗ୍ୟାନ,
କହିବାକୁ ଆଗ୍ୟାଁ ହୋଇ ପରମ ଅଗମ୍ୟଗ୍ୟାନ । ୨୧ ।



---

୧୬ । ଶଶିମୁଖୀ—ଚନ୍ଦ୍ରମୁଖୀ ରୁକ୍ମିଣୀ । ମନସିଜ—କନ୍ଦର୍ପ । ଉଲ୍ଲାସ—ଆନନ୍ଦ ।
ସଞ୍ଚିପି—ସଂକ୍ଷିପ୍ତ କରି । କହି ଲୋଡ଼ିଲେ—କହିବାକୁ ଚାହିଁଲେ ।
ଶକ୍ୟ—ଶକ୍ତି ।

## ଦ୍ୱାବିଂଶ ଛାନ୍ଦ

ସଙ୍ଗମନ୍ତଆଶା ବାଣୀରେ ଗାଇବ ।

ଜୟଜୟ କୃଷ୍ଣପ୍ରିୟା ରୁକ୍ମଣୀ ନାମ
ସୁନ୍ଦର ପଣକୁ ଲକ୍ଷ କ ଦେବା ସମ । ୧ ।
ଶ୍ରୀକୃଷ୍ଣ ରମଣୀ ଯେହୁ କାମର ମାତ
ଯାହାର ପ୍ରକୃତି ଅଂଶୁ ଅଶେଷ ଜାତ । ୨ ।
ସଂହାରଣୀ ପାଳଣୀ ଧାରଣୀ ସଂସାର
ପ୍ରକୃତି କାରଣୀ ସର୍ବଭୂତେ ନସ୍ତାର । ୩ ।
ଗଙ୍ଗାଗୟା ଗୋଦାବରୀ ତୀର୍ଥ ସ୍ୱରୂପୀ
ଭଗତ କାରଣେ ଦେବୀ ଜଗତେ ବ୍ୟାପି । ୪ ।
ଲୀଳାଅର୍ଥେ ଏକରୂପ ଅନେକ ହୋଇ
ପ୍ରଭୁ ଠାକୁରାଣୀ ବିନୁ ଅଧିକ କାହିଁ । ୫ ।
ମୋ ସ୍ତୁର କସ କହିବ ତୁମ୍ଭ ମହିମା
ଦୁରିତନାଶିନୀ ଦୋଷକର ମୋ କ୍ଷମା । ୬ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ସୁଜନ
ପରମ ରହସ୍ୟ ରସ ନିତ୍ୟ ଆଖ୍ୟାନ । ୭ ।
ଗରୁଡ଼ ହକାରି ପ୍ରଭୁ ଜଗନ୍ନାଥ
ରୁକ୍ମଣୀ ଘେନିଣ ବିଜେ ପରମପଥ । ୮ ।

---

## ଦ୍ୱାବିଂଶ ଛାନ୍ଦ

୨ । କାମରଂ ମାତ—କନ୍ଦର୍ପର ମାତା । ପ୍ରକୃତିଅଂଶୁ—ସୃଷ୍ଟି ଅଂଶରୁ ।
୬ । ଦୁରିତନାଶିନୀ—ପାପନାଶିନୀ ।
୭ । ଆଖ୍ୟାନ—କଥା ।
୮ । ହକାରି—ଡାକି । ପରମପଥ—ଶ୍ରେଷ୍ଠପଥ, ଦେବପଥ ।

ବ୍ରହ୍ମାଣ୍ଡ-ଅଣ୍ଡ-କଟାହ କଳଣ ଯାଇଁ
ବାସୁଦେବ ଆଳ ଜଳ ବୈକୁଣ୍ଠେ ହୋଇ । ୯ ।
ବୋଲନ୍ତି ଶ୍ରୀହରି ପ୍ରିୟା ଶୁଣ ଗୋ ତୁମ୍ଭେ
ଏପୁରେ ରୁକ୍ମଣୀ ବାସୁଦେବଟି ଆମ୍ଭେ । ୧୦ ।
କହୁଁ କହୁଁ ଜଳମୟପୁର ଜିଣିଲେ
ଅନଳମୟ ଭୁବନେ ଯାଇଁ ମିଳିଲେ । ୧୧ ।
ଅଗ୍ନି ତେଜ ଦେଖି ଭୟକଲେ ରୁକ୍ମଣୀ
ହୃଦରେ ରଖିଲେ ଭଡ଼ ଶାରଙ୍ଗ ପାଣି । ୧୨ ।
ଜଳନ୍ତା ଅନଳେ ଝାସି ଗରୁଡ଼ ଚଳ
ଅନେକ ଯୋଜନ ଅଗ୍ନି ଗଲ ନିକଳ । ୧୩ ।
ବହୁତ ବସ୍ତାର ଉର୍ଦ୍ଧ ଗଗନ ପନ୍ଥ
ଜିଣିଲ ବିଚକ୍ଷଣ କଶ୍ୟପ ସୁତ । ୧୪ ।
ସେଠାରୁ ଚେଣିକ ଅନ୍ଧକାର ଭୁବନ
ନିଜ ଅଙ୍ଗ ନ ଦିଶଇ ସହଜେ ଶୂନ୍ୟ । ୧୫ ।
ମହାଭୟ ଉପୁଜିଲ ଶ୍ରୀହରି ପ୍ରିୟା
ଦରଣ୍ଡି ଭିଡ଼ିଲେ ଦେଖା ଗୋବନ୍ଦ ହିୟା । ୧୬ ।
ସୁଦର୍ଶନଚକ୍ର ଘେନି ଶ୍ରୀବନମାଳ
ଚର୍ଜନୀ ଅଙ୍ଗୁଳି ଭରି ବୁଲନ୍ତି ତୋଳ । ୧୭ ।
ବୁଲଇ ଛାଡ଼ିଲେ ଦେବଶୂନ୍ୟ ପନ୍ଥେଣ
ଗରୁଡ଼ ଉଡ଼ଇ ଚକ୍ରପଛେ ପଛେଣ । ୧୮ ।
କୋଟିଏ ସୂର୍ଯ୍ୟର ଜ୍ୟୋତି ଚକ୍ରର ତେଜ,
ଉଜ୍ଜ୍ୱଳେ ଲଙ୍ଘିଲେ ତାହା ଦେବାଧିରାଜ । ୧୯ ।
ମନୋମୟେ ପୁରେ ପଶି ବୁଦ୍ଧିକି ଲଙ୍ଘି,
ଅହଙ୍କାରମୟ ପୁରେ ଜଣିଲେ ବେଗି । ୨୦ ।

---

୯ । ବ୍ରହ୍ମାଣ୍ଡ ଅଣ୍ଡ କଟାହ—ବ୍ରହ୍ମାଣ୍ଡର ସୀମା । ଆଳ—ବାସ ।

୧୧ । ଅନଳମୟ—ଅଗ୍ନିମୟ ।

୧୩ । ନିକଳ—ବାହାର ।

ପ୍ରକୃତ ମଣ୍ଡଳେ ଯାଇଁ ପ୍ରବେଶ ହୋଇ
ଅର୍ଦ୍ଧମାତା ସନ୍ନିଧେଣ ମିଳଲେ ଯାଇଁ । ୨୧ ।

ଶଙ୍ଖ, ଚକ୍ର, ଗଦା, ପଦ୍ମ ମୂରତି ହୋଇ
ଦୁର୍ଗତିତାରିଣୀ ଦୁର୍ଗା ସେଠାରେ ଅଛି । ୨୨ ।

ବୋଲନ୍ତି ଶ୍ରୀହରି ତୁମ୍ଭେ ଶୁଣ ରୁକ୍ମିଣୀ ।
ଏହି ମହାଦେବୀଟି ପ୍ରକୃତି-କାରଣୀ । ୨୩ ।

କୋଟି କୋଟି ବିଷ୍ଣୁ ପାଦରଜରୁ ଜାତ ।
ଏ ପୁଣି ରାଧାଙ୍କ କୋଟି କଳାରୁ ଖ୍ୟାତ । ୨୪ ।

ସତ୍ୟଯୁଗେ ମୈଷା-ସୁର-ଦରପ ଚୂର ।
ତ୍ରିଗୁଣ ଜନନୀ ଏଟି ଅନାଦି ନାରୀ । ୨୫ ।

ଏହାଙ୍କ କଳାରୁ ତୁମ୍ଭେ ଜନମ ହୋଇ,
ଜନମେ ଜନମେ ବିଷ୍ଣୁ ପ୍ରିୟା ବୋଲାଇ । ୨୬ ।

ଏତେ କହି ସେଠାରେ ଦର୍ଶନ କରି,
ପ୍ରବେଶ ହୋଇଲେ ଦେବମାତାଙ୍କ ପୁରୀ । ୨୭ ।

ବିରାଟ ପ୍ରକୃତି ଏହୁ ସେ ଦଶଗତି,
ବିରଜା ବୋଲଣଟି ଏହାଙ୍କୁ ବୋଲନ୍ତି । ୨୮ ।

ବ୍ରହ୍ମାବେଦ ଏଇଠାରେ ଜନମ ହୋଇ,
ତେଣୁଟି ଦେବେ ତାଙ୍କୁ ବିରଜା କହି । ୨୯ ।

ସହସ୍ର ଶିରଷା ନାମେ ବେଦପୁରୁଷ,
ବେଦମଧ୍ୟେ ସୃଷ୍ଟି ଏହୁକରେ ପ୍ରକାଶ । ୩୦ ।

---

୨୩ । ପ୍ରକୃତିକାରଣୀ—ସୃଷ୍ଟିକାରଣୀ ।

୨୫ । ମୈଷାସୁର-ମହିଷାସୁର । ଦରପ ଚୂର—ଦର୍ପ ଚୂର୍ଣ୍ଣକର । ତ୍ରିଗୁଣଜନନୀ—ସତ୍ତ୍ୱ, ରଜ ଓ ତମର ସୃଷ୍ଟିକାରଣୀ ।

୩୦ । ସହସ୍ର ଶିରଷା—ସହସ୍ରଶୀର୍ଷା, ହଜାରେ ମୁଣ୍ଡ ।

ଏଣିକ ବ୍ରହ୍ମାଉବେଦ ଗମଇ ନାହିଁ,
ତେଣୁଟି ନିଗମ ନିତ୍ୟ ଅଗମ୍ୟ କହି । ୩୧ ।
ସେଠାରୁ ଦର୍ଶନ କରି ବେଗେ ଚଳିଲେ,
ଲିଙ୍ଗରୂପୀ ଶିବପୁରେ ଯାଇ ମିଳିଲେ । ୩୨ ।
ଦର୍ଶନକରି ବୋଲନ୍ତି ଶୁଣ ସୁନ୍ଦରି ।
ଏହାଙ୍କ ମହିମା ଦେବ କହି ନପାରି । ୩୩ ।
ଲୋଚନ ଜ୍ୟୋତିରୁ ଯାର ହୋଇଛି ପ୍ରକାଶ ।
ରବି ଚନ୍ଦ୍ର ଗ୍ରହ ତାରା ମାସ ଦିବସ । ୩୪ ।
ଏତେ କହି ସେ ଭୁବନୁ ବାହାର ଗଲେ ।
କୃଷ୍ଣମୂର୍ତ୍ତି ବ୍ରହ୍ମରୂପୀ ଦର୍ଶନ କଲେ । ୩୫ ।
ଏହିମତେ ଲଙ୍ଘିଗଲେ ଅନେକ ପୁରୀ,
ବିଭୂତି ମଣ୍ଡଳେ ଯାଇ ବିଜୟେ କରି । ୩୬ ।
ଷୋଡ଼ଶ ପ୍ରକାରେ ତହିଁ ମହିମା କହି,
ହୃଷିକେଶନ ଭୁବନେ ମିଳିଲେ ଯାଇ । ୩୭ ।
ତହୁଁ ଯାଇଁ ଅନନ୍ତ ଭୁବନେ ପ୍ରବେଶ ।
କେ କହି ପାରିବ ସେ ଅଶେଷ ବିଶେଷ । ୩୮ ।
ଗରୁଡ଼ ଭୁବନେ ଯାଇ ପ୍ରବେଶ ହୋଇ,
ବୋଲନ୍ତି ବୈକୁଣ୍ଠ ସଖି ଅଟଇ ଏହି । ୩୯ ।
ଅଷ୍ଟଦ୍ୱାର ପାଳ ଚଣ୍ଡ ପ୍ରଚଣ୍ଡ ଆଦି
ସିଂହଦ୍ୱାରେ ମହାବଳୀ ଅଛନ୍ତି ରୁନ୍ଧି । ୪୦ ।
ଚହ୍ନିଣ ଗୁଡ଼ିଲେ ଗଲେ ଭିତରେ ପଶି,
ଶଙ୍ଖ ଚକ୍ର ଗଦା ପଦ୍ମ ବିଷ୍ଣୁ ଦରଶୀ । ୪୧ ।
ବତିଶ ଦଳରେ ଅବତାର ବତିଶ
ପ୍ରତ୍ୟେକେ ମହିମା ସଖି କେ କହୁ ଲେଶ । ୪୨ ।

---

୩୧ । ଗମଇ—ପ୍ରବେଶ କରେ ।

୩୪ । ଲୋଚନ ଜ୍ୟୋତି—ନୟନ ଜ୍ୟୋତି ।

୪୦ । ମହାବଳୀ—ମହାବୀର ।

ଚଦନ୍ତରେ ଦଶପଦ୍ମେ ହୋଇଛି ପ୍ରବେଶ ।
ଚାରୁଶ ଦେବତା ତହିଁ ଛନ୍ତି ବିଶେଷ । ୪୩ ।
ବୋଲନ୍ତି ଶ୍ରୀକୃଷ୍ଣ ସଖି ପ୍ରାଣର ସହି ।
ଉଦ୍ଧବ ଅକ୍ରୂର ମୂଳ ସ୍ଥାନଟି ଏହି । ୪୪ ।
ଆମ୍ଭର ଦ୍ୱାରକା ସଖି ଏହୁ ଭୁବନ,
ଏହିଠାରେ ତୁମ୍ଭ ଆମ୍ଭ ସର୍ବ ସଦନ । ୪୫ ।
ଅଷ୍ଟ ପାଟବଂଶୀ ଆଦି ଯେତେକ ନାରୀ
ଯେ ଯାହାଠାବରେ ଦେଖି ଚାହିଁ ସୁନ୍ଦରି । ୪୬ ।
ପୂର୍ବେ ଆମ୍ଭପୁର ସଂକର୍ଷଣ ଦକ୍ଷିଣେ,
ପଚ୍ଛିମେ ପ୍ରଦ୍ୟୁମ୍ନ ଦେଖ ରତି ରମଣେ । ୪୭ ।
ସୋମେ ଉଷା ଅନିରୁଦ୍ଧ ଦେଖ ଗୋ ସଖି ।
ନବ ଆବରଣ ଏହି ଠାବରୁ ଦେଖି । ୪୮ ।
ବତିଶ ଦଳରେ ଉପବନ ବତିଶ,
ଲୀଳା ଆବରଣେ ଲୀଳା ଅଶେଷ ରସ । ୪୯ ।
ଏମନ୍ତ ଷୋଡ଼ଶ ଦଳେ ଷୋଡ଼ଷବନ ।
ବନେ ବନଲୀଳାମାନ ଅତି ଗହନ । ୫୦ ।
ଚତୁ ଦ୍ୱିଶିଷ୍ଟ ଦଳେ ଖଦିର ବନେ
ଗୋବର୍ଦ୍ଧନ ଗିରି ସଖି ଦେଖ ଲୋଚନେ । ୫୧ ।
ଆମ୍ଭ ଗୋପନବର ଏ ଦେଖ ଗୋ ସଖି,
ଯହିଁ ଯେତେ ବ୍ରଜବଧୂ ମନ୍ଦିର ଲେଖି । ୫୨ ।
ନନ୍ଦପୁର ବୃଷଭାନୁ ମନ୍ଦିର ଆଦି
ବଛା ବଛପାଳ କେତେ ଛନ୍ତି ଆହ୍ଲାଦି । ୫୩ ।

---

୪୭ । ସଙ୍କର୍ଷଣ—ବଳରାମ । ପଚ୍ଛିମେ—ପଶ୍ଚିମରେ । ରତିରମଣ—ରତିପତି କନ୍ଦର୍ପ ।

୪୮ । ସୋମେ—ଉତ୍ତର ଦିଗରେ ।

୫୦ । ଗହନ—ନିଗୂଢ଼ ।

୫୧ । ଖଦିର—ଖଇର ।

୫୩ । ବଛପାଳ—ଗୋପାଳ ।

ଯମୁନା ପୁଳିନ ବନେ କାଳିନ୍ଦୀ ହ୍ରଦ ।
ଅଷ୍ଟଦଳ ମଧ୍ୟେ ଦେଖ ତରୁ କଦମ୍ବ । ୫୪ ।

ଦକ୍ଷିଣ ଦଳରେ ରାସ ଅଶେଷ ହୋଇ ।
ବିରହିଣୀ ସ୍ଥାନ ଏହି ଦେଖ ଗୋ ସହି । ୫୫ ।

ନୈଋତ ଦଳରେ ବ୍ୟୋମାସୁରକୁ ମାରି
ଶଙ୍ଖଚୂଡ଼ବଧ କଲେ ପୁଣ ସୁନ୍ଦରି । ୫୬ ।

ବିପ୍ରଲବ୍ଧା ଲକ୍ଷଣଟି ଏହି ଦଳରେ ।
ଏ ପଦ୍ମ ପଶ୍ଚିମ ଦଳେ ଅର୍ଘ୍ୟ ସଂହାରେ । ୫୭ ।

ଏହି ଦଳେ ଧାତା ଆସି କଲା ଦର୍ଶନ,
ଏହି ଦଳେ ଯଜ୍ଞ ଅନ୍ନ କଲୁ ଭୋଜନ । ୫୮ ।

ଏହି ଦଳେ ଖଣ୍ଡିତାଟି ରାଧା ମାନିନୀ ।
ଚରଣ ଧରିଣ ବୋଧ କଲୁ କାମିନୀ । ୫୯ ।

କାବ୍ୟବଳେ କାଳୀପୁର କାଳିନ୍ଦୀ ହ୍ରଦ
ଗହନ କାନନ ଗୁଳ୍ମ କୁସୁମ ଗନ୍ଧ । ୬୦ ।

ଏହିଦଳେ ପୁଷ୍ପ ବନେ ଗୋପୀଙ୍କ ସଙ୍ଗେ ।
ବିବିଧ-ବିନୋଦ-ଲୀଳା ଅଶେଷ ରଙ୍ଗେ । ୬୧ ।

ଉତ୍କଣ୍ଠିତା ଲକ୍ଷଣଟି ଏ ଦଳେ ବସି ।
ଉତ୍ତର-ଦଳ-ମହିମା ଶୁଣ ସୁକେଶି । ୬୨ ।

---

୫୭ । ବିପ୍ରଲବ୍ଧା—ଯେଉଁ ନାୟିକା ସଙ୍କେତ ସ୍ଥଳକୁ ଯାଇ ନାୟକକୁ ନପାଇ ହତାଶ ହୋଇଥାଏ । ଅର୍ଘ—ଅଘ, ପାପ ।

୫୮ । ଯଜ୍ଞ ଅନ୍ନ—ଯଜ୍ଞର ଚରୁଅନ୍ନ ।

୫୯ । ଖଣ୍ଡିତା—ଯେଉଁ ନାରୀ ନିଜ ପତିର ଅନ୍ୟନାରୀ ପ୍ରତି ଆସକ୍ତି ଦେଖି ଈର୍ଷାନ୍ୱିତା ହୁଏ ।

୬୨ । ଉତ୍କଣ୍ଠିତା—ଯେଉଁ ନାୟିକା କଥା ଅନୁସାରେ ନାୟକ ଯଥା ସମୟରେ ଉପସ୍ଥିତ ନ ହେବାରୁ ଶୋକାକୁଳ ହୁଏ ।

ଦ୍ୱାଦଶ ରବିକିରଣ ଶୀତଳ ତହିଁ,
କଣୋଗ୍ଧ ବାସକସଜ୍ଜା ହୋଇଛନ୍ତି ଯହିଁ । ୬୩ ।
ଗଉଡ଼ି ଅଛି ନକରି ଗୋପ ଯୁବତୀ;
ଈଶାଣ ଦଳେ ଲଭିଲେ ଗୋବିନ୍ଦ ପତି । ୬୪ ।
ଏହି ଦଳେ ଗୋପୀଙ୍କର ବସ୍ତ୍ର ହରଣ,
କଳହାନ୍ତରିତା ଏଥେଁ ବସେ ଲକ୍ଷଣ । ୬୫ ।
ପୂର୍ବଦଳେ କେଶୀ ବଧ ହୋଇଲା ସହି,
ଗଙ୍ଗାଦି ସକଳତୀର୍ଥ ଏ ଦଳେ ବହି । ୬୬ ।
ସ୍ୱାଧୀନ ଭର୍ତ୍ତୃକା ନାମେ ଲକ୍ଷଣ ବସେ,
ନିକୁଞ୍ଜ କୁଟୀର ଦଳ ଅନଳ ଦିଶେ । ୬୭ ।
ଅଭିସାରିକା ଲକ୍ଷଣ ବସଇ ତହିଁ,
ରାଧାକୃଷ୍ଣ କେଳିକ୍ରୀଡ଼ା-ସଦନ-ଏହି । ୬୮ ।
ଏହି ଅଷ୍ଟଦଳ ରସ ଦ୍ୱାରେଣ ଦେଖ,
ଗୋପୀଶ୍ୱର ମହେଶ୍ୱର ଦ୍ୱାରେ ରକ୍ଷକ । ୬୯ ।
ରୁକ୍ମିଣୀ ବୋଇଲେ ଏତ ଅନନ୍ତ ମାୟା,
ଅନ୍ତ ନପାଇଲି ଯହିଁ ଦେଖିଲି ଯାହା । ୭୦ ।
ଠାବେ ଠାବେ ବଇକୁଣ୍ଠ ବିଷ୍ଣୁ ମୂରତି,
ଶଙ୍ଖ ଚକ୍ର ଗଦାପଦ୍ମ କରେ ଧରନ୍ତି । ୭୧ ।
ଠାବେ ଠାବେ ବାସୁଦେବ ରୁକ୍ମିଣୀ ଦେଖି,
ରାମ କାମ ଅନିରୁଦ୍ଧ କେ କହୁ ଲେଖି । ୭୨ ।

---

୬୩ । ବାସକସଜ୍ଜା—ଯେଉଁ ନାୟିକା ନାୟକର ଆଗମନ ପ୍ରତୀକ୍ଷାରେ ନିଜର ବାସ, ବେଶ ଓ ଶଯ୍ୟା ସଜ୍ଜିତ କରି ରହିଥାଏ ।

୬୫ । କଳହାନ୍ତରିତା—ଯେଉଁ ନାୟିକା ନାୟକ ସହିତ କଳହ କରି ଦୂରରେ ରହି ଅନୁତାପ କରେ ।

୬୭ । ସ୍ୱାଧୀନଭର୍ତ୍ତୃକା—ଯେଉଁ ନାରୀ ସ୍ୱାମୀକୁ ଅଧୀନସ୍ଥ କରି ରଖିଥାଏ ।

୬୮ । ଅଭିସାରିକା—ଯେଉଁ ନାରୀ ନାୟକ ସହିତ ମିଳିତ ହେବା ପାଇଁ ସଙ୍କେତ ସ୍ଥଳକୁ ଗୋପନରେ ଯାଏ ।

ଠାବେ ଠାବେ ଲକ୍ଷ୍ମୀ ନାରାୟଣ ସରୂପୀ,
ବିବିଧ ବିଭୂତିମତେ ଆନନ୍ଦରୂପୀ । ୭୩ ।
ଠାବେ ଠାବେ ରାଧାକୃଷ୍ଣ ଗୋପିକା ବୃନ୍ଦ,
ଠାବେ ଠାବେ ରାସକ୍ରୀଡ଼ା ଲୀଳା ଆନନ୍ଦ । ୭୪ ।
ସଂକ୍ଷେପି ନଯାଇ ପ୍ରଭୁ ଏଥି ମହିମା,
ସର୍ବମୂଳ-ମଣ୍ଡଳ କେସନେ ଜାଣିମା । ୭୫ ।
ସକଳ-ଦ୍ୱାରକାମୂଳ କେବଣ ଥାନ,
ସର୍ବ ନିତ୍ୟ ଥଳ-ମୂଳ କହିଁ ଭୁବନ । ୭୬ ।
ଆଦ୍ୟ ରାଧା ଆଦ୍ୟ କୃଷ୍ଣ ଆଦ୍ୟ ରୁକ୍ମିଣୀ,
ଆଦ୍ୟ ବାସୁଦେବ ସ୍ଥିର କେମନ୍ତେ ଜାଣି । ୭୭ ।
ଶ୍ରୀହରି ବୋଇଲେ ପଚାରିଲ ଦୁର୍ଲଭ,
ସାଧୁ ସାଧୁ ବୁଦ୍ଧି ତୁମ୍ଭ ଶୁଦ୍ଧି ସୁଲଭ । ୭୮ ।
ଏତେ ବୋଲି କାଳନ୍ଦୀ ପୁଳିନେ ପ୍ରବେଶ,
ମହାଭୟଙ୍କର କାଳମାୟା ପ୍ରକାଶ । ୭୯ ।
ସେହିଠାରୁ ଏଣିକି ତାହାର ବିହାର,
ତା ଚିହ୍ନ ମଧ୍ୟରୁ କେହି ନୋହେ ବାହାର । ୮୦ ।
ଯେ ଯେତେ ହୋଇଲେ ତାହା ଭିତରେ ଖେଡ଼ି
ନିତ୍ୟ ମଣ୍ଡଳକୁ ବେଢ଼ି ହୋଇଛି ବେଢ଼ି । ୮୧ ।
ସ୍ୱର୍ଗ ମର୍ତ୍ତ୍ୟ ପ୍ରାୟେ ତାର ବିସ୍ତାର ତୁଣ୍ଡ,
ବ୍ରହ୍ମାଣ୍ଡ ଖଣ୍ଡକୁ ଜିଣି ବିଷାଳ ମୁଣ୍ଡ । ୮୨ ।
ଜିଭ ଯାର କୋଟି କୋଟି ବ୍ରହ୍ମାଣ୍ଡ ବୁଲେ,
ବିକଟ ଦର୍ଶନ ମେରୁ ମନ୍ଦର ତୁଲେ । ୮୩ ।

---

୭୩ । ବିଭୂତିମତେ—ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ ରୂପରେ ।

୭୫ । ସଂକ୍ଷେପି—ସଂକ୍ଷେପରେ । ଏଥି—ଏ ସ୍ଥାନର, ଏହାର ।

୮୧ । ଖେଡ଼ି—ଖେଳ । ବେଢ଼ି—ଶୃଙ୍ଖଳ ।

୮୨ । ବିସ୍ତାର—ବିସ୍ତୃତ । ବିଷାଳ—ବିରାଟ ।

ପ୍ରଚଣ୍ଡ ବଳକତା ମହାଭୁଜ ବସ୍ତୀର୍ଣ୍ଣ,
ଠାରେ ଥାଇଁ ସାଧି କରେ ସର୍ବଭୁବନ । ୮୪ ।
ନଖତଖ ଲକ୍ଷ ଲକ୍ଷ ଯୋଜନ ଭରଣେ,
ଭଙ୍ଗେ ଯମ ପ୍ରାଣଯିବ ନୟନବାସେ । ୮୫ ।
ଵିକଟ ବଦନ ଦେଖି ଦେବୀ ରୁକ୍ମିଣୀ,
ମହାଭୟ ଉପୁଜିଲ ନୃପଦୁଲଣୀ । ୮୬ ।
କାଟୋଳି ପ୍ରମାଣେ ଦେବୀ ସଙ୍କୋଚ ଗଲେ,
ପ୍ରଭୁ ବାମଭୁଜ ମୂଳ ତଳେ ଲୁଚିଲେ । ୮୭ ।
ଶ୍ରୀକୃଷ୍ଣଙ୍କୁ କାଳମାୟା ଯହୁଁ ଚହ୍ନିଲ,
ବୈଷ୍ଣବମୂରତ ହୋଇ ପଥ ଛାଡ଼ିଲ । ୮୮ ।
ପତଙ୍ଗବର ଉଡାଇ ସେଠାରୁ ଗଲେ,
ଅଷ୍ଟବଟ ନିକଟେଣ ବଜୟେ କଲେ । ୮୯ ।
ପାରିଜାତ ତରୁମୂଳେ ପଶ୍ଚିମ ଦ୍ୱାରେ;
ଦ୍ୱାରକାସମ୍ବନ୍ଧ ମୂଳ ସ୍ଥାନ ସେଠାରେ । ୯୦ ।
ତ୍ରିଗୁଣାଖାତ ଅତ ନିର୍ଗୁଣ ମୂର୍ତ୍ତି,
ଆଦ୍ୟମୂର୍ତ୍ତି ବାସୁଦେବ ସେ ସ୍ଥାନେ ସ୍ଥିତ । ୯୧ ।
ଅଶେଷ କୋଟି ଦ୍ୱାରକା ବୈକୁଣ୍ଠ କୋଟି,
ଏହିସ୍ଥାନ ଅଂଶା ଅଂଶୁ ଜାତ ହୋଏଟି । ୯୨ ।
ଉତ୍ତରଉଦ୍ୟାନ ମଧ୍ୟେ ହରିଚନ୍ଦନ,
ସଙ୍କର୍ଷଣ ବୃ୍ୟହ ସଖି ଦେଖ ଲୋଚନ । ୯୩ ।
ପ୍ରାଚୀଦ୍ୱଣେ ସନ୍ତାନ ଗ୍ଛଇରେ ବସନ୍ତ,
ରତି-କାମଦେବ ବୃ୍ୟହ ଦ୍ୱିବ୍ୟ ମୂରତ । ୯୪ ।

---

୮୭ । କାଟୋଳି—କସ୍ତଟ ।

୯୧ । ତ୍ରିଗୁଣାତୀତ—ତ୍ରିଗୁଣାତୀତ, ସତ୍ତ୍ୱ, ରଜ ତମଗୁଣର ଅତୀତ ।

୮୯ । ପତଙ୍ଗବର—ପକ୍ଷୀଶ୍ରେଷ୍ଠ, ଗରୁଡ଼ ।

୯୩ । ହରିଚନ୍ଦନ—ଦେବତରୁ ।

ଦକ୍ଷିଣେ ଉଦ୍ୟାନ ଦଣ୍ଡ ଗନ୍ଧନବନ,
ଉଷା ଅନିରୁଦ୍ଧ ସୁରତରୁ ମୂଳେଣ । ୯୫ ।
ଏଠାରୁ ଏଣିକି ସଖି ନିତ୍ୟ ବିହାର,
ମୂଳରାଧା ମୂଳଗୋପୀ ମୂଳକିଶୋର । ୯୬ ।
ସେ ସ୍ଥଳମହିମା କିସ କହିବା ସହି,
ବଚନ ଲୋଚନ ମନ ନଗମେ ଯହିଁ । ୯୭ ।
ନିରନ୍ତରେ ଦେବ ଆଶା ତହିଁ ରହିଲା,
ଶ୍ରୀଗୁରୁ ଚରଣ ଶିରେ ଧରି ଧ୍ୟାଇଲା । ୯୮ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଦ୍ୱାବିଂଶ ଛାନ୍ଦେ,
ସକଳାମ୍ନାୟ ବୈକୁଣ୍ଠ ଆଦ୍ୟରୁଣ କନ୍ଦେ,
ସମ୍ଭୁବଂଶ ଛନ୍ଦ ବର୍ଣ୍ଣିନେ କେବଣ କେବଣ ସମ୍ବାଦ,
କହିବାକୁ ଆଜ୍ଞା ହୋଉ ଏଥର ଯେ ଆସ୍ୱାଦ । ୨୨ ।



## ତ୍ରୟୋବିଂଶ ଛାନ୍ଦ

ରାଗ ବଙ୍ଗଳା ଦେଶାକ୍ଷ

ଶ୍ରୀଧର ବଚନ ଶୁଣି ଯୁବତୀଙ୍କ ବାଣୀ
କ୍ରୋଧେ ଗରୁଡର ଶୋକ ନୋହେ ସମ୍ଭାଳି । ୧ ।
ଏବେ ସେ ଜାଣିଲୁ ତୁମ୍ଭ ଭୁମ୍ବର ଭୁଆ;
ଏକାବେଳେ ଛନ୍ଦାଇଲ ସବୁ ସେନେହା । ୨ ।
ନତ୍ୟ ଯେ ବୋଇଲ ସେତ ତୁମ୍ଭର ଭାବ,
କାଳେ ତହୁଁ ଆସିଣ ଲଭିବ ଏ ଠାବ । ୩ ।
ଗୋପର ଗୋପୀ ଆସିବେ ଯେ ଯାହାଘର,
କାଳେ ତ ନଥିବୁଁ ଆମ୍ଭେ ତୁମ୍ଭ ସଙ୍ଗର । ୪ ।
ବାସୁଦେବ ମୂର୍ତ୍ତି ନତ୍ୟସ୍ଥଳେ ତ ନାହିଁ,
ସେସ୍ଥଳେ ରୁକ୍ମଣୀ ରୂପେ ପଶିବୁ କାହିଁ । ୫ ।
ନଚୟେ ଜାଣିଲୁ ଆମ୍ଭେ ସଂସାର ସଙ୍ଗ
ସଂସାର ଲଭିବ କାହିଁ ପରମ ସଙ୍ଗ । ୬ ।
ଯେ ଯାହାର ସେ ତାହାର କାଳେ ହୋଇଲା,
ଅଗୁଲୁଆ ସଙ୍ଗ ଗୋଟି ପଡ଼ିରହିଲା । ୭ ।
ଏତେ କହି କ୍ରୋଧ ଦେଖା ବହୁତ କଲେ,
ତକ୍ଷଣେ ସମ୍ଭାଳି ଦମ୍ଭହୋଇ କହିଲେ । ୮ ।

---

## ତ୍ରୟୋବିଂଶ ଛାନ୍ଦ

୨ । ଛନ୍ଦାଇଲେ—ଛନ୍ନକଲ ।
୬ । ନଚୟେ—ନିଶ୍ଚୟ ।
୭ । ଅଗୁଲୁଆ—ଅନ୍ତରକ୍ତ, ଅଧିକା
୯ । କାଟବ—କାଟିଦେବ, ଦୂରକରିଦେବ ।

ବୋଇଲେ ତ ଯେ ହୋଇଲୁ ହୋଇଲୁ କଥା,
କାହଲେ କାଢ଼ିବ କେହୁ ହୃଦର ବଥା । ୯ ।

ତଥାପି ନାଲ୍ଲଜପଣେ ପୁଚ୍ଛଇ ମୁହିଁ
ତୁମ୍ଭେ ଯେ ଆସିବ ମୋତେ କାହାକୁ ଦେଇ । ୧୦ ।

ଆମ୍ଭେ ତ ତୁମ୍ଭର ସଙ୍ଗ ନୋହୁଁ ଗୋସାଇଁ,
କଅର୍ଥେ ମିଛକୁ ମୋହ ଅଛ ଲଗାଇ । ୧୧ ।

ତୁମ୍ଭ ମାୟା ଦେଖି ମୋତେ ଲଗିଲା ଭୟ,
ଏଥକୁ ଆମ୍ଭର କଛୁ ନାହିଁ ଉପାୟ । ୧୨ ।

ସବ ସଙ୍ଗ ତୁମ୍ଭେ, କାଳେ କାହାର ନୁହଁ,
ଖେଳ ସଙ୍ଗ ତେଜ ତୁମ୍ଭେ ବଲଗେ ରହ । ୧୩ ।

ଶ୍ରୀହରି ବୋଇଲେ ସଖି ନୁହଇ ଏହା,
ସବଦା କାଳରେ ଅମ୍ଭେ ତୁମ୍ଭର ନାହା । ୧୪ ।

ତୁମ୍ଭେ ଯହିଁ ଥିବ ଆମ୍ଭେ ତହିଁ ପ୍ରମାଣ
ତୁମ୍ଭ ଆମ୍ଭ ନାନାକାର ଶରୀର ଜାଣ । ୧୫ ।

ଏତେ ବୋଲି ଗୋଲକ ମଣ୍ଡଳ ଜିଣିଲେ,
ତ୍ରିପୁରେଶ୍ୱରୀଙ୍କ ଦ୍ୱାରେ ଯାଇଁ ମିଳଲେ । ୧୬ ।

ଦୂରହୁଁ ବାହନ ତେଜ ଦର୍ଶନ କରି,
ପ୍ରିୟା କର ଧରି ଉଭା ହୋଏ ମୁରାରି । ୧୭ ।

ଦେଖିଣ ହସିଲେ ନିତ୍ୟ ତତ୍ତ୍ୱ କାରେଣୀ,
କ ଅର୍ଥେ ଅଇଲ ବଥା, ସଙ୍ଗେ ରମଣୀ । ୧୮ ।

---

୧୩ । କାଳେ—ସମୟପଡ଼ିଲେ । ଖେଳ—କ୍ରୀଡ଼ା । ବଲଗେ—ଅଲଗା ହୋଇ ।
୧୪ । ନାହା—ନାଥ ।
୧୫ । ନାନାକାର—ବିଭିନ୍ନ ଆକାରର ।
୧୭ । ଦୂରହୁଁ—ଦୂରରୁ ।
୧୮ । କାରେଣୀ—କାରିଣୀ ।

ଶ୍ରୀଧର ବୋଇଲେ ଶୁଣ କୃପାକଟାକ୍ଷି,
ସର୍ବ ଗର୍ଭ ବାଉଚା କ ଓହ୍ଲାଡ଼େ ଅଛୁ । ୧୯ ।

ବିଦର୍ଭ ରାଜ୍ୟର ରାଜକୁଳ ପ୍ରସୂତା,
ମମପ୍ରାଣ ପରମେଶ୍ୱର ଏ ନିଜ କାନ୍ତା । ୨୦ ।

ତୁମ୍ଭ ଶ୍ରୀଚରଣେ ନିତ୍ୟ ଇଚ୍ଛନ୍ତି ଭକ୍ତି,
ଶ୍ରୀରାଧା ପାଦ ପଙ୍କଜ ଦର୍ଶନେ ମତି । ୨୧ ।

ବିପ୍ରୁର ବୋଇଲେ ବସ୍ତ୍ର କହିଲୁ ଯାହା
ନକହୁଁ ଆଗହୁଁ ଆମ୍ଭେ ଜାଣୁନ ତାହା । ୨୨ ।

କୋଟି ବୈକୁଣ୍ଠରେ କୋଟି ଲକ୍ଷ୍ମୀ ମୂରତି,
କୋଟି ବ୍ରହ୍ମାଣ୍ଡରେ କୋଟି ରୁକ୍ମଣୀ ସ୍ଥିତି । ୨୩ ।

କାହିଁ କେତେ ଛନ୍ତି ଏହା ଗଣିତା ନାହିଁ ।
ରାଧାଙ୍କ ଦର୍ଶନ ଏହୁ ପାଇବ କାହିଁ । ୨୪ ।

ଏକ ବ୍ରହ୍ମାଣ୍ଡର ବଳଭଦ୍ର ମୂରତି,
ବେଳେକି ବହୁତ ମୋତେ କଲ୍ ଭଗତି । ୨୫ ।

ତାହାର ଆରତ ଦେଖି ସ୍ୱେଜଣ ଗଲି,
ମନ୍ତ୍ରବଳେ ଅଙ୍ଗ ତାର ପାଲଟ କଲି । ୨୬ ।

ତେବେ ସେ ଅଙ୍ଗ ତାହାର ଚହ୍ଲା ଚଢ଼ିଲା ।
ପ୍ରିୟମ୍ବଦା ସଖୀ ତାହା ଦେଖି ବାଉଳା । ୨୭ ।

ମାୟାକର ତଳେ ତାଙ୍କୁ ଅଇଲ ଗ୍ଭଡ଼ି,
ଏପ୍ରକାରେ କେତେ ତୋତେ କହିବା ଫେଡ଼ି । ୨୮ ।

---

୧୯ । କୃପା କଟାକ୍ଷି—ଯାହାର କଟାକ୍ଷରେ କୃପା ପ୍ରକାଶିତ । ଓହ୍ଲାଡ଼େ—ଅନ୍ତରାଳରେ ।

୨୪ । ଗଣିତା—ଗଣନା ।

୨୬ । ପାଲଟ—ପରିବର୍ତ୍ତନ ।

୨୭ । ପ୍ରିୟମ୍ବଦା ସଖୀ—ରାସ ଲୀଳାରେ ବୀଣାବାଦନୀ ସଖୀ । ବାଉଳା—ଚହଲିଦେଲା ।

କୋଟି ବାସୁଦେବ ଶିବ ସ୍ୱୟମ୍ଭୂ ମୂର୍ତ୍ତି,
ଏଦ୍ୱାରକୁ ଏମାନେ ଗଣିତା ନୁହନ୍ତି । ୨୯ ।
କେବଳ କଥାଏ ଅଛି ଗୁପତ,
ନିଗମେ ଅଗମ୍ୟ ଗୁରୁ ମୁଖେ ବ୍ୟକତ । ୩୦ ।
ଶ୍ରୀଗୁରୁ ଚରଣେ ଯେବେ ପାରଇ ସେବ,
ତାହାଙ୍କ ପ୍ରସନ୍ନେ ବଣ୍ଡ ଏ ସୁଖ ଲଭ । ୩୧ ।
ଦର୍ଶନ କରିବା ଶକ୍ୟ ଯାହାର ହୋଇ,
ଆଉ କ ସେ ଜନ ଏଥୁଁ ବାହୁଡ଼ି ଯାଇ । ୩୨ ।
ଯାକୁ ଯେଉଁ ଅଧିକାର ଆଗ୍ୟା ହୋଇଛି
ସେ ଯାହା ବିଭୂତି ବନ୍ଧ ବାନ୍ଧି ରହିଛି । ୩୩ ।
ଏ କଥା ମହାନିତ୍ୟକୁ ଲୋଡ଼ଇ ଆସି,
ସର୍ବଦା ବନରେ ଏ ବୈକୁଣ୍ଠ ବିଳାସୀ । ୩୪ ।
ତୁମ୍ଭେ ଯେ ଶ୍ରୀକୃଷ୍ଣ ନାଥ ନିତ୍ୟ ମୂରତି,
ନିର୍ଗୁଣେ କିଶୋର ରୂପ ନିର୍ଗୁଣେ ଅତି । ୩୫ ।
କଳ୍ପଣା ଅଂଶରୁ ଛର ମର୍ତ୍ତ୍ୟକୁ ଗଲୁ,
ରାଧାଙ୍କ କଳ୍ପନା ଅଂଶ ସଙ୍ଗରେ ନେଲୁ । ୩୬ ।
ଚତେଚେବେଳେ ଏ ସଙ୍ଗ ତୋ କାହିଁରେ ଥିଲ,
କ୍ଷଣକ ସଙ୍ଗକୁ ସଙ୍ଗ ମୋହର କଲ । ୩୭ ।
ରାଧାକୃଷ୍ଣ ବେନି ତୁମ୍ଭେ ଗୋପକୁ ଗଲ,
ନିତ୍ୟ ଲୋକ ଲୀଳା ଅଂଶ ସଙ୍ଗକୁ ନେଲ । ୩୮ ।
ଯହିଁ ଯେତେ ଲୀଳା ଅଂଶ ବୈକୁଣ୍ଠ ଆଦି,
ପୁରୁଷ ପ୍ରକୃତି ଅଂଶ ଘେନିଲ ଶୋଧି । ୩୯ ।

---

୩୨ । ଶକ୍ୟ—ଶକ୍ତ ।
୩୩ । ବନ୍ଧବାନ୍ଧ—ଆବୋର ।
୩୪ । ସର୍ବଦା ବନରେ—ସବୁଦିନେ ।
୩୬ । ଛର—କ୍ଷର
୩୯ । ଶୋଧି—ଶୁଦ୍ଧକରି ।

ବସ୍ତୁ ବାସୁଦେବ କଳା ରୁକ୍ମଣୀ ଅଂଶ,
ଲକ୍ଷ୍ମୀ କଳାମାନ ଯେଣ ହେଲେ ପ୍ରକାଶ । ୪୦ ।
ରାଧାକୃଷ୍ଣ ରୂପେ ଗୋପେ କ୍ରୀଡ଼ା ବହିଲୁ,
ବସ୍ତୁ ଅଂଶ କଳା ଯେଣ ଦ୍ୱାରକା ଗଲୁ । ୪୧ ।
ଏଣିକେ ସକଳ ଲୀଳା ତୋହୋର ଅଙ୍ଗ,
ଆସିବା ବେଳକୁ ତୋର ରାଧିକା ସଙ୍ଗ । ୪୨ ।
ଏଥୁଁ ଯେତେ ଯେଣଗଲୁ ତେତେ ଆଣିବୁ,
ଅଗୁଳ ଲୋକଙ୍କୁ ଆଣି କାହିଁ ଗଣିବୁ । ୪୩ ।
ଯହୁଁ ଯାହା ନେଇ ଅଛୁଁ ତହିଁ ଗୁଡ଼ିବୁ,
ନିତ୍ୟ ଅଂଶ ଯେଣ ନିତ୍ୟ ଅଂଶେ ଜଡ଼ିବୁ । ୪୪ ।
ତେବେହେଁ ତୁ ବିନା ଗୁରୁ କୃପା ନକଲେ,
ଲଭି ନ ପାରିବୁ ବସ୍ତ ଏମାନ ଭଜିଲେ । ୪୫ ।
ରୁକ୍ମଣୀ ଶୁଣିଲେ ଯହୁଁ ଅମୋହ ବାଣୀ,
କଳା ପଡ଼ିଗଲେ ମାଳଉପୂଳ ଜାଣି । ୪୬ ।
ବଦନ୍ତି ମାଧବ ଶୁଣ ଅଖିଳ ମାତ,
ତୁମ୍ଭେ ସେ ନିପୁର ଗୁରୁ ସର୍ବ ପୂଜିତ । ୪୭ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ଭେଦ ତୁମ୍ଭେ କହିବ ।
ରୁକ୍ମଣୀ ଦେବୀଙ୍କ ପ୍ରତିକାର ବିଭବ । ୪୮ ।
ଏ ମୋର ପ୍ରାଣର ପ୍ରିୟା ହୃଦୟ ରତ୍ନ,
ନିରନ୍ତରେ ଏହୁ ମୋର କରନ୍ତି ଯତ୍ନ । ୪୯ ।
କେବେହେଁ ମହତ ସତ୍ୟ ନୋହଇ ଭଙ୍ଗ,
ତେଣୁକରି ଲୋଡ଼ୁଥାଇଁ ସୁଜନ ସଙ୍ଗ । ୫୦ ।

---

୪୩ । ଅଗୁଳ—ଲଘୁ ।
୪୪ । ଜଡ଼ିବୁ—ଜଡ଼ିତ ହେବୁ, ମିଶିବୁ ।
୪୬ । ଅମୋହ ବାଣୀ—ଅମୋଘ ବାଣୀ । ମାଳଉପୂଳ—ମାଳକର୍ଣ୍ଣି ।
୪୭ । ଅଖିଳ ମାତ—ସର୍ବଲୋକ ମାତା ।

ପ୍ରସନ୍ନ ହୋଇଲେ ଶୁଣି ନିଜଗତ ମାତ,
        କୃପା କଲେ ମନ୍ତ୍ର ଯନ୍ତ୍ର ସକଳ ତନ୍ତ୍ର । ୫୧ ।
ଆଜ୍ଞା ଦେଲେ ରୁକ୍ମଣୀଙ୍କି ଏ ତନ୍ତ୍ର କହ,
        ଦ୍ୱାରକାରେ ଗୁପ୍ତକର ଏହାଙ୍କୁ ଥୁଅ । ୫୨ ।
ଦ୍ୱାରକା ଯୁବତୀ ଯୂଥ ହେବା ତରଣେ,
        ଶିଷ୍ୟ ପଣେ ଖଟିଥିବେ ସର୍ବ କାରଣେ । ୫୩ ।
ମର୍ତ୍ତ୍ୟ ଗୋପୀ ରାଧାଙ୍କୁ ଅଚ୍ଛନ୍ତି ଚ୍ଛିଁ,
        ମନ୍ତ୍ରସିଦ୍ଧ କରିବେ ସେ ରୂପକୁ ଧ୍ୟାୟି । ୫୪ ।
ଏତେ କହି ଅନ୍ତର୍ଦ୍ଧାନ ହୋଇଲେ ମାତ,
        ଫିଟିଲା ସକଳ ସନ୍ଧ ରୁକ୍ମଣୀ ଚିତ୍ତ । ୫୫ ।
ପ୍ରାଣତରୁ ଚଳିବଳା ରମଣି ମଣି,
        ମୃତ୍ୟୁପରେ ବରଷିଲା ଅମୃତ ପାଣି । ୫୬ ।
ଗରୁଡ଼ ପିଠିରେ ବିଜେ ଶ୍ରୀ ଜଗନ୍ନାଥ,
        ବାହୁଡ଼ା ବିଜୟେ ପ୍ରଭୁ କଲେ ତ୍ୱରିତ । ୫୭ ।
ବାମଜାନୁ ପରେ ବାମା ବସାଇ ହରି,
        ଆନନ୍ଦେ ମିଳିଲେ ଦେବ ଦ୍ୱାରକାପୁରୀ । ୫୮ ।
ଶ୍ରୀଜଗନ୍ନାଥଙ୍କ ଶ୍ରୀ ଚରଣରେ ଆଶ,
        ନିରନ୍ତରେ ଚିନ୍ତେ ଦେବଦୁର୍ଲ୍ଲଭ ଦାସ । ୫୯ ।

ଇତି ଶ୍ରୀ ରହସ୍ୟ ମଞ୍ଜରୀ ତ୍ରୟୋବିଂଶ ଛନ୍ଦେ,
ନିପୁରି ବାସୁଦେବ ପରମ ସଂବାଦ ବନ୍ଧେ ।
ଚତୁର୍ବିଂଶ ଛନ୍ଦ ବର୍ଣ୍ଣିବେ କେବଣ କେବଣ ସନ୍ଦେଶ,
କହିବାକୁ ଆଜ୍ଞାହୋଉ ମୋତେ ହୃଷୀକେଶ ।



---

୫୩ । ଯୁବତୀ ଯୂଥ—ଯୁବତୀଗଣ । ସର୍ବକାରଣେ—ସବୁମତେ ।

୫୫ । ସନ୍ଧ—ସନ୍ଦେହ, ରହସ୍ୟ ।

# ଚତୁର୍ବିଂଶ ଛାନ୍ଦ

ରାଗ ବରାଡ଼ି—କଳସାକାଣୀରେ ଗାଇବ

ଏଥୁ ଅନନ୍ତରେ କଥା ଶୁଣ ସାଧୁଜନ
ହାଲେହୋଳ ପଡ଼ିଅଛି ଦ୍ୱାରକା ଭୁବନ ।
କେ ବୋଲଇ ସବୁ ଅଛି କୃଷ୍ଣ କେଣେ ଗଲେ
ରୁକ୍ମଣୀ ଦେବୀଙ୍କି କହିଁ ଏକା କରି ନେଲେ । ୧ ।
କେଉଣ କାର୍ଯ୍ୟେଣ ଗଲେ ନ ଜାଣିଲେ କେହି
ଏଡ଼େ ବଡ଼ ସମ୍ପଦ ତେଜିଲେ କସ ପାଇଁ ।
ମନର ଯୁବତୀ ଏତେ ଅଛନ୍ତି ସମସ୍ତ
ସୁଖେ ସେବେ ଯାଆନ୍ତେ, କହନ୍ତେ ଜଣେ ମାତ୍ର । ୨ ।
କେ ବୋଲଇ ଏ ଯେବେ ହୋଅନ୍ତେ ମନସରି
ରୁକ୍ମଣୀଙ୍କି କାହିଁ ସେ ନିଅନ୍ତେ ଏକାକରି ।
ତାଙ୍କୁ ଘେନି ଏକା ହୋଇ ନିଗମେ ଗମିବେ
ଅଚନ୍ତା ଥାନରେ ରହି ନିଚନ୍ତେ ରମିବେ । ୩ ।
କେ ବୋଲଇ ଗଲେ ସେ ସମସ୍ତେ ବନ୍ଧିଗଲ
ରହିଲେ କେଉଣଥାନେ ବାରତା ନୋହିଲା ।
ସବୁ ଠାକୁରାଣୀମାନେ ଝୁରି ଝୁରି ଖୀନ
ନିରନ୍ତରେ ଲୋତକ ବହଇ ଘନଘନ । ୪ ।

---

## ଚତୁର୍ବିଂଶ ଛାନ୍ଦ

୧ । ହାଲେହୋଳି—ହୁରି, ହୁଲୁ ସ୍ଥୁଲ ।
୩ । ମନସରି—ମନକୁ ପାଆନ୍ତେ, ମନଅନୁସାରେ ଶ୍ରେଷ୍ଠହୋଇଥାଆନ୍ତେ ।
ନିଗମ—ରହସ୍ୟମୟ ସ୍ଥାନ । ଗମିବେ—ଯିବେ । ଅଚନ୍ତା—ଅଚିନ୍ତନୀୟ ।
ନିଚନ୍ତେ—ନିଶ୍ଚିନ୍ତରେ । ରମିବେ—ରମଣ କରିବେ ।
୪ । ଖୀନ—କ୍ଷୀଣ ।

ଚେଜିଲେ ଭୋଜନ ପାନ ସର୍ବ ସୁଖଶଯ୍ୟା
କର୍ପୂର ଚନ୍ଦନ ବାସ ପୁଷ୍ପ ପରିତେଜ୍ୟା ।
ସବୁହୁଁ ଅଧିକ ଗୋଳ ସତ୍ୟଭାମା ପୁରେ
କ୍ଷଣେକ୍ଷଣେ ଅନୁଆନ ବାରତା ପ୍ରଚରେ । ୫ ।
କେ ବୋଲଇ ସତ୍ୟଭାମା ଛାଡ଼ିବେନି ଜୀବ
କେ ବୋଲଇ ଏତେବେଳଯାଏ୍ କାହୁଁ ଥିବ ।
ସହଜେ ଶ୍ରୀକୃଷ୍ଣ ପତି ଅଟଇ ଯାହାର
ହଚ୍ଛେଦେ ଜୀବନ ମିବାଚନ୍ତ କ ତାହାର । ୬ ।
ସତ୍ୟଭାମା ମୂର୍ଚ୍ଛା ହରି ମୂର୍ଚ୍ଛିଲେ କେସନ
ପତି ଶ୍ରୋତା ଯାର ଦେହ ଧରେ କେତେ ଦିନ ।
ପ୍ରଭୁମାନଙ୍କର ଏହୁ ଉଚିତ ବେଭାର
କଲେହେଁ କରନ୍ତି ସେ ଗୋ ଏମନ୍ତ ଆଗ୍ଭର । ୭ ।
ଜନମୁଖେ ଏସନ ବାରତା ପ୍ରଭୁ ଶୁଣି
ଅନ୍ତେଶ୍ୱର ପୁରେ ନେଇ ଛାଡ଼ିଲେ ରୁକ୍ମିଣୀ ।
କଶ୍ୟପସୁତଙ୍କୁ ଆଗ୍ୟାଦେଲେ ହୃଷିକେଶି
ସମ୍ପୂର୍ଣ୍ଣ ରଯୁଣୀ ଅଧ ହୋଇଲାକ୍ର ନଶି । ୮ ।
ପ୍ରଭୁ ଚିନ୍ତନ୍ତି ଏବେ କ ବୁଦ୍ଧି କରିବା
କେବଣ ପ୍ରକାରେ ତାଙ୍କ ବେଦନା ହରିବା ।
ଏତେ ବୋଲି ଆପଣେ ଯୁବତୀ ରୂପ ଧରି
ଗହନେ ମଶିଲେ ଯାଇଁ ସତ୍ୟଭାମାପୁରୀ । ୯ ।

---

୫ । ପରିତେଜ୍ୟା—ପରିତ୍ୟାଗ କଲେ । ଗୋଳ—ଚହଳ, ହଇଚଇ । ଅନୁଆନ—ଭିନ୍ନ ଭିନ୍ନ । ପ୍ରଚରିତ ହୁଏ ।

୬ । ଚନ୍ତ—ବିଚନ୍ତ ।

୭ । ପତିଶ୍ରୋତାଯାର—ଯାହାର ଶୁଣିବାକୁ ପତି ନାହିଁ, ଯାହାର ପତି ନିକଟରେ ନାହିଁ । ବେଭାର—ଆଚରଣ । ଆଗ୍ଭର—ଆଚରଣ ।

୮ । ରଯୁଣୀ—ରଜନୀ ।

୯ । ହରିବା—ଦୂର କରିବା । ଆପଣେ—ନିଜେ ।

ପୂରଚନ୍ଦ୍ର ସ୍ତିଗ୍ଧବୃନ୍ଦ ନନ୍ଦଶଇ ଚନ୍ଧି
ରଖିଲେ କ ବାନ୍ଧିବା ନିମନ୍ତେ ନାନା ବଧି ।
କେଉଁଣି ପ୍ରକାରେ ଦେଖା ନ ବସିଲା ଗ୍ୟାନ,
କେବଳ ରହିଛି ଏକା କୃଷ୍ଣ ଚନ୍ଦ୍ରଁ ଧ୍ୟାନ । ୧୦ ।

ଅଦୃଶ୍ୟ ରୂପରେ ଗଲ ଶ୍ରୀହରି ମିଳଲେ,
ସତ୍ୟଭାମା ଆଗେ ଯାଇ ଚ୍ଛମର ଢାଳଲେ ।
ଶ୍ରୀଅଙ୍ଗ ସୌରଭ ପାଇ କୃଷ୍ଣପ୍ରାଣ ପ୍ରିୟା
ଚମକ ଉଠିଲେ ଦେଖା ଉଲ୍ଲସଇ ହିୟା । ୧୧ ।

ଅଜାଗେ ଅନାଇଁ ଦେଲେ ଶ୍ରୀକୃଷ୍ଣର ମୁଖ,
ନୟନ ବୁଜଣ ଦେଖା ଜନ୍ମାଇଲେ ଶୋକ ।
ଚ୍ଛମର ପକାଇ ଦେଇ ପ୍ରଭୁ ବନମାଳୀ
ସତ୍ରାଜିତ ଜେମାକୁ ଧଇଲେ ହୃଦେ ଟେକ । ୧୨ ।

ତାହା ଦେଖି ଅନ୍ତର ହୋଇଲେ ସବଂନାଶ
ଆଡ଼ୁସାଡ଼ୁ ମାର କେତେ ବୋଇଲେ ସୁନ୍ଦଶ ।
ଶ୍ରୀହରି ବୋଇଲେ ସଖି କହଇ ମୁଁ ଆଗ
ଦୋଷଥିଲେ ଦଣ୍ଡ କର ରୋଷ ପରିତ୍ୟାଗ । ୧୩ ।

ବୁଝାଇ କହିଲେ ଯେତେ ସକଳ ବେବସ୍ଥା
ଶୁଣି ଛୁଡ଼ିଗଲା ଦେଖା ମନୁଁ ମାନ ବ୍ୟଥା ।
ଆନନ୍ଦେ ଭିଡ଼ିଲେ ଧରି ଶ୍ରୀହରି ଶ୍ରୀଅଙ୍ଗ
ବଢ଼ିଲା ପୀରତି ଅତି ସୁରତି ପ୍ରସଙ୍ଗ । ୧୪ ।

---

୧୦ । ସନ୍ଧାନ—ଫାଙ୍କ, ଖାଲିସ୍ଥାନ । କେଉଁଣି—କୌଣସି ।

୧୧ । ଉଲ୍ଲସଇ ହିୟା— ହୃଦୟ ଉଲ୍ଲସିତ ହେଲା ।

୧୨ । ଅଜାଗେ—ଅଜାଗ୍ରତ ଅବସ୍ଥାରେ । ସତ୍ରାଜିତ ଜେମା— ସତ୍ୟଭାମା ।

୧୩ । ଆଡ଼ୁସାଡ଼ୁମାର—ଅଭିମାନରେ ଆକ୍ଷେପ କର । ଦଣ୍ଡକର—ଦଣ୍ଡବିଧାନ କର । ରୋଷ— କ୍ରୋଧ ।

ପ୍ରିୟ ପ୍ରିୟା ସମାଗମେ ଚାହିଁଲ ରସ୍ଯ୍ଣୀ,
ବିବିଧ ବିନୋଦ ଦେବ ତୋଷିଲେ ରମଣୀ ।
ସତ୍ୟଭାମା ରୁକ୍ମଣୀଙ୍କ ମୁଖେ ଦେଲେ ନେଇ
ରତ୍ନସିଂହାସନେ ପ୍ରଭୁ ବିଜେ କଲେ ଯାଇଁ । ୧୫ ।
ସତ୍ୟଭାମା ରୁକ୍ମଣୀଙ୍କି ଏକ ପ୍ରୀତି କରି
ବାମଜାନୁ ଉପରେ ବସାଇ ଯୁଗ୍ମ ନାରୀ ।
ଯୁବାଯୁବତୀଙ୍କି ମନ୍ତ୍ର ଶ୍ରବଣେ କହିଲେ
ସତ୍ୟଭାମା ରୁକ୍ମଣୀ ଯେ ଶ୍ରୀଗୁରୁ ହୋଇଲେ । ୧୬ ।
ଆଉ ଯେତେ ଯୁବତୀ ରୁକ୍ମଣୀ ମୁଖେ ଦେଇ
ବାହାରେ ବିଜୟେ କଲେ ଅଖିଳ ଗୋସାଇଁ ।
ରୁକ୍ମଣୀ ଶ୍ରୀଚରଣେ ସମସ୍ତେ ସେବା କରି
ମନ୍ତ୍ର ଉପଚରଣ ହୋଇଲେ ଶ୍ରୁତି ଭରି । ୧୭ ।
ମନ୍ତ୍ରଯନ୍ତ୍ର ଭେଦ ସୂକ୍ଷ୍ମ ନାନା ଉପଚାର
ପଞ୍ଚରତ୍ନ ନାରୀ ସର୍ବ ବିବିଧ ପ୍ରକାର ।
ଯହୁଁ ଯାହା ପଢ଼ିଲ ଯେ ମନ୍ତ୍ର ହୋଇଗଲେ,
ଯହିଁ ଯାହା ଦେଖିଲେ ତା ସମସ୍ତ କହିଲେ । ୧୮ ।
କୃତାର୍ଥ କାରଣୀ ତୁମ୍ଭେ ପରମ ଈଶ୍ବରୀ
ଭସିଗଲ ଭେଳା ତୁମ୍ଭେ ଧଇଲ ଉଦ୍ଧରି ।
ଶୁଣି ସ୍ତମ୍ଭୀଭୂତ ଯେ ହୋଇଲେ ସର୍ବନାରୀ
ବୋଇଲେ ଏକଥା କାହା ବେଳେ ହୋଏ କରି । ୧୯ ।
ତୁମ୍ଭର ପ୍ରସାଦୁଁ ଉପଦେଶହୋଇ ଖ୍ୟାତ ।
ନିଜଗ କାରଣୀ ତୁମ୍ଭେ ଅଗଁ୍ୟାତର ଗଁ୍ୟାତ ।
ଗୁରୁ ବଇଷ୍ଣବ ରାଧାକୃଷ୍ଣ ସେବା ବିଧି
ତୁମ୍ଭର ପ୍ରସାଦେ ସର୍ବଧର୍ମ ହେଲ ସିଦ୍ଧି । ୨୦ ।

---

୧୫ । ସମାଗମେ—ମିଳନରେ ।
୧୬ । ଯୁଗ୍ମନାରୀ—ଦୁଇନାରୀ । ଉପଚରଣ—ଶ୍ରାବିତ ।
୨୦ । ଅଗଁ୍ୟାତର ଗଁ୍ୟାତ—ଅଜଣାଲୋକଙ୍କୁ ଜଣାଇଲ ।

ଏତେ କହି ଶ୍ରୀଚରଣେ ନମିଲେ ସୁନ୍ଦରୀ
ଆନନ୍ଦେ ରହିଲେ ସର୍ବେ ଦ୍ୱାରକା ନଗରୀ ।
ଏଭବ ସାଗରୁ ମୋତେ ଉଦ୍ଧାରଣ ନେ ମା
ଅଧମ ଉଦ୍ଧାରଣ ଯେ ତୁମ୍ଭର ମହିମା । ୨୧ ।

ଜୟ ଜୟ ଜଗନ୍ନାଥ ଅନାଥର ନାଥ
ଘନଜନ ସୋଦର ଭଗତ ଆତ୍ମାତତ୍ତ୍ୱ ।
ଏଥୁ ଅନନ୍ତରେ ସନ୍ଥ ସମସ୍ତେ ଶୁଣିମା
ଅଧମ ଉଧାରଣ ଯେ ପ୍ରଭୁଙ୍କ ମହିମା । ୨୨ ।

ତୁମ୍ଭେ କୃପାନିଧି ମୋର ଦୋଷ ନ ଘେନିମା
କେ ଅନ୍ତ କରି କହିବ ଶ୍ରୀ ହରି ମହିମା ।
ଆଦ୍ୟ ଅନ୍ତ ମଧ୍ୟ ଶୋଧି ଘେନଯାଏ ଗୀତ
ତେବେ ସେ ଜାଣିମା ଏଥି ସର୍ବରସତତ୍ତ୍ୱ । ୨୩ ।

ରହସ୍ୟ ମଞ୍ଜରୀ ଏ ବିଚିତ୍ରମୟ ରସ
ଏ ସୁଖ ଜାଣିମ ଯେହୁ ବିବେକ ପୁରୁଷ ।
ଅବିବେକ ବୋଲିବ ଏ କହିଁ ପାଠେ ଥିଲା ।
ଥିଲା ଯେବେ କବି କପାଁ ଆଗହୁଁ ନକଲା । ୨୪ ।

ବିବେକୀ ବୋଲିବେ ଏ ଗୁପତେ ଥିଲା ରହି
ସରସ୍ୱତୀ ଭଣ୍ଡାରେ ଗୁପତେ ଥିଲା ଥୋଇ ।
ଯଉଁ ପୁଣ ବନ୍ଦିଲ ତାହାକୁ କଲେ ଦୟେ
ମହିଁମା ଅନନ୍ତ କେତେ କହିବା ନିର୍ଣ୍ଣୟେ । ୨୫ ।

---

୨୧ । ନେମା—ନିଅ ।

୨୨ । ସୋଦର—ଭାଇ, ବନ୍ଧୁ । ଆତ୍ମାତତ୍ତ୍ୱ—ଆତ୍ମାର ସାରସତ୍ତ୍ୱ । ସନ୍ଥ—ସାଧୁ ଜନ । ଶୁଣିମା—ଶୁଣନ୍ତୁ । ଉଧାରଣ—ଉଦ୍ଧାର କର୍ତ୍ତା ।

୨୩ । ଶୋଧି—ଶୁଦ୍ଧ କରି ।

୨୫ । ବନ୍ଦିଲ—ବନ୍ଦନା କଲା । ଦୟେ—ଦୟା ।

ପାଠମାନେ ଯେବେ ଅନ୍ତ କରି କହୁଥାନ୍ତେ
ମହିମା ଅନନ୍ତ ବୋଲି କପାଁ ଲେଖିଯାନ୍ତେ ।
ଜିହ୍ୱା କହି କୋଟିକଲ୍ପେ ନ ପାଇଲେ ଅନ୍ତ
ତେଣୁକରି କହିଗଲେ ମହିମା ଅନନ୍ତ । ୨୬ ।
ଏହି ମତ କେତେ କେତେ ଭଣ୍ଡାରେଣ ଥିଲା
କେତେ କେତେ କବିଙ୍କୁ ବାଣ୍ଟି ବାଣ୍ଟି ଦେଲା ।
ଏବେ ହେଁ ଭଣ୍ଡାରେ କେତେ କେତେ ପୂରିଥିବ
କଳ୍ପ କଳ୍ପାନ୍ତରେ କି ସେ ବଇଲେ ସରିବ । ୨୭ ।
ଯେ ଯେତେ କହିଲା ତାର ତେତେକ ପ୍ରମାଣ
ଏତେ ଏତେ ବୋଲି ତଥ୍ୟ କେ କେ ମାନେ ଜାଣ ।
ଦେଲା ଲୋକ ଜାଣିଛୁ ଆଣିଲା ଲୋକ ଜାଣେ
ବିବେକୀ ଜାଣିମ ତାହା ମଧ୍ୟସ୍ଥ ପଣେ । ୨୮ ।
ଏତନ ବେର୍ଣ୍ଣକେ ସୁଖ ଜାଣିମାକୁ ନାହିଁ
ଅବିବେକୀ ଲୋକ ଏଥି ପଶିବ ଯେ କାହିଁ ।
ପଶିଲେ ତ ମିଶାଇ ମିଶଇ ରସେ ଯେହ୍ନୁ
ସାତ୍ତ୍ୱିକ୍ୟ ବାଧଇ ସେ କହିକ ଅବାକାହୁଁ । ୨୯ ।

ସଂସାର ସାଗର ଏ ଅନନ୍ତ କୋଟି ମୁଖ
ଯେ ଯେଣୁ ମଣଇ ସେ ତେଣୁ ମଣେ ସୁଖ ।
ସନ୍ତୋଷ ମହତ ଯେହ୍ନୁ ସମୁଦ୍ର ପୟସ୍ୱ
ସମତାର ଉଦର ସମସ୍ତ ପରିଚୟେ । ୩୦ ।
ଶୁରୁପା ପ୍ରାୟେକ ସନ୍ଥ ଉଦର ଅଟଇ
ସେ ଯେହ୍ନେ ସୁଦ୍ରବ୍ୟ ରଖି କୁ ଦ୍ରବ୍ୟ ତେଜଇ ।
ଗୁଲୁଣିର ଜଳା ପ୍ରାୟେ ଅସନ୍ଥର ଗର୍ଭ
ସୁଲଗି ପକାଇ ସେ ଅଲଗି ରଖେ ସର୍ବ । ୩୧ ।

---

୨୭ । ବଇଲେ—ବ୍ୟୟ କଲେ, ବର୍ଣ୍ଣନା କଲେ ।
୨୯ । ବେର୍ଣ୍ଣକେ—ବ୍ୟତରେକେ ।
୩୧ । ଶୁରୁପା—ଶୂର୍ପ, କୁଲା । ଅସନ୍ଥ—ଅସାଧୁ । ସୁଲଗି—ଉତ୍ତମ ପଦାର୍ଥ ।
ଅଲଗି—ମନ୍ଦ ପଦାର୍ଥ ।

ତାର ପ୍ରାପ୍ତେ ପର ଗୁଣ ଚଳାଇ ପକାଇ
ଅନ୍ୟ ଦୋଷ ବୁଦ୍ଧି କରି ପସରା ବଢ଼ାଇ ।
ସନ୍ଥ କହେ ପରଗୁଣ ଆପଣାର ଦୋଷ
ଗୁରୁବଇଷ୍ଣବ ସେବା ନ ସହଇ ଲେଶ । ୩୨ ।
ମନୁଷ୍ୟ କୋଟିକେ ମିଳେ ଉତ୍ତମ ଜଣେକ
କୋଟିଏ ଉତ୍ତମ ଯାଇ ସାଧୁ ମିଳେ ଏକ ।
କୋଟି ସାଧୁ ମଧ୍ୟେଣ ବୈଷ୍ଣବ ଏକଜାଣ
କୋଟିଏ ବୈଷ୍ଣବେ ସେ ଲଭଇ ସନ୍ଥପୁଣ । ୩୩ ।
ସନ୍ଥ କୋଟିକେଣ ସେ ମହାନ୍ତ ଏକ ଜାଣି
ମହାନ୍ତ କୋଟିକେ ଏକ ମହାତ୍ମା ବଖାଣି ।
ସେଉଁ ମହାତ୍ମା ସେହୁ ଜଗନ୍ନାଥ ସ୍ୱାମୀ
ସବୁ ଆତ୍ମା ଠୂଳ ମୂଳ ଆତ୍ମା ଅନ୍ତର୍ଯ୍ୟାମୀ । ୩୪ ।
ଏତେକ ପ୍ରକାରେ ସନ୍ଥ ମହାତ୍ମାମହିମା
ସନ୍ଥ ହୋଇ ନ ଧରଇ ଅହଙ୍କାର ସୀମା ।
ପର ଦୁଃଖେ ଦୁଃଖୀ ସନ୍ଥ ପର ସୁଖେ ସୁଖୀ
ପରମକାରଣ ସନ୍ଥ ନୋହେ ମନଦୁଃଖୀ । ୩୫ ।
ହାନିଲାଭ ବସ୍ତୁରି ସର୍ବତେ ଗୁରୁଭାରି
କାହାରି ଠାବରେ ସନ୍ଥ ନୋହେ ଅବେଭାରି ।
ସର୍ବସୁଖ ମିଳଇ ପ୍ରାପତ ସନ୍ଥ ସଙ୍ଗ
ସକଳ କଳହ ନିନ୍ଦା ଅସାଧୁ ପ୍ରସଙ୍ଗ । ୩୬ ।
ସବୁଙ୍କର ସନ୍ଥବୁଦ୍ଧି ଯେବେ ସେ ହୁଅନ୍ତା
ଖଡ଼ଗ କମାଣ ବାଣ କପାଇଁ ବହନ୍ତା ।
ଏକକୁ ଆରେକ ନ ଚହ୍ନନ୍ତ ମତ୍ତଭୋଳେ
ତେଣୁ ମରାମରି ହୋଇ ମରନ୍ତି ସକଳେ । ୩୭ ।

---

୩୨ । ଚଳାଇ—ଚଳଇ, ତ୍ୟାଗକରି ।
୩୪ । ମହାନ୍ତ—ମହତ ଆତ୍ମା, ମହନ୍ତ । ଠୂଳ—ଭୂଣ୍ଡ ।
୩୬ । ସର୍ବତେ ଗୁରୁଭାରି—ସମସ୍ତଙ୍କ ନିକଟରେ ଗୁରୁ ।

ନ୍ୟାସ୍ତ ନ ବୁଝନ୍ତି ସେ ବୁଝନ୍ତି ଅନମିତେ
ମତ୍ତଗଜ ପ୍ରବେଶରେ ମୋହ ଅନୁବ୍ରତେ ।
ଦେଖିବା ମାତ୍ରକେ ଭୟେ ଲଗଇ ଯାହାକୁ
କେସନ କେ ସନ୍ତ ବୋଲି ବୋଲିବା ତାହାକୁ । ୩୮ ।
କହିବାକୁ ତରି ତେଣେ ନକହିଲେ ମରି
ସୃଷ୍ଟି ନାଶଗଲି ପ୍ରଭୁ ବୁଝିବା ବିଚାରି,
ଏଥୁ ଉଦ୍ଧରଣ ପ୍ରଭୁ ବେଗେ ମୋତେ ନିଅ ।
ପରିଲବ୍ଧେ ଥିଲେ ସନ୍ତପାଦତଳେ ଥୋଅ । ୩୯ ।
ଜୟଜୟ ଜଗନ୍ନାଥ ଜଗତର ନାଥ
ଦୀନଜନ ସୋଦର ଭଗତ ଆତ୍ମତତ୍ତ୍ୱ ।
ଏଭବ ସାଗରୁ ପ୍ରଭୁ ପାରିକର ମୋତେ
ହାହାହା ଆରତେ ଫୁକାରି ଡାକେ ତୋତେ । ୪୦ ।
ଦୁର୍ଗମ ସଂସାର ଦେଖି ମହାଭୟେ କଲି ।
ଅହଙ୍କ ରମ୍ୟପୁରେ ରହି ନପାରିଲି;
ସମସ୍ତେ ବହନ୍ତି ସାଧୁ ସୁବୁଦ୍ଧି ସନ୍ତକ
କାଳେ ସନ୍ତ ଉପରକୁ ହୋଅନ୍ତି ଅନ୍ତକ । ୪୧ ।
ସବଗୁଡ ଦେଖି ଦେଖି ହୋଇଲି ମଉନ,
କେହୁଣି ପ୍ରକାରେ ମୋର ନସରିଲା ଧନ ।
ଶରଣତାରଣ ତୁମ୍ଭେ କରୁଣା ବାରିଧି
ଏ ମୋହର ଆତଙ୍କ ଫେଡ଼ିବା କୃପାନିଧି । ୪୨ ।
ଅପରାଧ କ୍ଷମାକରି କରିବା ସଦୟେ
ନିରନ୍ତରେ ଶ୍ରୀଚରଣେ କରଇଁ ବିନୟେ ।
ଏତେକ ମାଗଇ ପ୍ରଭୁ ହୋଇବା ପ୍ରସନ୍ନ
ଜନ୍ମେଜନ୍ମେ ନୋହିବ ମୋ ଅସାଧୁ ଦର୍ଶନ । ୪୩ ।

---

୩୮ । ଅନମିତେ—ଅନମିତ୍ରେ, ଅଦରକାରୀ । ଅନୁବ୍ରତେ—ସବୁବେଳେ ।
୩୯ । ପରିଲବ୍ଧ—ପ୍ରାରବ୍ଧ, ପରିବେଦ୍ୟା ଲଭ ।
୪୧ । ସନ୍ତକ— ଚହ୍ନ । ଅନ୍ତକ—ଯମ ।
୪୨ । ଆତଙ୍କ—କ୍ଳେଶ । ଫେଡ଼ିବା—ଦୂରକରିବା ।

ପିତାମାତା ପତ୍ନୀ ପୁତ୍ର ଅସାଧୁ ନୋହିବ
ବନ୍ଧୁ ପ୍ରୀତି ପରଜନ ସେ ମୋର ହୋଇବ ।
ତୁମ୍ଭବିନୁ ସାଆନ୍ତ ମୋ ନୋହିବଟି କେହି
ଦଣ୍ଡିଲେ ଦଣ୍ଡିବେ ମୋତେ ଆପେ ଜବଗ୍ରାହୀ । ୪୪ ।
ତୁମ୍ଭବିନୁ ଜଗନ୍ନାଥେ କେହି ମୋର ନାହିଁ
ଗଞ୍ଜି ମାରୁଅଛ କେତେ ଦୋଷ ମୋ ଗୋସାଇଁ ।
କେଶଧର ରଖିନେଇ ଶ୍ରୀଚରଣ ତଳେ
ଅନାଥ ଦେବର ଫେଡ଼ ଦୁମହ ଆକୁଳେ । ୪୫ ।

ଇତିଶ୍ରୀ ରହସ୍ୟମଞ୍ଜରୀ ଚତୁର୍ବିଂଶ ଛାନ୍ଦେ
ରୁକ୍ମିଣୀ ସତ୍ୟଭାମା ବିବିଧ ବୋଧ ବନ୍ଧେ,
ସମ୍ପୂର୍ଣ୍ଣ ରହସ୍ୟ ମଞ୍ଜରୀ ସୁଖପ୍ରେମ ଧାମ
ଶ୍ରବଣେ ସୁଖ ଏ ଭକ୍ତଜନ ବିଶ୍ରାମ । ୪୬ ।



୪୪ । ଆପେ—ନିଜେ ।
୪୫ । ଗଞ୍ଜି—ଗଞ୍ଜଣା କର ।